ISBN-81-237-0319-8

---

1993 (ଶକାବ୍ଦ 1914)

**ଟ 30.00**

Motilal Ghose *(Oriya)*

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆ ଦିଲ୍ଲୀ - 110 016 କର୍ତ୍ତୃକ ପ୍ରକାଶିତ ।

---

# ଇଂରାଜୀ ଦ୍ୱିତୀୟ ସଂସ୍କରଣର ଭୂମିକା

କହିବାକୁ ଗଲେ ଭାରତୀୟ ଜାତୀୟତାବାଦ ଓ ଭାରତୀୟ ସାମ୍ପ୍ରଦାୟିକତା ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯମଜରୂପେ ଜନ୍ମ ଗ୍ରହଣ କରିଥିଲେ । ସାଧାରଣ ଭାବେ ଦେଖିଲେ ରାଜନୈତିକ ଚରମ ଲକ୍ଷ୍ୟ - ସ୍ୱାଧୀନତା - ହାସଲ ହେବା ପର୍ଯ୍ୟନ୍ତ ପ୍ରଥମଟିର କାରଣ ହିଁ ଅନ୍ୟଟିର କାରଣ ଥିଲା । 1757ରୁ 1911 ପର୍ଯ୍ୟନ୍ତ, କଲିକତା ବ୍ରିଟିଶ ସାମ୍ରାଜ୍ୟର ଶାସନତାନ୍ତ୍ରିକ ରାଜଧାନୀ ଥିବା ଦୃଷ୍ଟିରୁ ଏବଂ ତା'ପର ଠାରୁ ସ୍ୱାଧୀନତା ପର୍ଯ୍ୟନ୍ତ ପୂର୍ବାଞ୍ଚଳରେ ସେମାନଙ୍କ ବ୍ୟବସାୟଗତ ସ୍ୱାର୍ଥରକ୍ଷାର ମୁଖ୍ୟ କେନ୍ଦ୍ର ହୋଇଥିବା ଯୋଗୁଁ, ରାଜଧାନୀ ସହର ଏବଂ ବଙ୍ଗାଳୀମାନେ ଜାତୀୟତାବାଦ କ୍ରମ ବିକାଶରେ ପ୍ରଭାବ ବିସ୍ତାର କରି ଆସିଥିଲେ । ପୁଣି କଲିକତାରୁ ପ୍ରକାଶ ପାଉଥିବା ଖବର କାଗଜ ଗୁଡ଼ିକର ସମ୍ପାଦକମାନେ ଭାରତୀୟ ରାଜନୈତିକ ମତାମତ ଗୁଡ଼ିକୁ କେବଳ ପ୍ରଚାର କରି ନ ଥିଲେ, ସେମାନେ ତାହାକୁ ଗଠନ କରିବା ସଙ୍ଗେସଙ୍ଗେ ଆପାତତଃ ଅର୍ଦ୍ଧଶତାବ୍ଦୀ କାଳ, ଯେତେବେଳ ଯାଏଁ ପ୍ରତ୍ୟକ୍ଷରୂପେ କାର୍ଯ୍ୟ ଚଳାଇ ନେବା ପାଇଁ ଜନଗଣଙ୍କ ମଧ୍ୟରୁ ଆପଣାଛାଏଁ ନେତୃତ୍ୱ ସୃଷ୍ଟି ହୋଇ ନ ଥିଲା, ସେତେବେଳ ପର୍ଯ୍ୟନ୍ତ ଦିଗଦର୍ଶନ ମଧ୍ୟ ଦେଇଥିଲେ । ପ୍ରାଥମିକ ଅବସ୍ଥାରେ ରାଜନୈତିକ ଜାଗରଣର ତିନୋଟି ସ୍ପଷ୍ଟ ଦିଗରେ ବଙ୍ଗଳାର ତିନିଜଣ ବିଶିଷ୍ଟ ବ୍ୟକ୍ତି ପ୍ରତିନିଧି ରୂପେ ଅବତୀର୍ଣ୍ଣ ହୋଇଥିଲେ । ସେମାନେ ଥିଲେ - ସ୍ୱାଧୀନତା ପାଇଁ ନିତାନ୍ତ ଆବଶ୍ୟକ ନିଷ୍କ୍ରିୟ ପ୍ରତିରୋଧର ପ୍ରଚାରକ ମୋତିଲାଲ ଘୋଷ (ତାଙ୍କ ଗୁରୁ ତଥା ଜ୍ୟେଷ୍ଠଭ୍ରାତା ଶିଶିର କୁମାରଙ୍କ ଦ୍ୱାରା ଶିକ୍ଷିତ ଏବଂ ତାଲିମପ୍ରାପ୍ତ); ବ୍ରିଟିଶ ଆଧିପତ୍ୟରେ ଥାଇ ଦାୟିତ୍ୱପୂର୍ଣ୍ଣ ସରକାର ଗଠନ କରିବା ପାଇଁ ଶୃଙ୍ଖଳିତ ଭାବେ ଅଗ୍ରଗତି କରିବା ଦିଗରେ ଅଗ୍ରଣୀ, ବଳିଷ୍ଠ ସଂଗ୍ରାମୀ ସୁରେନ୍ଦ୍ରନାଥ ବାନାର୍ଜୀ; ଏବଂ ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ଆବଶ୍ୟକ ହେଉଥିବା ବିପ୍ଳବାତ୍ମକ ଆନ୍ଦୋଳନର ବିଚକ୍ଷଣ ଆଧ୍ୟାତ୍ମିକ ଜନକ ଅରବିନ୍ଦ ଘୋଷ । ରାଜନୈତିକ ବୁଦ୍ଧିଜୀବୀମାନଙ୍କ ଆଦର୍ଶର ପ୍ରତିନିଧି ସୁରେନ୍ଦ୍ରନାଥ, ଆନ୍ଦୋଳନର ନେତୃତ୍ୱ ମଧ୍ୟରେ ଦେଶର କତିପୟ ଶ୍ରେଷ୍ଠ ବିବେଚିତ ବ୍ୟକ୍ତିଙ୍କ ସହିତ ଅଧିକାରର ଅଂଶୀଦାର ହେବାକୁ ବାଧ୍ୟ ହୋଇଥିଲେ । ଗ୍ରାମାଞ୍ଚଳରୁ ଆସିଥିବା ମୋତିଲାଲ ଜନ୍ମରୁ ବୁଦ୍ଧିଜୀବୀଙ୍କ ସହିତ ସମ୍ପୃକ୍ତ ନଥିଲେ କିମ୍ବା ସେଥିପାଇଁ ଆଗ୍ରହୀ ମଧ୍ୟ ନଥାଇ ଗ୍ରାମାଞ୍ଚଳର ଲୋକମାନଙ୍କ ଉନ୍ନତି ପାଇଁ ଦଣ୍ଡାୟମାନ ହୋଇଥିଲେ । ସେମାନଙ୍କୁ ସମ୍ପୂର୍ଣ୍ଣ ଧ୍ୱଂସାଭିମୁଖୀ ଅବସ୍ଥାରୁ ବଞ୍ଚାଇବା ଲାଗି ଏକମାତ୍ର ପନ୍ଥା ଥିଲା ବିଦେଶୀ ଶାସନରୁ ମୁକ୍ତ କରିବା ।

ଭାରତର ଘଟଣାସବୁ ଏଭଳି କ୍ଷିପ୍ରଭାବରେ ଏବଂ ଏଭଳି ସମ୍ପୂର୍ଣ୍ଣ ସଂସ୍କାରମୂଳକ ଭାବେ ଗତି କରିଅଛି ଯେ ଏହି ପଥପ୍ରଦର୍ଶକମାନଙ୍କ ଅବଦାନ ବର୍ତ୍ତମାନର ସମାଜ ଭୁଲିଯିବାକୁ ବସିଲାଣି । ତଥାପି ସମୟ ଥିଲା, ଯେତେବେଳେ ଜନସାଧାରଣ ଉତ୍କଣ୍ଠାର ସହିତ ଧାଡ଼ି ବାନ୍ଧି ଅପେକ୍ଷାକରି ରହୁଥିଲେ, ସାଧାରଣସ୍ୱାର୍ଥ ଥିବା ବିଷୟବସ୍ତୁ ଉପରେ ମୋତିବାବୁ କିମ୍ବା ସୁରେନ୍ଦ୍ରବାବୁ ଦେଉଥିବା ମତାମତ ଶୁଣିବା ପାଇଁ । ପରକାଳରେ ସେହିଭଳି ସେମାନେ ମହାତ୍ମା ଗାନ୍ଧୀଙ୍କ ମୁହଁରୁ ଏବଂ ଆହୁରି ପରେ ଜବାହରଲାଲ ନେହେରୁଙ୍କଠାରୁ ଶୁଣିବାଲାଗି ଉତ୍କଣ୍ଠିତ ଥିଲେ ।

ମୋତିଲାଲ ଘୋଷଙ୍କ ବ୍ୟକ୍ତିଗତ ଜୀବନ, ଦୃଢ଼ ଧର୍ମ ବିଶ୍ୱାସ ଥିବା ଜଣେ ସାଧାରଣ ପାରିବାରିକ ବ୍ୟକ୍ତି ବିଶେଷଙ୍କ ଜୀବନ ଭଳି ବିଶେଷ ଉଲ୍ଲେଖ ଯୋଗ୍ୟ ନଥିଲା । ତାଙ୍କର ରାଜନୈତିକ ତଥା ସାମ୍ବାଦିକ କାର୍ଯ୍ୟକଳାପ, ସକ୍ରିୟ ଜାତୀୟତାବାଦକୁ ସ୍ପଷ୍ଟ ରୂପ ଦେଇ ଚିହ୍ନଟ କରିବା ତଥା ତତ୍‌ସହିତ ସହଯୋଗ କରିବା ଏବଂ ଜାତୀୟ ସ୍ୱାଧୀନତା ପାଇଁ ଅକ୍ଷୟ ବୀରତ୍ୱ ପ୍ରଦର୍ଶନରେ ହିଁ ତାଙ୍କର ମହତ୍ତ୍ୱ ନିହିତ । ଏହି କାରଣରୁ ତାଙ୍କର ଜୀବନୀମୂଳକ ଏହି କ୍ଷୁଦ୍ର ରୂପରେଖଟି ତାହାଙ୍କ ବ୍ୟକ୍ତିଗତ ଜୀବନର ଅନ୍ତରଙ୍ଗତା ଅପେକ୍ଷା ସାଧାରଣ ଜୀବନ ଓ କାର୍ଯ୍ୟକଳାପ ସହିତ ଅଧିକ ସମ୍ପୃକ୍ତ ।

ଏହି ପରିମାର୍ଜିତ ସଂସ୍କରଣଟିର ଉପସ୍ଥାପନା ପାଇଁ ମୁଁ ନ୍ୟାସନାଲ ବୁକ ଟ୍ରଷ୍ଟର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେସଙ୍ଗେ ମୋତିଲାଲଙ୍କ ଜୀବନୀର ତଥ୍ୟ ସମ୍ବଳିତ 'ମେମୋରିସ ଅଫ ମୋତିଲାଲ ଘୋଷ' ପାଇଁ ଶ୍ରୀ ପରମାନନ୍ଦ ଦତ୍ତଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଛି ।

ନୂଆ ଦିଲ୍ଲୀ
ସେପ୍ଟେମ୍ବର, ୧୯୭୪

ସଚ୍ଚିନ୍ଦ୍ରଲାଲ ଘୋଷ

# ସୂଚୀପତ୍ର

# ଉପକ୍ରମଣିକା

ଭାରତର ଇତିହାସରେ ଊନବିଂଶ ଶତାବ୍ଦୀ ଏକ ବିଶେଷ ଉଲ୍ଲେଖ ଯୋଗ୍ୟ ସମୟ, ଯାହା ଏ ଦେଶର ଇଂରେଜ ରାଜତ୍ୱର ଦୃଢ଼ୀକରଣ ତଥା ସମ୍ପ୍ରସାରଣର ସାକ୍ଷୀ ଥିଲା । ସେହି ସମୟ ମଧ୍ୟରେ ଭାରତୀୟ ଜନଗଣଙ୍କ ମନରେ ଜାତୀୟ ଜାଗରଣର ଉନ୍ମେଷ, ଭାରତୀୟ ଗୌରବୋଜ୍ଜ୍ୱଳ ଐତିହ୍ୟର ପୁନଃ ଆବିଷ୍କାର, ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ଆହ୍ୱାନ ପ୍ରତି ସମୁଚିତ ପ୍ରତିକ୍ରିୟା ତଥା ଭାରତୀୟ ଭାଷା ଓ ସାହିତ୍ୟ ଗୁଡ଼ିକର ଅଦ୍ଭୁତ ଅଭିବୃଦ୍ଧି ଭଳି ଘଟଣାଗୁଡ଼ିକ ଘଟି ଯାଇଥିଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଇଂରେଜ ବଣିକମାନେ ବଙ୍ଗଳା ଅଧିକାର କରିବା ସଙ୍ଗେସଙ୍ଗେ ଶାସନ ଆରମ୍ଭ କରିଥିଲେ । କେବଳ ଏକ ରାଜନୈତିକ ତଥା ବ୍ୟବସାୟିକ କେନ୍ଦ୍ର ହିସାବରେ ସେମାନଙ୍କ ଦ୍ୱାରା ପ୍ରତିଷ୍ଠିତ କଲିକତା ସହରର ଗୁରୁତ୍ୱ ଅତ୍ୟଧିକ ମାତ୍ରାରେ ବୃଦ୍ଧି ପାଇ ନଥିଲା, ତାହା ମଧ୍ୟ ଥିଲା ଶାସକ ଓ ଶାସିତମାନଙ୍କ ପରସ୍ପର ବିରୋଧୀ ସାଂସ୍କୃତିକ ପ୍ରତିଫଳନର ମୁଖ୍ୟପୀଠ । ପ୍ରବଳ ପ୍ରତାପୀ ମୋଗଲ-ମାନଙ୍କ ଶାସନ କାଳରେ ପ୍ରତିଷ୍ଠିତ ହୋଇ ପାରିଥିବା ରାଜନୈତିକ ଏକତା ତତ୍ ପୂର୍ବରୁ ଖଣ୍ଡ ବିଖଣ୍ଡିତ ହୋଇଯାଇଥିଲା । କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକ ସଦାସର୍ବଦା ପରସ୍ପର ମଧ୍ୟରେ କନ୍ଦଳରତ ରହୁଥିଲେ । ତେଣୁ ସେମାନଙ୍କୁ ନିଜ ଅଧୀନସ୍ଥ କରିବା ପାଇଁ ଇଂରେଜମାନଙ୍କୁ କମ୍ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଅବଦମିତ  ଜନସାଧାରଣ ଦେଶର ରାଜନୈତିକ ଶାସନ କ୍ଷମତାର ପରିବର୍ତ୍ତନ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାସୀନ ଥିଲେ । ପଲାସୀଯୁଦ୍ଧ (1757) - ଯେଉଁଠାରେ ବଙ୍ଗଳାର ଶାସନ କ୍ଷମତା ହସ୍ତାନ୍ତରିତ ହୋଇଥିଲା ସେଇଠି "ହଜାର ହଜାର ସଂଖ୍ୟାରେ ଜନସାଧାରଣ କେବଳ ନୀରବ ଦର୍ଶକ ଥିଲେ" - ପରେ ପାର୍ଲ୍ୟାମେଣ୍ଟର ସିଲେକ୍ଟ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରି ଲର୍ଡ କ୍ଲାଇବ୍ କହିଥିଲେ - "ଯଦି ସେମାନେ ସାମାନ୍ୟ ଇଚ୍ଛା କରିଥାନ୍ତେ ତେବେ କେବଳ ଛାଟି ଓ ପଥର ସାହାଯ୍ୟରେ ହିଁ ଇଉରୋପୀୟମାନଙ୍କୁ ବିନାଶ କରିପାରିଥାନ୍ତେ ।" କିନ୍ତୁ ସେମାନେ କାହାପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ମଧ୍ୟ କରି ନଥିଲେ ଏବଂ ଭାରତର ଭାଗ୍ୟ ଅବରୁଦ୍ଧ ହୋଇଯାଇଥିଲା ।

1757ର ପଲାସୀଯୁଦ୍ଧ ପରେ ପରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନ ଆରମ୍ଭ ହେବା ବେଳକୁ ଭାରତର ପୂର୍ବାଞ୍ଚଳଗୁଡ଼ିକରେ ପ୍ରାୟତଃ ରାଜନୈତିକ ବିଶୃଙ୍ଖଳା ଲାଗି ରହିଥିଲା । ତେଣୁ ଦେଶରେ ଶାନ୍ତି ଶୃଙ୍ଖଳା ପରିସ୍ଥିତି ଆଦୌ ଉତ୍ତମ ନଥିଲା । ଊନବିଂଶ ଶତାବ୍ଦୀର ପ୍ରଥମ ଦଶକଗୁଡ଼ିକରେ ମଧ୍ୟ

ତାହା ସେଭଳି ଆଖିଦୃଶିଆ ଭାବରେ ଉନ୍ନତି ଲାଭ କରି ନଥିଲା । ଅଧିକାଂଶ କ୍ଷେତ୍ରରେ ନ୍ୟାୟ ବିଚାର କିଣାବିକା ଚାଲିଥିଲା । ଅଧିକ ପ୍ରଭାବଶାଳୀ ଲୋକେ ଅଧିକ ନ୍ୟାୟ ପାଉଥିଲେ । ଇଂରେଜ ଶାସକମାନେ ସ୍ୱଳ୍ପ ବେତନଭୋଗୀ ତଳିଆ ଦେଶୀୟ କର୍ମଚାରୀମାନଙ୍କ ଭଳି ଅସାଧୁ ଓ ଲାଞ୍ଚଖୋର ଥିଲେ । ଆର. ସି. ଦତ୍ତ ତାଙ୍କ ପ୍ରଣୀତ ଭାରତୀୟ ଅର୍ଥନୈତିକ ଇତିହାସ (ଦି ଇକନୋମିକ ହିଷ୍ଟ୍ରି ଅଫ୍ ଇଣ୍ଡିଆ) ରେ ଲେଖିଛନ୍ତି, ବଙ୍ଗଳା "ଡକାୟତ ଭାବେ ପରିଚିତ ଦଳଦଳ ଲୁଣ୍ଠନକାରୀଙ୍କ ଦ୍ୱାରା ଅପହୃତ ଅଞ୍ଚଳ ହୋଇ ପଡ଼ିଥିଲା । ସ୍ୱଳ୍ପ ବେତନଭୋଗୀ ତଥା ଅସାଧୁ ପୁଲିସ୍ କର୍ମଚାରୀମାନେ ସେମାନଙ୍କୁ ସାହାଯ୍ୟ ସହଯୋଗ କରୁଥିଲେ । ମାଜିଷ୍ଟ୍ରେଟମାନେ ସେମାନଙ୍କୁ ଜବଦ୍ କରିବାରେ ସମର୍ଥ ନଥିଲେ । ବଡ଼ ବଡ଼ ସହର ଓ ପେଣ୍ଠ ଜାଗାମାନଙ୍କରେ ଦୁଃସାହସିକ ଚୋରିମାନ ସଂଘଠିତ ହୋଇ ଯାଉଥିଲା । ଗ୍ରାମାଞ୍ଚଳର ଲୋକମାନେ କ୍ରମାଗତ ଭାବେ ଭୟ ସଂକୁଳ ଅବସ୍ଥାରେ ହିଁ ରହୁଥିଲେ । ସେମାନେ ଅନେକ ସମୟରେ ଜଣାଶୁଣା ଦସ୍ୟୁ ସର୍ଦ୍ଦାରମାନଙ୍କୁ ପାଉଣା ମଧ୍ୟ ଦେଉଥିଲେ । 1800 ରୁ 1810 ମସିହା ମଧ୍ୟରେ ଦେଶ ଧାରାବାହିକ ଭାବେ ଭୟ ସଂକୁଳ ଅବସ୍ଥା ମଧ୍ୟରେ ହିଁ ରହିବାକୁ ବାଧ୍ୟ ହୋଇଥିଲା । ବଙ୍ଗଳାରେ ଚୋର-ଡ଼କାୟତମାନଙ୍କର କାର୍ଯ୍ୟକଳାପ ହାଟ ବଜାରରେ ଆଲୋଚନାର ବିଷୟ ଥିଲା । ମାଜିଷ୍ଟ୍ରେଟ୍ ଓ ପୋଲିସମାନେ ଶକ୍ତିହୀନ ହୋଇ ପଡ଼ିଥିଲେ । ତେଣୁ ଜନସାଧାରଣଙ୍କୁ ସେମାନଙ୍କ ଭାଗ୍ୟ ଆଦରି ରହିବାକୁ ହୋଇଥିଲା ।"

ଶାସକମାନେ ଗ୍ରହଣ କରୁଥିବା ପଦକ୍ଷେପ ଜନଗଣ ଭୋଗ କରୁଥିବା ଦୁର୍ଦ୍ଦଶାଠାରୁ ମଧ୍ୟ ଆହୁରି ନିକୃଷ୍ଟ ଥିଲା । ମିଥ୍ୟା ଅଭିଯୋଗ ଆରୋପ କରଯାଇ ବାଛ ବିଚାରହୀନ ଗିରଫଦାରୀ ହେଉଥିଲା । ସମଗ୍ର ବ୍ରିଟିଶ ରାଜତ୍ୱ କାଳରେ ଭାରତରେ ଚୋର ଡ଼କାୟତମାନଙ୍କ ଆତଙ୍କ ସହିତ ମିଳିତ ହୋଇ ଯାଇଥିଲା ତା'ଠାରୁ ବହୁଗୁଣରେ ଅଧିକ ପୋଲିସ୍‌ରାଜର ଆତଙ୍କ । ଆମ ଦେଶର ଭାଷାଜ୍ଞାନ ରହିତ, ସାମାଜିକ ଚାଲିଚଳଣ ଓ ପ୍ରଥାଗୁଡ଼ିକ ସଂପର୍କରେ ଅନଭିଜ୍ଞ ଇଂରେଜ ଶାସନ ସହିତ ଯେଉଁ ଅକୃତଜ୍ଞ ବ୍ୟକ୍ତିବୃନ୍ଦ ସହଯୋଗ କରିଥିଲେ, ସେହି ଅଫିସରମାନଙ୍କୁ ଗର୍ହିତକର ଅନ୍ୟାୟ କରିବା ପାଇଁ ସୁଯୋଗ ଦିଆଯାଉଥିଲା । କିନ୍ତୁ ପରିଶେଷରେ ସରକାରଙ୍କୁ ଅନୁଭବ କରାଇ ଦିଆଯାଇଥିଲା ଯେ ଦେଶର ଶାସନ ତଥା ବିଚାର ବିଭାଗ ଭଳି ଦାୟିତ୍ୱପୂର୍ଣ୍ଣ ପଦବୀଗୁଡ଼ିକରେ ଅଭିଜ୍ଞ ଭାରତୀୟଙ୍କୁ ନିଯୁକ୍ତି ଦେବାର ଆବଶ୍ୟକତା ରହିଛି । ତେବେ ସେମାନଙ୍କର ଦରମା ଥିଲା ଇଉରୋପୀୟମାନଙ୍କ ଦରମା ତୁଳନାରେ ଅତି ଅଳ୍ପ । ଏହାହିଁ ଭାରତରେ ଇଂରେଜ ଶିକ୍ଷାର ମୂଳଦୁଆ ପକାଇ ଥିଲା, ଯାହାର ଉଦ୍ଦେଶ୍ୟ ଥିଲା ଭାରତୀୟମାନଙ୍କ ମଧ୍ୟରେ ଚାକିରୀ ସୁଯୋଗ ସୃଷ୍ଟି କରିବା ।

ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନ ଓ ତାର ବାଣିଜ୍ୟ ନୀତି ସ୍ୱଳ୍ପକାଳ ମଧ୍ୟରେ ସ୍ୱଦେଶୀ ଶିଳ୍ପ-ଗୁଡ଼ିକର ଘୋର ଅବନତି ଘଟାଇ ଥିଲା । ସେଗୁଡ଼ିକ ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା କପା ଓ ସିଲ୍କ ସୂତା ତିଆରି କରିବା ତଥା ରଙ୍ଗ ଦେବା ପ୍ରଭୃତି କାର୍ଯ୍ୟ ସମେତ ବୟନ ଶିଳ୍ପ । ଭାରତୀୟ ଜନଗଣ ବ୍ରିଟିଶ ତିଆରି ଜିନିଷ ସବୁ ବ୍ୟବହାର କରିବା ପାଇଁ କମ୍ପାନୀ ଏଭଳି ଚାପ ପ୍ରୟୋଗ କରିଥିଲେ ଯେ 1823 ମସିହା ସୁଦ୍ଧା "ସିଲ୍କ ଉତ୍ପାଦନକାରୀମାନେ ଏବଂ ସିଲ୍କ ତଥା କପା ସୂତା

ମିଶ୍ରିତ ପଦାର୍ଥସବୁ ଆମ ବଜାରରୁ (ବ୍ରିଟେନ୍‌ର) ବାଦ୍ ପଡ଼ି ଯାଇଥିଲା । ପୁଣି, ପରେ ପରେ ସେସବୁ ଦ୍ରବ୍ୟ ଉପରେ ଶତକଡ଼ା 67 ଭାଗ କର ଧାର୍ଯ୍ୟ କରାଯାଇଥିବାରୁ ତାର କୁପରିଣାମ ମଧ୍ୟ ବଜାରରେ ଅନୁଭୂତ ହୋଇଥିଲା । ତେବେ ସେଇ ସ୍ୱଳ୍ପତାର ମୁଖ୍ୟ କାରଣ ଥିଲା ଉନ୍ନତ ଯନ୍ତ୍ରପାତି ବ୍ୟବହାରର ଅଭାବ । ସେ ପର୍ଯ୍ୟନ୍ତ ଯେଉଁ ଭାରତୀୟ ସୂତାବସ୍ତ୍ର ବଜାରରେ ମୁଖ୍ୟ ସ୍ଥାନ ଅଧିକାର କରିଆସିଥିଲା, ସେସବୁ କେବଳ ଦେଶରୁ ଉଚ୍ଛେଇ ଯାଇ ନଥିଲା, ଅପରନ୍ତୁ ପ୍ରକୃତରେ ଆମେ ଆମ କପାଜାତ ପଦାର୍ଥକୁ ଏସିଆରେ ଆମ ଅଧିକୃତ ଅଞ୍ଚଳଗୁଡ଼ିକୁ ରପ୍ତାନୀ କରିଥିଲୁ, ସେମାନଙ୍କ ଚାହିଦାର କେତେକ ଅଂଶ ପୂରଣ କରିବା ପାଇଁ । ତେଣୁ ଆପାତତଃ ଭାରତ ଗୋଟିଏ ଶିଳ୍ପ ଉତ୍ପାଦନକାରୀ ଦେଶରୁ କୃଷି ଉତ୍ପାଦନକାରୀ ଦେଶରେ ପରିଣତ ହୋଇ ଯାଇଥିଲା ।" (ହେନ୍‌ରୀ ସେଣ୍ଟ ଜର୍ଜ ଟକ୍‌କର 'ମେମୋରିଆଲସ୍ ଅଫ୍ ଦି ଇଣ୍ଡିଆନ୍ ଗଭର୍ଣ୍ଣମେଣ୍ଟ.') ପୂର୍ବାଞ୍ଚଳ ବଜାର, ମୁଖ୍ୟତଃ ଭାରତକୁ ରପ୍ତାନୀ ହୋଇଥିବା କପାଜାତ ଦ୍ରବ୍ୟ ଗୁଡ଼ିକର ମୂଲ୍ୟ 1794 ରେ 156 ପାଉଣ୍ଡ ଥିବାବେଳେ 1813 ରେ 108, 824 ପାଉଣ୍ଡକୁ ଏବଂ 1858 ରେ 4,782, 698 ପାଉଣ୍ଡକୁ ବୃଦ୍ଧି ପାଇଥିଲା ।

ଏକଚାଟିଆ ବାଣିଜ୍ୟ ବ୍ୟବସାୟ ଯୋଗୁଁ ପ୍ରଚୁର ଲାଭ ବ୍ୟତୀତ, କମ୍ପାନୀ ଭାରତୀୟ ଋଣ ପାଇଁ ଦିଆ ଯାଉଥିବା ସୁଧର ଲାଭାଂଶ, ରେଳବାଇ ସୁଧ ତଥା ସାମରିକ ଖର୍ଚ୍ଚ ଏଠିକାର ଜନଗଣଙ୍କଠାରୁ ଆଦାୟ କରୁଥିଲେ । ଆପଣାର ଶାସନାଧୀନ ଅଞ୍ଚଳ ବୃଦ୍ଧି କରିବା ପାଇଁ ଭାରତୀୟ ରାଜାମାନଙ୍କ ସହିତ ହେଉଥିବା ଯୁଦ୍ଧ ତଥା ଆଫଗାନିସ୍ଥାନ୍, ବର୍ମା, ଚୀନ, ନେପାଳ ଏବଂ ଅନ୍ୟାନ୍ୟ ରାଜ୍ୟ ସହିତ ଘଟୁଥିବା ଯୁଦ୍ଧର ସମସ୍ତ ଖର୍ଚ୍ଚ ଭାରତ ଉପରେ ଲଦି ଦିଆଯାଉଥିଲା । 1858 ମସିହାରେ ଯେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତର ଶାସନଭାର ବ୍ରିଟିଶ ସରକାରଙ୍କ ହାତରେ ପ୍ରଦାନ କରିଥିଲେ, ଏହି କାଳ୍ପନିକ ଦେୟ ସେତେବେଳେ ଥିଲା 70 ନିୟୁତ ପାଉଣ୍ଡ । ତାରି ଭିତରେ ଭାରତରୁ ସୁଧ ଆଦାୟ ବ୍ୟତୀତ ମୂଳ ବାବଦରେ କମ୍ପାନୀ ପ୍ରାୟ 150 ନିୟୁତ ପାଉଣ୍ଡରୁ ଅଧିକ ସଂଗ୍ରହ କରି ସାରିଥିଲେ । 1857 ମସିହାରେ ହୋଇଥିବା ସିପାହୀ ବିଦ୍ରୋହ ଲାଗି ଖର୍ଚ୍ଚ ଅଟକଳ ହୋଇଥିଲା 40 ନିୟୁତ ପାଉଣ୍ଡରୁ ଅଧିକ ଏବଂ ତାହା ଏଥି ସହିତ ଯୋଗ କରାଯାଇଥିଲା । ପୁଣି 1867 ମସିହାରେ ଅବସିନିଆ ସହିତ ଇଂରେଜମାନଙ୍କ ଯୁଦ୍ଧଜନିତ ଖର୍ଚ୍ଚର କିଛି ଅଂଶ ମଧ୍ୟ ସେଥି ସହିତ ସାମିଲ ହୋଇ 1900 ମସିହା ବେଳକୁ ଭାରତ ଉପରେ ଋଣ ଭାର ଥିଲା 224 ନିୟୁତ ପାଉଣ୍ଡ ।

ସେଭଳି ପରିସ୍ଥିତିରେ କେବଳ ଖାଦ୍ୟଶସ୍ୟ ରପ୍ତାନୀ କରିବା ପାଇଁ ଭାରତ ବାଧ୍ୟ ହୋଇଥିଲା । ପରିଣାମତଃ ଜନଗଣଙ୍କ ଆର୍ଥିକ ଅନାଟନ ବୃଦ୍ଧି ପାଇଥିଲା ଏବଂ ଦେଶରେ ବାରମ୍ବାର ଦୁର୍ଭିକ୍ଷ ସୃଷ୍ଟି ହୋଇଥିଲା । 1770 ରୁ 1900 ମସିହା ମଧ୍ୟରେ ଭାରତରେ ଅତି କମ୍‌ରେ 22ଥର ଦାରୁଣ ଦୁର୍ଭିକ୍ଷ ସୃଷ୍ଟି ହୋଇଥିଲା ଯାହା ଫଳରେ ଲକ୍ଷଲକ୍ଷ ଲୋକ ନିଶ୍ଚିହ୍ନ ହୋଇ ଯାଇଥିଲେ । କିନ୍ତୁ ଅପର ପକ୍ଷରେ ଦୁର୍ଭିକ୍ଷ ସମୟରେ ମଧ୍ୟ କର ସଂଗ୍ରହର ଧାରା ଅବ୍ୟାହତ ରହିଥିଲା । ଉଦାହରଣ ସ୍ୱରୂପ 1866-67 ମସିହାର କରାଳ ଦୁର୍ଭିକ୍ଷ କାଳରେ ଭାରତରୁ ବ୍ରିଟେନ୍‌କୁ ବାର୍ଷିକ ଦେୟ ବାବଦରେ ପୂର୍ବରୁ କସ୍ମିନ୍ କାଳେ ଦିଆଯାଇ ନଥିବା ପରିମାଣର ଖାଦ୍ୟଶସ୍ୟ ରପ୍ତାନୀ କରିବାକୁ ହୋଇଥିଲା ।

ସରକାରଙ୍କ ଆଦାୟର ମୁଖ୍ୟ ଦିଗ ଥିଲା କୃଷି । ବିଭିନ୍ନ ପ୍ରକାରର କର ଭାର ଯୋଗୁଁ କ୍ରମାଗତ ଭାବେ ତାହାର ଅଧୋପତନ ହିଁ ହେଉଥିଲା । "ବ୍ରିଟିଶ ଶାସନର ପ୍ରାରମ୍ଭିକ କାଳରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତକୁ ସେମାନଙ୍କ ଅଧୀନସ୍ଥ ଗୋଟିଏ ବିରାଟ କରଦରାଜ୍ୟ ବା ଉପନିବେଶ ରୂପେ ଗ୍ରହଣ କରି ନେଇଥିଲେ । ତେଣୁ ଏଠିକାର ଚାଷୀ ଓ ଜମି ମାଲିକମାନଙ୍କ ପାଇଁ ସାଧାରଣ ଭାବେ କେବଳ ବଞ୍ଚି ରହିବା ପାଇଁ ଯେତିକି ନିହାତି ଆବଶ୍ୟକ ସେତିକି ବାଦ ଦେଲେ, ଏଠିକାର ଅନ୍ୟ ସମସ୍ତ ଉତ୍ପାଦନର ଅଧିକାରୀ ବୋଲି ସେମାନେ ନିଜକୁ ମନେ କରିଥିଲେ ।" (ଦତ୍ତ - ତତ୍ରୈବ) ନିଜ ନିଜକୁ ବଞ୍ଚାଇ ରଖିବା ପାଇଁ ଚାଷୀ, ମଜୁରିଆ ତଥା ଜମି ମାଲିକମାନେ ମଧ୍ୟ ତକାୟତରେ ପରିଣତ ହୋଇଯିବା ଘଟଣା କୌଣସି ଆଶ୍ଚର୍ଯ୍ୟଜନକ ନଥିଲା । 1793 ମସିହାର ସ୍ଥାୟୀ ବନ୍ଦୋବସ୍ତ ପରେ ଜମି ମାଲିକମାନଙ୍କ ଉପରେ ଖଜଣା ଆଦାୟ କରିବାର ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ସର୍ତ୍ତ ଥିଲା, ସେମାନେ ସ୍ଥିରୀକୃତ ହୋଇଥିବା ପରିମାଣ ଖଜଣାର ଶତକଡ଼ା ୨୦ ଭାଗ ସରକାରଙ୍କ ନିକଟରେ ଦାଖଲ କରିବେ । ସରକାରଙ୍କ କ୍ଷମତାପ୍ରାପ୍ତ ରାଜସ୍ୱ ଅଧିକାରୀ ଭାବେ ଜମି ମାଲିକମାନେ ଜନସାଧାରଣଙ୍କଠାରୁ ମନଇଚ୍ଛା ଖଜଣା ବଢ଼ାଇବା ସଙ୍ଗେ ସଙ୍ଗେ ଅଧିକ ମାତ୍ରାରେ କର ଆଦାୟ କରି ସେମାନଙ୍କ ବ୍ୟକ୍ତିଗତ ସମ୍ପତ୍ତି ବୃଦ୍ଧି କରିଥିଲେ । ସେହିଭଳି ଗୋଟିଏ ଖଜଣା ଥିଲା ପୋଲ୍ ଟ୍ୟାକ୍‌ସ । ଏହା ପ୍ରତି ମଣିଷ ଓ ଗୃହପାଳିତ ପଶୁଙ୍କ ମୁଣ୍ଡ ପିଛା ଆଦାୟ କରା ଯାଉଥିଲା । ସାଧାରଣତଃ ଯେଉଁମାନେ ଖେଟ ତଥା ଶସ୍ୟର ବ୍ରିଟିଶ କ୍ରେତାମାନଙ୍କ ସହ କିମ୍ବା ନୀଳଚାଷୀମାନଙ୍କ ସହ ହାତ ମିଳାଇଥିଲେ ସେମାନେ ଥିଲେ ଅଖଣ୍ଡ କ୍ଷମତାର ଅଧିକାରୀ ଏବଂ ସେହି ଭାବରେ ସେମାନଙ୍କ ଅଧୀନସ୍ଥମାନଙ୍କ ପ୍ରତି ଯଥେଚ୍ଛାଚାର ବ୍ୟବହାର କରୁଥିଲେ । ଅପର ପକ୍ଷରେ ରୟତମାନେ କୋର୍ଟକଚେରୀରେ ନ୍ୟାୟ ପାଇବା ଥିଲା ଏକ ବିଡ଼ମ୍ବନା । ବିଶେଷ କରି ନୀଳଚାଷୀମାନଙ୍କ ମଧ୍ୟରେ ଅନେକେ ଥିଲେ ଇଂରେଜ । ସେମାନେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା ପାଇଁ ଅଧିକାର ଆପଣାର ଜାତିଭାଇ ବ୍ରିଟିଶ ଶାସକମାନଙ୍କ ନିକଟରେ ପାଇଥିଲେ । ସେମାନେ ଅତି ନୃଶଂସ ଭାବରେ ଏବଂ ଅତି ମାମୁଲି ଦରରେ ରୟତମାନଙ୍କୁ ସେମାନଙ୍କ ଜମିରେ ନୀଳଚାଷ କରିବା ପାଇଁ ବାଧ୍ୟ କରୁଥିଲେ ।

ନୀଳଚାଷ ସମ୍ପର୍କୀୟ ଆନ୍ଦୋଳନ ବିଷୟରେ ବିଷଦ୍ ବର୍ଣ୍ଣନା ଆବଶ୍ୟକ । କାରଣ ଏହି ଆନ୍ଦୋଳନ 1850ର ପ୍ରାୟ ଶେଷ ବେଳକୁ ଜାତୀୟ ଆନ୍ଦୋଳନକୁ ଜନ୍ମ ଦେବାପାଇଁ ଏକ ବିଶିଷ୍ଟ ମଞ୍ଚ ସୃଷ୍ଟି କରି ସାରିଥିଲା । ଜର୍ମାନ୍ ବୈଜ୍ଞାନିକମାନଙ୍କ ଦ୍ୱାରା 1880 ବେଳକୁ ସିନ୍ଥେଟିକ୍ ରଙ୍ଗ ବିଷୟକ ଉଦ୍‌ଭାବନ ହେବା ପର୍ଯ୍ୟନ୍ତ ନୀଳ ଗଛର ଡାଳ ଓ ପତ୍ରର ବିଶୁଦ୍ଧ ନୀଳ ଉତ୍ପାଦନ କରାଯାଉଥିଲା । ଗୃହ ନିର୍ମାଣଠାରୁ ଆରମ୍ଭ କରି ବୟନ ତଥା ଅନ୍ୟାନ୍ୟ କାର୍ଯ୍ୟରେ ତାକୁ ବ୍ୟବହାର କରାଯାଉଥିଲା । ନୀଳଗଛ ବଙ୍ଗଳାର ଖାଲୁଆ ଅଞ୍ଚଳ ତଥା ଉତ୍ତର ବିହାରର ସନ୍ତସନ୍ତିଆ ଉର୍ବର ମାଟିରେ ଭଲ ବୃଦ୍ଧି ପାଉଥିଲା । ରଙ୍ଗ ପାଇଁ ବ୍ୟବହାର ହେଉଥିବା ନୀଳ ବିଷୟରେ ଭାରତର ଲୋକେ ବହୁ ଆଗରୁ ଜାଣିଥିଲେ ଏବଂ ଇଂରେଜମାନେ ଆସିବା ପୂର୍ବରୁ ତାହା ଏଦେଶରୁ ରପ୍ତାନୀ ହେଉଥିଲା । ଇଂରେଜମାନଙ୍କ ବଙ୍ଗଳା ଅଧିକାର ପରେ ରଙ୍ଗ ଉତ୍ପାଦନ କରିବା ପାଇଁ ସେମାନେ ନୀଳଚାଷ ଆରମ୍ଭ କରିଥିଲେ ଏବଂ ତାହା ସେମାନଙ୍କର ଏକଚାଟିଆ ରପ୍ତାନୀ ଦ୍ରବ୍ୟରେ ପରିଣତ

ହୋଇ ଯାଇଥିଲା । 1830 ମସିହା ବେଳକୁ ଭାରତୀୟ ନୀଳ ପୃଥିବୀର ଅନ୍ୟାନ୍ୟ ଦେଶରେ ହେଉଥିବା ନୀଳ ଉତ୍ପାଦନ ଠାରୁ ଅଧିକ ହୋଇ ପାରିଥିଲା । ସେତେବେଳେ ବଙ୍ଗଳାରେ ପ୍ରାୟ 300 ରୁ 400 ସେଭଳି କାରଖାନା ଥିଲା । ସେଗୁଡ଼ିକ ଥିଲା ମୁଖ୍ୟତଃ ଜେସୋର, ନଦିଆ, ପାବନା, ତିରହୋଟ (ବର୍ତ୍ତମାନ ବିହାରର କେତେକ ଉତ୍ତରାଞ୍ଚଳ ସମେତ) ପ୍ରଭୃତି ଅଞ୍ଚଳରେ । ପ୍ରଚୁର ଲାଭ ପାଇବା ପାଇଁ ନୀଳ ବ୍ୟବସାୟୀମାନେ ରୟତମାନଙ୍କୁ ସେମାନଙ୍କ ଜମିରେ ଅନ୍ୟ କୌଣସି ଲାଭକାରୀ ଫସଲ ପରିବର୍ତ୍ତେ ଅତି କମ୍ ଦାମ୍ ବଦଳରେ କେବଳ ନୀଳଚାଷ କରିବା ପାଇଁ ବାଧ୍ୟ କରୁଥିଲେ । ୟୁରୋପୀୟମାନଙ୍କ ବିରୁଦ୍ଧରେ ଯାଇ କୌଣସି ନ୍ୟାୟ ପାଇ ପାରିବା ଆଶା ରୟତମାନେ କରିପାରୁ ନଥିଲେ । ଦମନକାରୀ ପଦକ୍ଷେପଗୁଡ଼ିକ ମଧ୍ୟରେ ଥିଲା "ଅନେକ ହିଂସାତ୍ମକ କାର୍ଯ୍ୟକଳାପ ଯାହାକି ଆଇନାନୁମୋଦିତ ଭାବେ ହତ୍ୟା ପଦବାଚ୍ୟ ହୋଇ ପାରୁ ନଥିଲେ ମଧ୍ୟ ପ୍ରକୃତରେ ଥିଲା ଦେଶୀୟ ଲୋକଙ୍କ ହତ୍ୟା ଘଟଣା . . . . ବେନିୟମଭାବରେ ଦେଶୀୟ ଲୋକଙ୍କୁ ଅବରୁଦ୍ଧ କରି ରଖିବା, ବିଶେଷ କରି ନୀଳ ବଗିଚାଗୁଡ଼ିକ ଭିତରେ . . . . ଚାଷୀ ତଥା ଅନ୍ୟାନ୍ୟ ଦେଶୀୟ ଲୋକଙ୍କ ଉପରେ ଅଯଥା ଦୋଷାରୋପ କରାଯାଇ ଅବୈଧ ଭାବରେ ବେତ୍ରାଘାତ ଏବଂ ଅନ୍ୟାନ୍ୟ ଭାବରେ ଦଣ୍ଡିତ କରିବା" ପ୍ରଭୃତି । (1810 ମସିହାର ସରକାରୀ ସର୍କୁଲାର) । "ଯେତେବେଳ ପର୍ଯ୍ୟନ୍ତ ଜନଜାଗରଣ ନହୋଇ ଲୋକେ ପ୍ରତିବାଦ କରି ନଥିଲେ, ସେତେବେଳ ପର୍ଯ୍ୟନ୍ତ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ବଙ୍ଗଳାର ନୀଳଚାଷୀମାନଙ୍କ ଦ୍ୱାରା ରୟତମାନଙ୍କ ଉପରେ ସେହିଭଳି ଅତ୍ୟାଚାର ଚାଲୁ ରହିଥିଲା । 1860 ମସିହାରେ ନୀଳଚାଷ ସମ୍ପର୍କୀୟ ଆନ୍ଦୋଳନ ପରେ ପରେ ବଙ୍ଗଳାର ଅଧିକାଂଶ ଅଞ୍ଚଳରେ ଇଉରୋପୀୟମାନଙ୍କ ହାତରୁ ନୀଳଚାଷ ଉଚ୍ଛେଦ ହୋଇ ଯାଇଥିଲା ।" (ଭାରତୀୟ ଅର୍ଥନୈତିକ ଇତିହାସ - ଦତ୍ତ) ରୟତମାନେ ସେମାନଙ୍କ ଜମିରେ ନୀଳଚାଷ କରିବା ପାଇଁ ମନା କରି ଦେଇଥିଲେ। ଅନେକ ଜିଲ୍ଲାରେ ନୀଳ କାରଖାନାର ମାଲିକମାନଙ୍କ ଘର, କାରଖାନା ତଥା ସରକାରୀ କାର୍ଯ୍ୟାଳୟ ପ୍ରଭୃତି ଉପରେ ଆକ୍ରମଣ କରାଯାଇଥିଲା ।

ଭାରତୀୟ ସମ୍ବାଦପତ୍ରଗୁଡ଼ିକ ଆନ୍ଦୋଳନ କ୍ଷେତ୍ରରେ ରୟତମାନଙ୍କୁ ସମର୍ଥନ ଜଣାଇଥିଲେ । 'ହିନ୍ଦୁ ପେଟ୍ରିଅଟ୍'ର ସମର୍ଥନ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା । ଜେସୋର ଜିଲ୍ଲାରେ ଘୋଷ ଭାଇମାନେ - ଯେଉଁମାନଙ୍କ ମଧ୍ୟରେ ଶିଶିର କୁମାର ଘୋଷ ଥିଲେ ଅନ୍ୟତମ - ମଧ୍ୟ ଆନ୍ଦୋଳନକୁ ସକ୍ରିୟ ସହଯୋଗ କରିଥିଲେ । ତେବେ ସବୁଠାରୁ ଉଲ୍ଲେଖଯୋଗ୍ୟ ସାହାଯ୍ୟ ସମର୍ଥନ ମିଳିଥିଲା ଦୀନବନ୍ଧୁ ମିତ୍ର (1828-73) ଙ୍କ ଦ୍ୱାରା ରଚିତ ଅଭିନୟାତ୍ମକ ନାଟକ "ନୀଳଦର୍ପଣ" 1860 ଠାରୁ । ପ୍ରକୃତରେ ତାହା ସମଗ୍ର ଦେଶରେ ଘୃଣାମିଶ୍ରିତ କ୍ରୋଧ ତଥା ଆତଙ୍କର ଲହରୀ ସୃଷ୍ଟି କରି ଦେଇଥିଲା । ମାଇକେଲ ମଧୁସୂଦନ ଦତ୍ତଙ୍କ ଦ୍ୱାରା ତାହା ଇଂରାଜୀ ଭାଷାରେ ଅନୁଦିତ ହୋଇ ବେନାମୀ ଭାବେ ରେଭରେଣ୍ଡ ଜେ. ଲଙ୍ଗ୍‌ଙ୍କ ନାମରେ ପ୍ରକାଶିତ ହୋଇଥିଲା । ତାହା ବିରୁଦ୍ଧରେ ମକଦ୍ଦମା ହୋଇଥିଲା ଏବଂ ଲଙ୍ଗ୍‌ଙ୍କୁ ସେଥିପାଇଁ 1000 ଟଙ୍କା ଜୋରିମାନା ସହିତ ଏକମାସ କାରାବରଣ ମଧ୍ୟ କରିବାକୁ ପଡ଼ିଥିଲା । ଅମୃତ ବଜାର ପତ୍ରିକାର ସହସ୍ରଷ୍ଟା ତଥା ମୋତିଲାଲଙ୍କ ଜ୍ୟେଷ୍ଠ ଭାଇ ଶିଶିର କୁମାର ଘୋଷ 1874 ମସିହାରେ ଉକ୍ତ ଆନ୍ଦୋଳନର ସ୍ମୃତିଚାରଣ କରିଥିଲେ ।

ପ୍ରକୃତରେ ସହଯୋଗ ଓ ରାଜନୈତିକ ଆନ୍ଦୋଳନର ମୂଲ୍ୟ ସମ୍ପର୍କରେ ସର୍ବପ୍ରଥମେ ନୀଳଚାଷୀଙ୍କ ଆନ୍ଦୋଳନ ଜନସାଧାରଣଙ୍କୁ ଶିକ୍ଷା ପ୍ରଦାନ କରିଥିଲା । ଇଂରେଜମାନଙ୍କ ଆବିର୍ଭାବ ପରେ ବଙ୍ଗଳାରେ ତାହାହିଁ ଥିଲା ପ୍ରଥମ ଆନ୍ଦୋଳନ । ଯଦି କୌଣସି ଦ୍ୱିତୀୟ ଆନ୍ଦୋଳନ ହୁଏ ତାହା ହେବ ଜିଲ୍ଲା ମାଜିଷ୍ଟ୍ରେଟ ଓ ସର୍ବଶକ୍ତିମାନ୍ ପୋଲିସ୍ ବାହିନୀର ମୃତ୍ୟୁ ଯନ୍ତ୍ରଣା ଜର୍ଜରିତ ହାତ ମୁଠାରୁ ଦେଶକୁ ମୁକ୍ତ କରିବା ପାଇଁ ଆନ୍ଦୋଳନ । ଏହି ଉତ୍ପୀଡ଼ନ ହିଁ ଇଂଲଣ୍ଡରେ ମହିମାମୟ ଆନ୍ଦୋଳନ ସୃଷ୍ଟି କରାଇ ପାରିଥିଲା । ନୀଳଚାଷୀମାନଙ୍କ ଦ୍ୱାରା ଅର୍ଦ୍ଧଶତାବ୍ଦୀଧରି ଚାଲିଥିବା ଏହି ଉତ୍ପୀଡ଼ନ ହିଁ ପରିଶେଷରେ ଅର୍ଦ୍ଧମୃତ ବଙ୍ଗାଳୀମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରି ତାର ଶୀତଳ ଚଉହଦି ମଧ୍ୟରେ ଚମକର ଅନୁପ୍ରବେଶ ଘଟାଇଥିଲା ।

ଜନସାଧାରଣଙ୍କ ଆନ୍ଦୋଳନକୁ ରିହାତି ଦେବାପାଇଁ 1860 ମସିହାରେ ନୀଳ କମିଶନ ଗଠନ କରାଯାଇଥିଲା । ପ୍ରଥମ ଥର ଲାଗି ସେହି କମିଶନରେ ବ୍ରିଟିଶ ଭାରତୀୟ ସଙ୍ଘର ଜଣେ ପ୍ରତିନିଧିଙ୍କୁ ସଭ୍ୟ ଭାବରେ ଗ୍ରହଣ କରାଯାଇଥିଲା । ଇଉରୋପୀୟ ନୀଳଚାଷୀମାନଙ୍କ ବିଚାର କ୍ଷମତା ସେ ସରକାରୀ ଭାବେ ପ୍ରାପ୍ତ ହୋଇଥିଲେ । ପରିସ୍ଥିତିର ଉନ୍ନତି ସାଧନ କରିବା ଲାଗି କମିଶନଙ୍କ ପରାମର୍ଶସବୁ କାର୍ଯ୍ୟରେ ପରିଣତ କରାଯିବା ବେଳକୁ ପୃଥିବୀର ବଜାରରୁ ପ୍ରାକୃତିକ ନୀଳର ଚାହିଦା ହ୍ରାସ ପାଇ ଯାଇଥିଲା ଶସ୍ତା ସିନ୍ଥେଟିକ୍ ନୀଳର ପ୍ରଚଳନ ଯୋଗୁଁ । ତେଣୁ ନୀଳ ବଗିଚାସବୁ ଗୋଟିଏ ପରେ ଗୋଟିଏ ବନ୍ଦ ହୋଇ ଯାଇଥିଲା । 1917 ମସିହାରେ ଭାରତରେ ମହାତ୍ମା ଗାନ୍ଧୀଙ୍କ ପ୍ରଥମ ସତ୍ୟାଗ୍ରହ ଆନ୍ଦୋଳନର ପରିଣାମ ସ୍ୱରୂପ ବିହାରର ଚମ୍ପାରଣ ଜିଲ୍ଲାରେ ନୀଳଚାଷ କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା । ରାୟତମାନଙ୍କ ବିଦ୍ରୋହ ସମ୍ପର୍କୀୟ ଆମୋଦଦାୟକ କଥାଟିଏ ଥିଲା - ଆନ୍ଦୋଳନର ନେତାମାନଙ୍କ ମଧ୍ୟରୁ ଜଣେ ଥିଲେ ଇଉରୋପୀୟ ବ୍ୟକ୍ତି ବିଶେଷ - ଜନ୍ ଲାରମୋର ।

ଇଷ୍ଟ ଇଣ୍ଡିଆ କମ୍ପାନୀର ରାଜନୈତିକ ତଥା ବାଣିଜ୍ୟ-ବ୍ୟବସାୟିକ ମୁଖ୍ୟ କେନ୍ଦ୍ର ହିସାବରେ କଲିକତା ନଗରୀର ଗୁରୁତ୍ୱ କ୍ରମାଗତ ଭାବେ ବୃଦ୍ଧି ପାଇଥିଲା । 1686 ମସିହାରେ ହୁଗୁଳି ନଦୀର ଦକ୍ଷିଣ ତଟରେ ଜବ୍ ଚାର୍ନକ (Job Charnock) ଏହାକୁ ପ୍ରତିଷ୍ଠା କରିଥିଲେ । ବ୍ରିଟିଶ ବଣିକମାନେ ଅସାଧୁ ଉପାୟ ଅବଲମ୍ବନ କରି ଶ୍ରେଷ୍ଠତ୍ୱ ହାସଲ କରିବା ପାଇଁ ପ୍ରୟାସୀ ଥିବା ଏହି ମଧ୍ୟବର୍ତ୍ତୀ ପ୍ରତିନିଧିମାନଙ୍କ ସାହାଯ୍ୟ ସହଯୋଗ କ୍ରମେହିଁ ସେମାନଙ୍କ ବାଣିଜ୍ୟ ବ୍ୟବସାୟ ପରିଚାଳିତ କରୁଥିଲେ । ଏହି ଏଜେଣ୍ଟମାନେ ବ୍ରିଟିଶ ବଣିକମାନଙ୍କୁ ଅର୍ଥ ଯୋଗାଣକରି ଅଜସ୍ର ଲାଭ ଆଦାୟ କରୁଥିଲେ । ସେମାନେ ସ୍ୱଳ୍ପ ପୁଞ୍ଜି ଘରୁ ଆଣି ଅତି ଉଚ୍ଚ ଦରରେ ସୁଧ ଓ କମିଶନ ସଂଗ୍ରହ କରୁଥିଲେ । ଫଳରେ କେବଳ ସେହି ଭାରତୀୟ ଗୋଷ୍ଠୀଟିର ଉନ୍ନତି ହୋଇଥିଲା । ତେଣୁ, ସେହି କାରଣରୁ ହିଁ ସେମାନେ କଲିକତାରେ ରୁଣ୍ଡ ହୋଇଥିଲେ ଏବଂ ବିଳାସ ବ୍ୟସନରେ ମଧ୍ୟ କାଳାତିପାତ କରୁଥିଲେ । ବିଶାଳ କୋଠାବାଡ଼ିର ମାଲିକ ରୂପେ ବସବାସ କରି ରହିବା ଲାଗି ପ୍ରଥମ ସୁଯୋଗ ହାସଲକରି ସେମାନେ ସହରର ଆଦର୍ଶ ସ୍ଥାନୀୟ ଭାବରେ ଅଗ୍ରଗଣ୍ୟ ହୋଇ ପାରିଥିଲେ । ଉଣା ଅଧିକେ ଏହି ନୂତନ ଆଭିଜାତ୍ୟ ସମ୍ପନ୍ନ ଧନୀକ ଗୋଷ୍ଠୀ ବ୍ରିଟିଶ ଶାସନର ମୁଖ୍ୟ ସମର୍ଥକ ସ୍ତମ୍ଭ ରୂପେ ଦଣ୍ଡାୟମାନ

ହୋଇଥିଲେ । ସେମାନେ ଦେଶରେ ପ୍ରଚଳିତ ମୂଳ ରାଜନୈତିକ, ସାମାଜିକ କିମ୍ବା ଅର୍ଥନୈତିକ ଅବସ୍ଥାରେ କୌଣସି ପ୍ରକାର ପରିବର୍ତ୍ତନର ବିରୋଧୀ ଥିଲେ । ପ୍ରାଥମିକ ଅବସ୍ଥାରେ ଫିରିଙ୍ଗି ସଂସ୍କୃତି ତଥା ପାଶ୍ଚାତ୍ୟର ଆଧୁନିକ ଚାଲିଚଳଣ ଓ ଚିନ୍ତାଧାରା ନିକଟରୁ ଦୂରେଇ ରହିବାପାଇଁ ସେମାନେ ଯତ୍ନଶୀଳ ଥିଲେ । କିନ୍ତୁ ପରେ ପରେ ସରକାରୀ ଚାକିରୀ ଏବଂ ଶିକ୍ଷିତ କର୍ମଜୀବୀମାନଙ୍କ ଚାହିଦା ବୃଦ୍ଧି ପାଇବା ଫଳରେ ସେସବୁ ସୁବିଧା ସୁଯୋଗ ହାସଲ କରିବା ପାଇଁ ସେମାନେ ଇଂରାଜୀ ଶିକ୍ଷାର ପକ୍ଷପାତୀ ହୋଇ ଉଠିଲେ । କିନ୍ତୁ ଯାହା ଆଶା କରାଯାଉଥିଲା, କଲିକତା ତଥା ମଫସଲ ଅଞ୍ଚଳରେ ମଧ୍ୟବିତ୍ତ ସମ୍ଭ୍ରାନ୍ତ ଶ୍ରେଣୀ ସଂଖ୍ୟାତ୍ମକ ଦୃଷ୍ଟିରୁ ସେମାନଙ୍କୁ ଟପି ଯାଇଥିଲେ । ତେଣୁ ଆପାତତଃ ଭାରତୀୟ ଜନଜାଗରଣର ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଏକ ବୁଦ୍ଧିଜୀବୀ ଗୋଷ୍ଠୀର ଉଦ୍‌ଥାନ ହୋଇଥିଲା ।

* * * *

ଊନବିଂଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ ପରାକ୍ରମୀ ମୋଗଲମାନଙ୍କ କାଳରୁ ପ୍ରଚଳିତ ଥିବା ଭାରତୀୟ ସାଂସ୍କୃତିକ ଧାରାରେ କ୍ୱଚିତ୍ ଉନ୍ନତି ପରିଦୃଷ୍ଟ ହୋଇଥିଲା । ଇଉରୋପରେ ତଥା ଆମେରିକାରେ ବିଗତ ଶତାବ୍ଦୀର ଶେଷ ଭାଗରେ ସଂଘଟିତ ହୋଇ ଯାଇଥିବା ବୈଜ୍ଞାନିକ ଓ ରାଜନୈତିକ ଆନ୍ଦୋଳନଗୁଡ଼ିକ ସମ୍ପର୍କରେ ଭାରତର ଜନସାଧାରଣ ଆଦୌ କିଛି ଜାଣି ନଥିଲେ । ପୁଣି ପାଶ୍ଚାତ୍ୟ ଦେଶରେ ଅଗ୍ରଗତି କରିଥିବା ବାହ୍ୟ ବିଜ୍ଞାନଗୁଡ଼ିକ ବିଷୟରେ ମଧ୍ୟ ଜନଗଣ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ଶିକ୍ଷିତମାନଙ୍କର ସଂଖ୍ୟା ଥିଲା ଅତି ଅଳ୍ପ । ସଂସ୍କୃତ କିମ୍ବା ପାର୍ସୀ ଭାଷାରେ ଲିଖିତ ଧର୍ମଗ୍ରନ୍ଥ କିମ୍ବା କେବଳ ପାରମ୍ପରିକ ସାହିତ୍ୟ ପଢ଼ି ପାରିବା ଭଳି ସାଧାରଣ କ୍ଷମତା ଅର୍ଜନ କରିବାହିଁ ଥିଲା ଶିକ୍ଷାର ଅର୍ଥ । କାରଣ ପାର୍ସୀ ମୁସଲମାନ୍ ଶାସକମାନଙ୍କଦ୍ୱାରା ପ୍ରଚଳିତ କୋର୍ଟକଚେରୀର ଭାଷା ଥିଲା । ବେଦ, ଉପନିଷଦ ଓ ଇସଲାମ ଧର୍ମଜ୍ଞାନ ବିଷୟରେ ଚର୍ଚ୍ଚା କେବଳ କେତେକ ମୁଷ୍ଟିମେୟ ସ୍ଥାନକୁ ବାଦ୍ ଦେଲେ ଅନ୍ୟ କୌଣସିଠାରେ ନଥିଲା କହିଲେ ଚଳେ । ଯୁକ୍ତିହୀନ ରକ୍ଷଣଶୀଳତାର ନିର୍ଦ୍ଦେଶରେହିଁ ଧର୍ମର ଧାରା ପ୍ରବାହିତ ହେଉଥିଲା । ସହରର ନୈତିକ ଜୀବନର ସ୍ତର ଅତି ନିମ୍ନରେ ଥିଲା । ନାରୀମାନଙ୍କ ପ୍ରତି ହେଉଥିବା ନିର୍ଦ୍ଦୟ ଅସଦ୍ ବ୍ୟବହାରରୁ ହିନ୍ଦୁ ସମାଜର ଅଧଃପତନ ଅତି ସ୍ପଷ୍ଟ ଦେଖାଯାଉଥିଲା । ଗୃହପାଳିତ ପଶୁଙ୍କ ଭଳି ବସ୍ତୁତଃ ଝିଅ ମାନଙ୍କୁ ବିକ୍ରି କରି ବିବାହ କରି ଦିଆଯାଉଥିଲା । ପରଦା ପ୍ରଥାର ଆଳୁଆଳରେ ଗୃହଭିତରେ ନାରୀମାନେ ଏକ ପ୍ରକାର ବନ୍ଦୀରୂପେ ରହୁଥିଲେ । ଧର୍ମ ନାମରେ ସଦ୍ୟ ବିଧବା ସ୍ତ୍ରୀମାନେ ସେମାନଙ୍କ ସ୍ୱାମୀଙ୍କ ଲେଲିହାନ ଚିତାରେ ଝାସ ଦିଆଯିବା ପାଇଁ ଅନ୍ୟମାନଙ୍କ ଦ୍ୱାରା ଅର୍ପିତ ହେଉଥିଲେ। ଯେଉଁମାନେ ସେଥିରୁ ରକ୍ଷା ପାଇ ଯାଉଥିଲେ, ସେମାନେ ସ୍ୱାମୀମାନଙ୍କର ସମ୍ପତ୍ତିରେ ହକ୍‌ଦାର ନହୋଇ ହାଡ଼ଭଙ୍ଗା ପରିଶ୍ରମ କରି ଏକ ପ୍ରକାର ନିର୍ବାସିତ ତଥା ନିର୍ଭରଶୀଳ ଜୀବନ ଯାପନ କରୁଥିଲେ। ସ୍ତ୍ରୀଲୋକମାନେ ସେମାନଙ୍କ ପୈତୃକ ସମ୍ପତ୍ତିର କୌଣସି ଅଂଶ ପାଇଁ ହକ୍‌ଦାର ନଥିଲେ । ବିଧବା ବିବାହ ସର୍ବାଦୌ ପ୍ରଚଳିତ ନଥିଲା ।

ଯଦିଓ ଇଂରେଜ ବଣିକ-ଶାସକମାନେ ଅନୁଭବ କରିଥିଲେ ଯେ ଅଧିକ ଫଳପ୍ରଦ ଶାସନ ନିମନ୍ତେ

ଭାରତୀୟମାନଙ୍କୁ ଇଂରାଜୀ ଭାଷାରେ ଶିକ୍ଷାଦାନର ସୁଯୋଗ ଦିଆଯିବା ଆବଶ୍ୟକ, ତଥାପି ଆଧୁନିକ କଳା ତଥା ବିଜ୍ଞାନ ବିଷୟରେ ଭାରତୀୟମାନଙ୍କୁ ଶିକ୍ଷାଦାନ କରାଇବାପାଇଁ ସେମାନେ ଅନିଚ୍ଛୁକ ଥିଲେ । କାରଣ ସେମାନେ ଅନୁଭବ କରିଥିଲେ ଯେ (ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ନିର୍ଦ୍ଦେଶକ ଲିଓନେଲ୍ ସ୍ମିଥ୍‌ଙ୍କ ନିଜ ଭାଷାରେ) "ଶିକ୍ଷା ପ୍ରାପ୍ତିର ପରିଣାମ ସ୍ୱରୂପ ବିଭିନ୍ନ ଧର୍ମ ଓ ଗୋଷ୍ଠୀ ମଧ୍ୟରେ ପୂର୍ବରୁ ପ୍ରଚଳିତ ଥିବା ସମସ୍ତ କୁସଂସ୍କାର ଦୂର ହୋଇଯିବ । ସେହି ପନ୍ଥା ଅବଲମ୍ବନ କରି ଯଥା - ମୁସଲମାନ-ମାନଙ୍କୁ ହିନ୍ଦୁମାନଙ୍କ ବିରୁଦ୍ଧରେ ନିୟୋଜିତ କରି ଏବଂ ସେଭଳି ଅନ୍ୟାନ୍ୟ କାର୍ଯ୍ୟକ୍ରମ କରିଆରେ ହିଁ ଆମେ ଏପର୍ଯ୍ୟନ୍ତ ଏ ଦେଶକୁ ଶାସନ କରି ଆସିଛୁ । କିନ୍ତୁ ଶିକ୍ଷା ସେମାନଙ୍କ ମାନସିକ ସ୍ତରକୁ ଉନ୍ନୀତ କରିବ ଏବଂ ସେମାନଙ୍କ ଆପଣାର ଅଖଣ୍ଡ କ୍ଷମତା ସମ୍ପର୍କରେ ଆଲୋକ ପ୍ରଦାନ କରିବ ।" କିନ୍ତୁ କ୍ରମ-ବର୍ଦ୍ଧିଷ୍ଣୁ ଅଧସ୍ତନ ଭାରତୀୟ କର୍ମଚାରୀମାନଙ୍କ ସୃଷ୍ଟିପାଇଁ, ଆବଶ୍ୟକତା ପୂରଣ ଦୃଷ୍ଟିରୁ ଅତି କୃପଣ ଭାବେ ସୀମିତ ସଂଖ୍ୟାରେ ଇଂରାଜୀ ଶିକ୍ଷା ଅନୁଷ୍ଠାନ ଆରମ୍ଭ କରିବା ପାଇଁ ସେମାନେ ମଞ୍ଜୁରୀ ଦେଇଥିଲେ । ପାରମ୍ପରିକ ରୀତିରେ ଚଉପାଢ଼ୀ ଏବଂ ମକତବ ଚାଟଶାଳୀଗୁଡ଼ିକ ମାଧ୍ୟମରେ ଦିଆଯାଉଥିବା ଶିକ୍ଷା ପଦ୍ଧତିର ଉନ୍ନତି ସପକ୍ଷରେ କମ୍ପାନୀ ମତ ଦେଉଥିବା ବେଳେ ମିସନାରୀ ସଂସ୍ଥାଗୁଡ଼ିକ ତରଫରୁ ତଥା କିଛି ଲୋକଙ୍କ ବ୍ୟକ୍ତିଗତ ଉଦ୍ୟମରେ ଅନେକ ସ୍କୁଲ କଲିକତା ଏବଂ ତା'ର ଆଖପାଖ ଅଞ୍ଚଳରେ ଆରମ୍ଭ ହୋଇଥିଲା । ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ପ୍ରମୁଖ ଥିଲେ ଭାରତର ଆଧୁନିକ ଯୁଗର ପଥ ପ୍ରଦର୍ଶକ ରୂପେ ବିବେଚିତ ହେଉଥିବା ରାଜା ରାମମୋହନ ରାୟ ଏବଂ ଜଣେ ଇଂରେଜ ବ୍ୟକ୍ତି ଡାଭିଡ୍ ହାରେ । 1817 ମସିହାରେ କଲିକତାର ବିଶିଷ୍ଟ ଭାରତୀୟଙ୍କ ଅର୍ଥ ସହାୟତା କ୍ରମେ ଧର୍ମନିରପେକ୍ଷ ଶିକ୍ଷା ପ୍ରଦାନ ଉଦ୍ଦେଶ୍ୟରେ ସହରର ପ୍ରଥମ କଲେଜ ସ୍ଥାପିତ ହୋଇଥିଲା ।

ଇତି ମଧ୍ୟରେ ମାଡ୍ରାଜ ଓ ବମ୍ବେରେ ମଧ୍ୟ ଇଂରାଜୀ ଶିକ୍ଷାର ସମ୍ପ୍ରସାରଣ ସଂଗଠିତ ହୋଇଥିଲା । 1835 ମସିହାରେ ମେକାଲେ ଏବଂ ତାଙ୍କର ଇଂରେଜ ସହଯୋଗୀଙ୍କ ଦ୍ୱାରା ସମର୍ଥିତ ଶିକ୍ଷା ପ୍ରଣାଳୀରେ ଦୁଇଟି ମୁଖ୍ୟ ଦିଗର ଅଭାବ ରହି ଯାଇଥିଲା । ପ୍ରଥମଟି ଥିଲା - ସେଥିରେ ମାତୃଭାଷାରେ ଶିକ୍ଷାପ୍ରତି ସମ୍ପୂର୍ଣ୍ଣ ଅବହେଳା କରାଯାଇଥିଲା । ଦ୍ୱିତୀୟରେ, ଆଧୁନିକ ଶିକ୍ଷା ପାଇବା ପାଇଁ ଗ୍ରାମାଞ୍ଚଳର ଲୋକମାନଙ୍କ ଅଧିକାରକୁ ସରକାରୀ ଉଦ୍ୟମରେ ସମ୍ପୂର୍ଣ୍ଣ ଉପେକ୍ଷା କରାଯାଇଥିଲା । ସେହି ଭୁଲଭ୍ରାନ୍ତିଗୁଡ଼ିକୁ ସାଧ୍ୟମତେ ଦୂର କରିବା ପାଇଁ ବେସରକାରୀ ଅନୁଷ୍ଠାନ ସବୁ ଉଦ୍ୟମ କରିଥିଲେ । ଏଥି ସାଙ୍ଗକୁ ବିଶେଷ ଭାବରେ ବଙ୍ଗଳା ଭାଷା ଓ ସାହିତ୍ୟର ଅଭିବୃଦ୍ଧି ଘଟିଥିଲା । ସେଇ କ୍ଷେତ୍ରରେ ପ୍ରାକ୍ ସାମ୍ବାଦିକ ରାମମୋହନ ରାୟ ଓ ତାଙ୍କ ପରେ ପରେ ଆସିଥିବା ବିଶେଷ କରି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଉଲ୍ଲେଖଯୋଗ୍ୟ ନେତୃତ୍ୱ ପ୍ରଦାନ କରିଥିଲେ । ପୁନଶ୍ଚ, ଦୁଇଜଣ ମିସନାରୀ - ୱିଲିଏମ କେରି ଓ, ଜୋସୁଆ ମାର୍ଶମ୍ୟାନ୍‌ଙ୍କ ନିକଟରେ ସେହି ଦୃଷ୍ଟିରୁ ବିଶେଷ ଭାବରେ ଋଣୀ ରହିବାର କଥା । ସେମାନେ ମୁଦ୍ରଣ ଶିଳ୍ପ ପାଇଁ ଆବଶ୍ୟକ ବଙ୍ଗଳା ଅକ୍ଷର ତିଆରି କରିବା ସଙ୍ଗେ ସଙ୍ଗେ ବଙ୍ଗଳା ଭାଷାରେ ମିସନାରୀମାନଙ୍କ ତରଫରୁ ପତ୍ରିକା ତଥା ପ୍ରଚାର ପୁସ୍ତିକା ପ୍ରକାଶନ ପ୍ରାୟ 1800 ମସିହା ବେଳକୁ ଆରମ୍ଭ କରିଥିଲେ ।

କାର୍ଯ୍ୟତଃ, 1844 ମସିହା ବେଳକୁ ଶାସନ କାର୍ଯ୍ୟରେ ଇଂରାଜୀ ଭାଷା ପ୍ରଚଳନ ହୋଇସାରି ଥିଲା ତେଣୁ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ସାହିତ୍ୟର ଜ୍ଞାନ ଏକ ନୂତନ ଗୋଷ୍ଠୀର ପଦକରୂପେ ବିବେଚିତ ହୋଇଥିଲା । ସହରାଞ୍ଚଳର କ୍ଷୁଦ୍ର ସଭ୍ରାନ୍ତ ଶ୍ରେଣୀର ସମସ୍ତ ବାରଣ ସତ୍ତ୍ୱେ ସେମାନେ ସମସ୍ତ ପାରମ୍ପାରିକ ସାମାଜିକ ଆବଶ୍ୟକତା ବେଳେ ଏକତ୍ର ରୁଣ୍ଡ ହୋଇଥିଲେ । ସିପାହୀ ବିଦ୍ରୋହ ବର୍ଷ 1857 ମସିହାରେ କଲିକତା, ବମ୍ବେ ଏବଂ ମାଡ୍ରାଜ ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇଥିଲା, ଯାହାକି ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଆରମ୍ଭ କାଳର ଅତି ପ୍ରାଚୀନ ତଥା ସ୍ଥାବର ସନ୍ତକ । ଭାରତର ଯେଉଁମାନେ ଭୟ କରୁଥିଲେ ଓ ବ୍ରିଟେନ୍‌ର ଯେଉଁମାନେ ଆଶା କରୁଥିଲେ ଯେ ଇଂରାଜୀ ଭାଷା ଅଧ୍ୟୟନର ପରିଣାମ ସ୍ୱରୂପ ଭାରତୀୟମାନେ "ସେମାନଙ୍କର ହାବଭାବରେ, ମତିଗତିରେ, ନୈତିକତାରେ ତଥା ବୁଦ୍ଧିବୃତ୍ତିରେ ଇଂରେଜମାନଙ୍କୁ ହିଁ ଅନୁକରଣ କରିବେ" (ମେକାଲେଙ୍କ ଭାଷାରେ) କିମ୍ବା ସହଜରେ ଧର୍ମାନ୍ତରିତ ହୋଇ ଇଂଲଣ୍ଡୀୟ ଚର୍ଚ୍ଚ ଅନୁକରଣରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବେ, ସେମାନେ ସେମାନଙ୍କର ଆଶା ଓ ଆଶଙ୍କା ଅପୂର୍ଣ୍ଣ ରହିବା ନିର୍ଦ୍ଧାରିତ ବୋଲି ମନେ କରିଥିଲେ । ପଶ୍ଚିମରେ ବସ୍ତୁବାଦୀ ଧର୍ମନିରପେକ୍ଷତା ସମେତ ଖ୍ରୀଷ୍ଟୀୟ ମିସନାରୀମାନଙ୍କ ଧର୍ମ-ଗ୍ରନ୍ଥରେ ଥିବା ବିବଦମାନ ସୁସମାଚାରର ଦୃଢ଼ ମୁକାବିଲା କରିବା ପାଇଁ ଅନେକଗୁଡ଼ିଏ କାରଣ ସହାୟକ ହୋଇଥିଲା । ସେଗୁଡ଼ିକ ମଧ୍ୟରେ ଥିଲା କ୍ରମାଗତ ଭାବେ ସେଇ ପୁରାତନ ସାମାଜିକ-ଅର୍ଥନୀତିକ ଢାଞ୍ଚାର ପ୍ରଚଳନ ଓ ପୁରାତନ ଭାରତୀୟ ସାଂସ୍କୃତିକ ଐତିହ୍ୟକୁ ପୁନଃ ସମର୍ଥନ ପାଇଁ ମନସ୍ତାତ୍ତ୍ୱିକ ଦୃଢ଼ତା ରକ୍ଷା ତଥା ବୃଦ୍ଧି । ସେହି ବିଶାଳ ରକ୍ଷାକାରୀ ପ୍ରାଚୀରର ପ୍ରଥମ ମହାନ ନିର୍ମାତା ଥିଲେ ରାଜା ରାମମୋହନ ରାୟ (1772-1833) । ସେ ଭାରତୀୟ ନବଜାଗରଣର ପ୍ରାୟ ପ୍ରତ୍ୟେକ ଦିଗ ଯଥା ଧାର୍ମିକ, ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ନୂତନ ଭିତ୍ତି ସ୍ଥାପନ କରିଥିଲେ ।

ରାମମୋହନ ରାୟ ଥିଲେ ପ୍ରଥମ ଭାରତୀୟ ଯିଏକି ଅନୁଭବ କରିଥିଲେ ଯେ ଯଦିଓ ଭାରତ ବ୍ରିଟିଶ ଠାରୁ ଏକ ନିମ୍ନତର ଭାବେ ସ୍ଥାପିତ ହୋଇଥିଲା ତଥାପି ଅମୀମାଂସନୀୟଭାବେ ପଶ୍ଚିମାଞ୍ଚଳ ସହିତ ସମ୍ପୂର୍ଣ୍ଣରୂପେ ମୁକାବିଲା କରିବା ଦିଗରେ ରତ ରହିଥିଲା । ସେଇ ଆହ୍ୱାନ କେବଳ ଧର୍ମ ସମ୍ବନ୍ଧରେ ନଥିଲା, ତତ୍ ସହିତ ଅର୍ଥନୀତିକ, ରାଜନୈତିକ ତଥା ସାଂସ୍କୃତିକ ମଧ୍ୟ ଥିଲା । ସମ୍ଭବତଃ ସେ ଥିଲେ ତୁଳନାତ୍ମକ ଧର୍ମତତ୍ତ୍ୱ ଅଧ୍ୟୟନ କରିବା ଦିଗରେ ସର୍ବ ପ୍ରଥମ ଚିନ୍ତାଶୀଳ ଛାତ୍ର । ବୈଦାନ୍ତିକ ଏକେଶ୍ୱରବାଦକୁ ଦର୍ଶନ ତତ୍ତ୍ୱ ଦୃଷ୍ଟିରୁ ସବୁ ଧାର୍ମିକ ଏକତାର ମୂଳପୀଠ ରୂପେ ସେ ଲକ୍ଷ୍ୟ କରିଥିଲେ । ତାଙ୍କର ଅଦ୍ୱୈତବାଦୀ ମାନବବାଦ ଅବଧାରଣା ସାହାଯ୍ୟରେ ସେ ପଶ୍ଚିମର ବସ୍ତୁବାଦୀ ମାନବବାଦକୁ ବିରୋଧ କରିଥିଲେ । ପର କାଳରେ ତାହାହିଁ ସ୍ୱାମୀ ବିବେକାନନ୍ଦ, ରବୀନ୍ଦ୍ରନାଥ ଠାକୁର, ମହାତ୍ମା ଗାନ୍ଧୀ ଏବଂ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଭଳି ବ୍ୟାଖ୍ୟାକାରମାନଙ୍କ ଦ୍ୱାରା ଆଧୁନିକ ଭାରତୀୟ ଚିନ୍ତାଧାରାର ମୁଖ୍ୟସ୍ରୋତରୂପେ ପରିଗଣିତ ହୋଇଥିଲା । ତାଙ୍କ ପରେ ପରେ ଆସିଥିବା ବିବେକାନନ୍ଦଙ୍କ ଭଳି ସେ ମଧ୍ୟ ଜାଣିଥିଲେ ଯେ ଆଧୁନିକ ବିଜ୍ଞାନ ସହିତ ଅଦ୍ୱୈତବାଦୀ ମାନବବାଦୀ ଅନୁଶୀଳନ ଉପରେ ଭାରତର ଭବିଷ୍ୟତ ନିର୍ଭର କରେ । ପଶ୍ଚିମରେ ସଂଘଠିତ ହେଉଥିବା ଦ୍ରୁତ ରାଜନୈତିକ ବିକାଶ ବିଷୟରେ ସେ ଜ୍ଞାତ ଥିଲେ । ସେ ମଧ୍ୟ ଲେଖି ରଖିଥିଲେ ଯେ ଅସମାନତା ତଥା ସମ୍ପର୍କହୀନତା

ଯୋଗୁଁହିଁ ଭାରତୀୟ ସମାଜ ଖଣ୍ଡ ବିଖଣ୍ଡିତ ହୋଇ ଯାଇଥିଲା । ଜାତୀୟ ଏକତା ପାଇଁ ତାହାହିଁ ଏକ ପ୍ରଧାନ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ଥିଲା ଏବଂ ଖଣ୍ଡିଏ ଖଣ୍ଡିଏ କରି ରାଜ୍ୟ ବିସ୍ତାର କରିବା ଲାଗି ବ୍ରିଟିଶମାନଙ୍କ ପାଇଁ ସମସ୍ତ ସମ୍ଭାବନା ସୃଷ୍ଟି କରିଥିଲା । ସାର୍ବଲୌକିକ ଏକେଶ୍ୱରବାଦ ବ୍ୟତୀତ ମଣିଷ-ମାନଙ୍କ ମଧ୍ୟରେ ସାମ୍ୟ ତଥା ସେମାନଙ୍କ ମଙ୍ଗଳ ପ୍ରତି ଅନୁରକ୍ତିକୁ ଭିତ୍ତିକରି ସାମାଜିକ ନୀତି ନିୟମର କ୍ରମ ବିକାଶ ହେବାର ଆବଶ୍ୟକତା ମଧ୍ୟ ସେ ଅନୁଭବ କରିଥିଲେ ।

ଏହି ମାନବବାଦ ଥିଲା ତାଙ୍କ ସମାଜ ସଂସ୍କାରମୂଳକ ଲୋକହିତକର କର୍ମ ଯୋଜନାର ମୂଳଭିତ୍ତି । ସେ ଜାତିପ୍ରଥାର ଦୃଢ଼ ବିରୋଧୀ ଥିଲେ ଏବଂ ହିନ୍ଦୁ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିବା ଶକ୍ତିମନ୍ତ ରକ୍ଷଣଶୀଳ ଗୋଷ୍ଠୀଙ୍କ ସମସ୍ତ ନିଷ୍ଠୁରଣ ସମାଲୋଚନା ସତ୍ତ୍ୱେ ସେ ଏହାକୁ ଅସ୍ୱୀକାର କରିଥିଲେ । ସତୀଦାହ ପ୍ରଥାର ଉଚ୍ଛେଦ ଦିଗରେ ସେ ହାତବାରିଶି ଥିଲେ ଏବଂ ନାରୀମୁକ୍ତି ତଥା ସେମାନଙ୍କ ସମ୍ପତ୍ତିର ଉତ୍ତରାଧିକାର ପାଇଁ ସେ ସମର୍ଥନ ଜଣାଇ ଥିଲେ । ବହୁବିବାହ ତଥା ବାଲ୍ୟବିବାହକୁ ସେ ବିରୋଧ କରିବା ସଙ୍ଗେ ସଙ୍ଗେ ବିଧବାମାନଙ୍କ ପୁନଃ ବିବାହ ପାଇଁ ଯୁକ୍ତି କରିଥିଲେ ।

ରାମମୋହନ ଭାରତୀୟ ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଥିଲେ ପଥ ପ୍ରଦର୍ଶକ । ସେ ଦୁଇଟି ପତ୍ରିକା - ବଙ୍ଗଳା ଭାଷାରେ 'ସମ୍ବାଦ କୌମୁଦୀ' (1821) ଏବଂ ପାର୍ସୀ ଭାଷାରେ 'ମିରାତ୍ - ଉଲ୍ - ଅଖ୍‌ବାର' (1822) ପ୍ରକାଶ କରୁଥିଲେ । ସେଥିରେ ନିରପେକ୍ଷ ଜାତୀୟତାବାଦ ଉଦ୍ରେକକାରୀ ଅନୁଶୀଳନ ତଥା ଦେଶ-ବିଦେଶର ଘଟଣାବଳୀ ଉପରେ ଟିପ୍ପଣୀ ପ୍ରକାଶ ପାଉଥିଲା । ସେ ବେଦାନ୍ତ ସୂତ୍ର ଏବଂ ଅନେକଗୁଡ଼ିଏ ଧର୍ମଗ୍ରନ୍ଥ ମଧ୍ୟ ବଙ୍ଗଳା ଭାଷାରେ ଅନୁବାଦ କରିଥିଲେ । ସେଗୁଡ଼ିକ ହିଁ ବଙ୍ଗଳା ଗଦ୍ୟ ସାହିତ୍ୟ ସୃଷ୍ଟିର ମୂଳଦୁଆ ପକାଇବା ଦିଗରେ ସହାୟକ ହୋଇଥିଲା । ତାହା ସେତେବେଳେ ଥିଲା ବସ୍ତ୍ରାଚ୍ଛାଦିତ ଏକ ସଦ୍ୟଜାତ ଶିଶୁ ଭଳି । ତାହାଙ୍କର ସାମ୍ବାଦିକତାମୂଳକ କାର୍ଯ୍ୟକଳାପଗୁଡ଼ିକ ମଧ୍ୟ ଜାତୀୟତାବାଦୀ ସମ୍ବାଦପତ୍ର ପରମ୍ପରାର ମୂଳଭିତ୍ତି ଥିଲା । 1823 ମସିହାରେ ଯେତେବେଳେ ସରକାର ସମ୍ବାଦପତ୍ରଗୁଡ଼ିକ ପ୍ରକାଶିତ ହେବା ପୂର୍ବରୁ ଯାଞ୍ଚ କରିବା ଉଦ୍ଦେଶ୍ୟରେ ଏକ ଅଡ଼ିନାନ୍ସ ଜାରୀ କରି ସମ୍ବାଦପତ୍ରଗୁଡ଼ିକର ସ୍ୱାଧୀନତା କ୍ଷୁଣ୍ଣ କରିବାକୁ ଚାହିଁଥିଲେ, ସେତେବେଳେ ସେ ତା'ର ଉଦ୍ଦୀପନାମୟ ପ୍ରତିବାଦ କରିବା ସଙ୍ଗେ ସଙ୍ଗେ କେବଳ ସୁପ୍ରିମ୍ କୋର୍ଟକୁ ସ୍ମାରକପତ୍ର ଦେଇ ନଥିଲେ, ପରେ ପରେ ସେ ସମ୍ପର୍କରେ ପ୍ରିଭି କାଉନ୍‌ସିଲ୍‌କୁ ମଧ୍ୟ ଜଣାଇଥିଲେ, ଯାହା ସମ୍ବାଦପତ୍ରର ସ୍ୱାଧୀନତା ପାଇଁ ଏକ ସନନ୍ଦ ହିସାବରେ ଉଚ୍ଚ ସ୍ଥାନରେ ସ୍ଥାପିତ । ଅଡ଼ିନାନ୍‌ସଟିର ପ୍ରତିବାଦ ସ୍ୱରୂପ ସେ ତାଙ୍କର ପାର୍ସୀଭାଷାରେ ପ୍ରକାଶ ପାଉଥିବା ପତ୍ରିକାକୁ ବନ୍ଦ କରି ଦେଇଥିଲେ । ତା'ଛଡ଼ା ଅଡ଼ିନାନ୍‌ସଟିକୁ ପ୍ରତ୍ୟାହାର କରି ନିଆଯିବା ପାଇଁ ଭାରତୀୟ ବୁଦ୍ଧିଜୀବୀମାନଙ୍କର ଏକ ଶୋଭାଯାତ୍ରାର ମଧ୍ୟ ସେ ଆୟୋଜନ କରିଥିଲେ ।

ହିନ୍ଦୁଧର୍ମ ବିଶ୍ୱାସ ସଂରକ୍ଷଣ ଉଦ୍ଦେଶ୍ୟରେ ରାମମୋହନ ଉତ୍ତୀର୍ଣ୍ଣ ହୋଇଥିଲେ । ସେଥିଲାଗି ସେ ଏହାର ପୁନଃ ଆବିଷ୍କାରଣ କରିବା ସଙ୍ଗେ ସଙ୍ଗେ ଏହାର ଆଧ୍ୟାତ୍ମିକ ବିଚକ୍ଷଣତାର ପୁନଃ ଉପସ୍ଥାପନା

କରିଥିଲେ । ହିନ୍ଦୁ ସମାଜ ପାଇଁ ଅତି ଆବଶ୍ୟକ ଥିବା ନୈତିକ ଚରିତ୍ରର ଅବସ୍ଥାକୁ ବଳ ପ୍ରୟୋଗ କରି ଉପରକୁ ଉଠାଇ ଦେଇଥିଲେ । କିନ୍ତୁ ତାଙ୍କର ସମାଜ ସଂସ୍କାର ବ୍ୟବସ୍ଥା ତଥା ପ୍ରତିମାପୂଜା ଦିଗରେ ବିରୋଧୀ ମତାମତ ଯୋଗୁଁ ହିନ୍ଦୁ ରକ୍ଷଣଶୀଳ ବୁଦ୍ଧିଜୀବୀଗଣ ତାଙ୍କ ବିରୁଦ୍ଧରେ ଖଡ୍‌ଗହସ୍ତ ହୋଇ ଉଠିଥିଲେ । ସେଥିପାଇଁ ସେ କେବଳ ଗୋଷ୍ଠୀଚ୍ୟୁତ ହୋଇ ନଥିଲେ - ଯାହାକୁ ସେ ଆଦୌ ଖାତିରି କରୁ ନଥିଲେ - ସେ ତାଙ୍କର ଜୀବନକାଳ ମଧ୍ୟରେ ବିଧିସିଦ୍ଧ ରୂପେ ନିଗୃହୀତ ତଥା ଉତ୍ପୀଡ଼ିତ ମଧ୍ୟ ହୋଇଥିଲେ । କେବଳ ସେ ନୁହନ୍ତି, ତାଙ୍କଦ୍ୱାରା 1830 ମସିହାରେ ପ୍ରତିଷ୍ଠିତ ବ୍ରାହ୍ମ ସମାଜର ସଭ୍ୟମାନେ ମଧ୍ୟ ସମାଜରୁ ବାସନ୍ଦ ହୋଇଥିଲେ । ତେବେ ସେଇ ସମୟରେ କେତେକ ବୁଦ୍ଧିଜୀବୀଙ୍କୁ ନେଇ ଗଠିତ ବ୍ରାହ୍ମ ସମାଜ ତା'ର ନୀତିରେ ଦୃଢ଼ ରହିଥିଲା । ଊନବିଂଶ ଓ ବିଂଶ ଶତାବ୍ଦୀରେ ଦେଶର ରାଜନୈତିକ ତଥା ସାଂସ୍କୃତିକ ଆନ୍ଦୋଳନଗୁଡ଼ିକର ପ୍ରମୁଖ ନେତା କେତେଜଣ ଥିଲେ ସେହି ସଙ୍ଗଠନର ବିଶିଷ୍ଟ ସଭ୍ୟ । ରକ୍ଷଣଶୀଳ ଗୋଷ୍ଠୀ ଓ ମୁଖ୍ୟତଃ ବ୍ରାହ୍ମ ସମାଜର ପ୍ରତିନିଧିତ୍ୱ କରୁଥିବା ପ୍ରଗତିବାଦୀଙ୍କ ମଧ୍ୟରେ ଅତି ତିକ୍ତ ବିବାଦ ଲାଗି ରହିଥିଲା ସାରା ଶତାବ୍ଦୀଧରି ।

ହିନ୍ଦୁ ପୁନର୍ଜୀବନ ଲାଭ ଆନ୍ଦୋଳନ ହିସାବରେ ଯାହା ଜଣାଶୁଣା ଥିଲା ପ୍ରକୃତ ପକ୍ଷରେ ତାହା ପୁନର୍ଜୀବନ ଲାଭ ନଥିଲା, ବରଂ ମୁଖ୍ୟତଃ ସମାଜ ସଂସ୍କାରମୂଳକ କାର୍ଯ୍ୟକ୍ରମ ଥିଲା । ଶ୍ରୀ ରାମକୃଷ୍ଣ ପରମହଂସ (1836-1886) ଥିଲେ ସାର୍ବଲୌକିକ ଏକେଶ୍ୱରବାଦର ଜୀବନ୍ତ ତଥା ମୂର୍ତ୍ତିମୟ ଅବତାର । ସମସ୍ତ ପ୍ରକାର ଆଧ୍ୟାତ୍ମିକ ଜିଜ୍ଞାସା ମାର୍ଗର ଲକ୍ଷ୍ୟସ୍ଥଳ ଥିଲେ ଭଗବାନ । ଅନ୍ୟ ଭାଷାରେ, ରାମକୃଷ୍ଣ କହିଥିଲେ - ସମସ୍ତ ଧର୍ମମତ ସମାନ ଭାବରେ ଯୁକ୍ତିସିଦ୍ଧ । ତାଙ୍କର ସନ୍ଦେଶ ଥିଲା ଅତି ଉଚ୍ଚ କୋଟୀର ମାନବବାଦ - ନିପୀଡ଼ିତ ମାନବ ପ୍ରତି ଦୟା ନୁହେଁ – ସେବା, ସେବା ଏବଂ ସେବା, ତାହାହିଁ ଭଗବାନଙ୍କ ଇଚ୍ଛାର ଆନ୍ତରିକ ପରିପୂରଣ । ତାଙ୍କର ଗତିଶୀଳ ଶକ୍ତି ତଥା ଶିଷ୍ୟ ସ୍ୱାମୀ ବିବେକାନନ୍ଦ (1863-1902) ଙ୍କ ମତରେ ରାମକୃଷ୍ଣଙ୍କ ବିଚାରଧାରା - ମାନବଜାତି ପାଇଁ ଉତ୍ସର୍ଗୀକୃତ ସେବକଙ୍କ ଉଲ୍ଲେଖଯୋଗ୍ୟ ସଙ୍ଗଠନ - ପ୍ରତି ଭାରତ ଋଣୀ । କେବଳ ସେତିକି ନୁହେଁ, ତାଙ୍କର ଉତ୍ସାହୋଦ୍ଦୀପକ ସାହସ, ଶୃଙ୍ଖଳା, ନିଃସ୍ୱାର୍ଥପରତା ଏବଂ ଜାତୀୟ ମୁକ୍ତି ପାଇଁ ନିଷ୍ଠାପର ଉଦ୍ୟମ ଯାହା ଏହି ଶତାବ୍ଦୀର ପ୍ରଥମ ଭାଗରେ ଭାରତର ରାଜନୈତିକ ଆନ୍ଦୋଳନ ରୂପେ ପ୍ରତୀତ ହୋଇଥିଲା ସେଥିପାଇଁ ମଧ୍ୟ ଭାରତ ତାଙ୍କ ନିକଟରେ ଋଣୀ । ବିବେକାନନ୍ଦ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସର୍ବୋତ୍ତମ ଧାରାଗୁଡ଼ିକର ଐକତାନିକ ସମ୍ମିଶ୍ରଣ ଚାହିଁଥିଲେ ଭାରତ ପାଇଁ । ଭାରତ ଲାଗି ସେ ଇଚ୍ଛା କରିଥିଲେ ପଶ୍ଚିମାଞ୍ଚଳର ବସ୍ତୁବାଦ ଓ ଭାରତର ଆଧ୍ୟାତ୍ମିକତା ସମ୍ମିଳିତ ଭାବେ ଜାଗରିତ ହୋଇଉଠୁ । ସେ କହିଥିଲେ, "ଭାରତୀୟ ଧର୍ମ ଧାରାରେ ଇଉରୋପୀୟ ସମାଜଟିଏ ଗଢ଼ିଉଠୁ ।" ଅଧିକ ସଂଖ୍ୟାରେ ଲୋକ ଭାରତୀୟ ସନ୍ଦେଶରେ ଉଦ୍‌ବୁଦ୍ଧ ହୋଇ ଶିକ୍ଷିତ ହୁଅନ୍ତୁ ଏବଂ ସେମାନଙ୍କ ମାନବିକ ଅଧିକାର ବିଷୟରେ ଅବଗତ ହୁଅନ୍ତୁ । ତାଙ୍କର ଯୁକ୍ତି ଥିଲା : "ଭାରତର ସମସ୍ତ ଆଶା, ଆକାଂକ୍ଷା ସାଧାରଣ ଜନତାଙ୍କ ଉପରେ ନିର୍ଭର କରେ । କାରଣ ଉଚ୍ଚତର ଜାତିଗୁଡ଼ିକର ମୃତ୍ୟୁ ହୋଇ ସାରିଲାଣି ।" ଶତାବ୍ଦୀର ଶେଷ ବର୍ଷଗୁଡ଼ିକରେ ବିଜନ ପ୍ରଦେଶରେ ରାମମୋହନଙ୍କ କଣ୍ଠସ୍ୱର ବିବେକାନନ୍ଦଙ୍କ ଆହ୍ୱାନରେ ବେଶ ଭଲଭାବରେ ପ୍ରତିଧ୍ୱନିତ ହୋଇଥିଲା ଏବଂ ତାହା ଭାରତ ପାଇଁ ଆଶ୍ଚର୍ଯ୍ୟଜନକଭାବେ ପ୍ରେରଣାଦାୟକ ହେବା ସଙ୍ଗେ

ସଙ୍ଗେ ଭାରତୀୟଙ୍କୁ ମଧ୍ୟ ଜାଗ୍ରତ କରାଇ ଦେଇଥିଲା । ଭାରତୀୟ ସମାଜର ବିଭିନ୍ନ ଶ୍ରେଣୀର ଲୋକଙ୍କ ସହ ସମାନ ଭାବେ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷାକରି ଶତାବ୍ଦୀର ସମସ୍ତ ବଳିଷ୍ଠ ବ୍ୟକ୍ତିଙ୍କ ମଧ୍ୟରୁ ବିବେକାନନ୍ଦହିଁ ଭାରତୀୟ ଜନତାଙ୍କ ବିଷୟରେଁ ସବୁଠାରୁ ଅଧିକ ଜ୍ଞାତ ହୋଇପାରିଥିଲେ ।

1850 ମସିହା ବେଳକୁ ଉଚ୍ଚ ଶିକ୍ଷିତ ଗୋଷ୍ଠୀଙ୍କ ମଧ୍ୟରେ ଜାତୀୟ ଚେତନା ଯଥେଷ୍ଟ ଭାବରେ ବୃଦ୍ଧି ପାଇ ସାମାଜିକ, ସାହିତ୍ୟିକ ଏବଂ ରାଜନୈତିକ କାର୍ଯ୍ୟକଳାପରେ ପୁଷ୍ପିତ ହୋଇଥିଲା । ରାମମୋହନଙ୍କ ଜଣେ ଯୋଗ୍ୟ ଉତ୍ତରାଧିକାରୀ ଥିଲେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର (1820-1890) ଯାହାଙ୍କଦ୍ୱାରା ପ୍ରଗତିଶୀଳ ଚିନ୍ତାଧାରା ସବୁ ପ୍ରତିଫଳିତ ହୋଇଥିଲା । ଗ୍ରାମାଞ୍ଚଳର ପଟ୍ଟଭୂମି ସହିତ ଅବିଚ୍ଛେଦ୍ୟ ସମ୍ପର୍କ ଥିବା ଏବଂ ପୁରାତନ ଧର୍ମଗ୍ରନ୍ଥ ସମେତ ପରମ୍ପରାଗୁଡ଼ିକ ବିଷୟରେ ଅଗାଧ ପାଣ୍ଡିତ୍ୟ ଥିବା ତଥା ପଶ୍ଚିମର ସାମାଜିକ ଚେତନାରେ ମାନବବାଦର ସ୍ଥିତି ବିଷୟରେ ଉତ୍ତମରୂପେ ଜ୍ଞାନ ଥିବା ବିଦ୍ୟାସାଗର ସ୍ପଷ୍ଟ ଭାବରେ ଦେଖିପାରିଥିଲେ ଜନସାଧାରଣଙ୍କ ଦାରିଦ୍ର୍ୟ, ଅଧୋଗାମୀତା ତଥା ଅଜ୍ଞତା । ସେ ସମାଜରେ ପ୍ରଚଳିତ ଥିବା ଅନ୍ୟାୟସବୁ ବିରୁଦ୍ଧରେ ଅବିରାମ ଭାବେ ଧର୍ମଯୁଦ୍ଧ ଚଳାଇବା ଲାଗି ପ୍ରବୃତ୍ତ ହୋଇଥିଲେ । ବିଧବାମାନଙ୍କୁ ପୁନଃ ବିବାହର ଅଧିକାର ମିଳିବା ଥିଲା ତାଙ୍କର ପ୍ରଥମ ଲକ୍ଷ୍ୟ ଏବଂ ସେ ଦେଖିଥିଲେ ସେ ଦିଗରେ ସଂସ୍କାରବାଦୀ ହିନ୍ଦୁ ତଥା ବ୍ରାହ୍ମ ସମାଜର ସଭ୍ୟମାନଙ୍କ ମଧ୍ୟରେ ଦୃଢ଼ ସମ୍ପର୍କ ସ୍ଥାପିତ ହୋଇ ସାରିଥିଲା । ପରିଶେଷରେ ରକ୍ଷଣଶୀଳମାନଙ୍କ ଦୃଢ଼ ବିରୋଧ ଭିତରେ ମଧ୍ୟ 1856 ମସିହାରେ ବିଧବାମାନଙ୍କୁ ପୁନଃ ବିବାହର ଅଧିକାର ଦିଆଯିବାପାଇଁ ଆଇନ ଅନୁମୋଦିତ ହୋଇଥିଲା । ସାମାଜିକ ନୈତିକତାରେ ଏକ କଳଙ୍କ ରୂପେ ପରିଗଣିତ ହେଉଥିବା ବହୁନାରୀ ଭୋଗ, ବାଲ୍ୟ ବିବାହ ତଥା ନିଶା ସେବନ ବିରୁଦ୍ଧରେ ମଧ୍ୟ ସେ କର୍ମ ଯୋଜନାମାନ ଆରମ୍ଭ କରିଥିଲେ । ସେ ଏବଂ ତାଙ୍କ ସହିତ ବିଭିନ୍ନ ଉଦ୍ୟମରେ ସହଯୋଗ କରୁଥିବା ବୁଦ୍ଧିଜୀବୀ ଗୋଷ୍ଠୀ ସେସବୁ ସାମାଜିକ ସଂସ୍କାର ସପକ୍ଷରେ ଲୋକମତ ଜାଗ୍ରତ କରିବା ଦିଗରେ ସଫଳ ହୋଇଥିଲେ ।

ବିଦ୍ୟାସାଗର ମଧ୍ୟ ନାରୀଶିକ୍ଷା ସପକ୍ଷରେ ଜଣେ ଚଳନ୍ତି ମୁଖ୍ୟ ନାୟକ ଥିଲେ । ବାସ୍ତବିକ ସେତେବେଳକୁ ଖ୍ରୀଷ୍ଟିୟାନ୍ ମିସନାରୀ ସଙ୍ଗଠନଗୁଡ଼ିକ ବାଳିକାମାନଙ୍କ ପାଇଁ କେତେକ ସ୍କୁଲ ଆରମ୍ଭ କରି ସାରିଥିଲେ । ତେବେ ସେଥିରେ ଯୋଗ ଦେଉଥିବା ବାଳିକାମାନଙ୍କୁ ଖ୍ରୀଷ୍ଟିୟାନମାନଙ୍କ କିମ୍ବା ନିମ୍ନଜାତିର ଲୋକଙ୍କ ଘରୁ ବଳପୂର୍ବକ ଅଣାଯାଉଥିଲା ଏବଂ ସେମାନଙ୍କୁ ଦିଆଯାଉଥିବା ଶିକ୍ଷା ଧର୍ମାନ୍ତର ଗ୍ରହଣ କରିବା ଭାବଧାରାରେ (ଖ୍ରୀଷ୍ଟଧର୍ମ ସପକ୍ଷରେ) ପ୍ରଭାବିତ ଥିଲା । ଗଭର୍ଣ୍ଣର ଜେନେରାଲଙ୍କ କାଉନ୍‌ସିଲରେ ଆଇନ ସଭ୍ୟ ଥିବା ଡ୍ରିଙ୍କ ୱାଟର୍ ବେଥୁନ୍‌ଙ୍କ ସହାୟତା କ୍ରମେ ବିଦ୍ୟାସାଗର ଏବଂ ତାଙ୍କ ବନ୍ଧୁମାନେ 1849 ମସିହାରେ "ହିନ୍ଦୁ ବାଳିକା ବିଦ୍ୟାଳୟ" ସ୍ଥାପନ କରିବା ପାଇଁ ସମର୍ଥ ହୋଇଥିଲେ । ତାଙ୍କ ସେହି ଉଦ୍ୟମର ପରିଣାମ ସ୍ୱରୂପ ତତ୍ ପରବର୍ତ୍ତୀ ନଅବର୍ଷ ମଧ୍ୟରେ ବିଭିନ୍ନ ଜିଲ୍ଲାରେ 35ଟି ବାଳିକା ବିଦ୍ୟାଳୟ ଆରମ୍ଭ ହୋଇଥିଲା ଏବଂ ବିଶେଷ କରି ବ୍ରାହ୍ମଣମାନଙ୍କ ଉଦ୍ୟୋଗରେ ବାଳିକାମାନଙ୍କ ପାଇଁ ଅନେକଗୁଡ଼ିଏ ବେସରକାରୀ ସ୍କୁଲ ଆରମ୍ଭ ହୋଇଥିଲା ।

ବିଦ୍ୟାସାଗର ଜଣେ ଶ୍ରେଷ୍ଠ ହେତୁବାଦୀ ଥିଲେ । ଏପରିକି ସଂସ୍କୃତ କଲେଜର ଛାତ୍ରମାନଙ୍କ ଲାଗି ମଧ୍ୟ ସେ ଇଂରାଜୀ ଅଧ୍ୟୟନ ପାଇଁ ଅନୁମୋଦନ ଦେଇଥିଲେ । କାରଣ, ତଦ୍ୱାରା ସେମାନେ ଭାରତୀୟ ଓ ପାଶ୍ଚାତ୍ୟ ଦର୍ଶନ ତତ୍ତ୍ୱର ତୁଳନାତ୍ମକ ଅଧ୍ୟୟନ କରିବାଲାଗି ସମର୍ଥ ହୋଇପାରିବେ ବୋଲି ସେ ମନେ କରିଥିଲେ । ଜନସାଧାରଣଙ୍କ ମଙ୍ଗଳଦାୟକ ହେବା ଭଳି ଶିକ୍ଷା ସେ ଚାହିଁଥିଲେ । ତେବେ ସେ ଚାହୁଁ ନଥିଲେ ମଧ୍ୟବିତ୍ତ ଶ୍ରେଣୀୟ ଶିକ୍ଷିତ ଗୋଷ୍ଠୀ ଶାସକଗୋଷ୍ଠୀରେ ରୂପାନ୍ତରିତ ହୋଇ ମୂଳ ଲୋକଙ୍କ ନିକଟରୁ ସ୍ୱତନ୍ତ୍ର ହୋଇ ରହନ୍ତୁ । ଏହି ଦୃଷ୍ଟିରୁ ସେ ନିଜେ ଥିଲେ ଏକ ଆଦର୍ଶ । ତାଙ୍କ ପୋଷାକ ପତ୍ରରେ ଥିଲା ଅତି ନିରାଡ଼ମ୍ବରତା ଏବଂ ତତ୍ ସହିତ ମଧ୍ୟ ତାଙ୍କ ନିକଟରେ ଥିଲେ ପଶ୍ଚିମର ସାଧାରଣ ଜନ ଜୀବନରେ ଥିବା ନିୟମାନୁବର୍ତ୍ତିତା ତଥା ଶ୍ରେଷ୍ଠ ନୈତିକ ଆଚରଣ ।

ପରବର୍ତ୍ତୀ ପୁରୁଷମାନଙ୍କ ପାଇଁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସର୍ବଶ୍ରେଷ୍ଠ ଅବଦାନ ହେଉଛି ବଙ୍ଗଳା ସାହିତ୍ୟର ଶ୍ରୀବୃଦ୍ଧି ପାଇଁ ଉପହାର । ଊନବିଂଶ ଶତାବ୍ଦୀ ପୂର୍ବରୁ ସାହିତ୍ୟିକ ମୂଲ୍ୟାଙ୍କନ କରାଯାଇ ପାରିବା ଭଳି କେତେକ କବିତା ସମେତ କେବଳ ପଦ୍ୟ ସାହିତ୍ୟ ହିଁ ବଙ୍ଗଳା ସାହିତ୍ୟରେ ଥିଲା । ପୂର୍ବ ବର୍ଣ୍ଣନା ଅନୁଯାୟୀ ବଙ୍ଗଳା ଗଦ୍ୟ ସାହିତ୍ୟର ଜନକ ଥିଲେ ସୁଦୂର ଇଂଲଣ୍ଡରୁ ଆସିଥିବା ମିସନାରୀମାନେ । ସେମାନେ ନୂତନ ଧର୍ମସଂସ୍କୃତିର ପ୍ରଚାର ଅଭିଳାଷୀ ଥିଲେ । ପୁଣି ସାଧାରଣ ଲୋକଙ୍କ ପାଇଁ ବଙ୍ଗଳା ପାଠ୍ୟ ପୁସ୍ତକର ଆବଶ୍ୟକତା ମଧ୍ୟ ସେତେବେଳେ ଥିଲା । ରାମମୋହନ ରାୟ ସର୍ବ ପ୍ରଥମେ ଗଦ୍ୟ ଭାଷା ବ୍ୟବହାର କରିଥିଲେ ଦର୍ଶନତତ୍ତ୍ୱମୂଳକ ମତବାଦଗୁଡ଼ିକରେ ଆଲୋଚନା ପାଇଁ ତଥା ସାମାଜିକ ଓ ରାଜନୈତିକ ତଥ୍ୟାବଳୀ ବିଷୟରେ ଟିପ୍‌ପଣୀ ଦେବା ପାଇଁ । ବିଦ୍ୟାସାଗର ଆଦର୍ଶ ସ୍ଥାନୀୟ ବଙ୍ଗଳା ଗଦ୍ୟ ସାହିତ୍ୟ ସୃଷ୍ଟି କରିଥିଲେ । ତାହାଙ୍କର 32ଟି ବଙ୍ଗଳା ରଚନା ମଧ୍ୟରୁ 15ଟି ଥିଲା ପାଠ୍ୟ ପୁସ୍ତକ । ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ସଂସ୍କୃତ କିମ୍ବା ଇଂରାଜୀରୁ ଅନୁଦିତ ହୋଇଥିଲା କିମ୍ବା ସେ ସବୁର ଛାୟାରେ ରଚିତ ହୋଇଥିଲା । ସେଗୁଡ଼ିକ ପ୍ରାଇମେରୀ ସ୍କୁଲର ପ୍ରଥମ ଶ୍ରେଣୀରୁ ଆରମ୍ଭ କରି ହାଇସ୍କୁଲର ଶେଷବର୍ଷର ଛାତ୍ରମାନଙ୍କ ପାଇଁ ଶିକ୍ଷା ପ୍ରଦାନ ଲାଗି ଉପଯୋଗୀ ହେବା ପାଇଁ ହିଁ ଉଦ୍ଦିଷ୍ଟ ଥିଲା । ଶତାବ୍ଦୀଟିଏ ବିତି ଯାଇଥିଲେ ମଧ୍ୟ ତାଙ୍କର ରଚନା ସେହିଭଳି ଅମଳିନ ରହିଛି । ଆଜି ମଧ୍ୟ ପ୍ରାୟତଃ ବଙ୍ଗାଳୀ ଛାତ୍ରଛାତ୍ରୀମାନେ ତାଙ୍କରି ରଚିତ ପୁସ୍ତକରୁ ହିଁ ପ୍ରଥମ ପାଠ ଶିକ୍ଷା ଆରମ୍ଭ କରୁଛନ୍ତି ।

ବଙ୍କିମଚନ୍ଦ୍ର ଚାଟାର୍ଜୀଙ୍କ ରଚନାବଳୀରେ (୧୮୩୮-୧୮୯୪) ବଙ୍ଗଳା ଗଦ୍ୟ ସାହିତ୍ୟ ପରିପୂର୍ଣ୍ଣତା ଲାଭ କରିଥିଲା । କେବଳ ପଦ୍ୟ ବିଭାଗକୁ ବାଦଦେଲେ ଏଭଳି କୌଣସି ସାହିତ୍ୟିକ ବିଭାଗ ନଥିଲା ଯେଉଁଥିରେ ସେ ହାତ ଦେଇ ତାହାକୁ ଋଦ୍ଧିମନ୍ତ କରି ନଥିଲେ । କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକ ବଙ୍କିମଚନ୍ଦ୍ର ସମାନ ଭାବରେ ଭାରତୀୟ ତଥା ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ର ବିଷୟରେ ଜ୍ଞାନାର୍ଜନ କରିଥିଲେ । ତାଙ୍କର ସଂସ୍କୃତ ଏବଂ ଇଂରାଜୀ ଭାଷାରେ ମଧ୍ୟ ଦକ୍ଷତା ଥିଲା । ଆଧୁନିକ ଇଂରାଜୀ ଗଳ୍ପରେ ବ୍ୟବହୃତ ସାଧାରଣ ଶୈଳୀକୁ ସେ ଉପଯୋଗ କରିବା ସଙ୍ଗେ ସଙ୍ଗେ ସେଥିରେ ଉଗ୍ର ଜାତୀୟ ଚେତନାର ପରିପ୍ରକାଶ କରାଇଥିଲେ । ଧର୍ମ ସମ୍ପର୍କରେ ଲିଖିତ ଆଲୋଚନାମୂଳକ ରଚନାବଳୀରେ ତାହାଙ୍କ ବାର୍ତ୍ତାର

ମୂଳତତ୍ତ୍ୱ ସ୍ପଷ୍ଟ ଭାବରେ ପ୍ରତିଫଳିତ । ସେଥିରେ ସେ ଘୋଷଣା କରିଛନ୍ତି ଯେ ନିଜ ଦେଶର ଜନତାଙ୍କ ପାଇଁ ଉତ୍ସର୍ଗୀକୃତ ସେବାହିଁ ଭଗବାନଙ୍କ ସେବାର ଅତି ନିକଟତମ । ତାହାଙ୍କଦ୍ୱାରା ହୋଇଥିବା ଗୀତା ସମାଲୋଚନାରେ ସେ ଏକ ଗତିଶୀଳ ମାନବୀୟ କାର୍ଯ୍ୟକଳାପର ନୈତିକତା ବିଷୟରେ ଆଲୋଚନା କରିଥିଲେ । ସେଥିରେ, (ପାଶ୍ଚାତ୍ୟ ମନୀଷୀ) କମ୍‌ତେ ଏବଂ ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କ ସ୍ପଷ୍ଟ ଭାବେ ପ୍ରକାଶିତ ମାନବବାଦ ସହିତ ଗୀତାର ଆଧ୍ୟାତ୍ମିକ ଆଦର୍ଶ ପ୍ରତିଫଳିତ ନିଃସ୍ୱାର୍ଥପର ସେବା (ନିଷ୍କାମ କର୍ମ)ର ସମ୍ମିଶ୍ରଣ ହୋଇଥିଲା । ତାଙ୍କର ଜାତୀୟତାବାଦମୂଳକ ଆଦର୍ଶ ସୃଷ୍ଟି କରିଥିଲା ବନ୍ଦେ ମାତରମ୍ ଭଳି ଅମର ସଙ୍ଗୀତ । ତାହା ଚଳିତ ଶତାବ୍ଦୀର ପ୍ରଥମ କେତେ ବର୍ଷରେ ଶୃଙ୍ଖଳାବଦ୍ଧ ଭାରତୀୟ ଜାତୀୟତାବାଦୀ ତଥା ଆନ୍ଦୋଳନକାରୀମାନଙ୍କ ଯୁଦ୍ଧ ଡାକରାଥିଲା ଏବଂ ବର୍ତ୍ତମାନ ଆମର ଏକ ଜାତୀୟ ସଙ୍ଗୀତ । "ବାସ୍ତବରେ ଜଣେ ଔପନ୍ୟାସିକ, ପ୍ରାବନ୍ଧିକ, ଦାର୍ଶନିକ, ଜାତୀୟବାଦୀ ସମାଜ ଚିନ୍ତକ ତଥା ଆଦର୍ଶବାଦୀରୂପେ ସେ ଆମ ସାଂସ୍କୃତିକ ନବଜାଗରଣର ପ୍ରତିଭାଶାଳୀ ବ୍ୟକ୍ତିବୃନ୍ଦଙ୍କ ପ୍ରତିନିଧି ଥିଲେ" - ଭାରତୀୟ ନବଜାଗରଣର ଜଣେ ଇତିହାସ ଲେଖକ ଏକଥା ସ୍ୱୀକାର କରିଛନ୍ତି ।

ଜାତୀୟତାବାଦର ଉନ୍ମେଷ କାଳରେ ବଙ୍ଗଳା କାବ୍ୟ କବିତାରେ ଏକ ନୂତନ ଆନ୍ଦୋଳନର ଉନ୍ମେଷ ହୋଇଥିଲା । ସେହି ସମୟରେ ସୁପ୍ରତିଷ୍ଠିତ କବି ଥିଲେ ମାଇକେଲ୍ ମଧୁସୂଦନ ଦତ୍ତ (1824 - 1873) । ସେ ଇଂରାଜୀ ତଥା ପାଶ୍ଚାତ୍ୟ ସାହିତ୍ୟରେ ଉଚ୍ଚକୋଟୀର ପାଣ୍ଡିତ୍ୟ ଲାଭ କରିଥିଲେ । ଆପଣାର ମାତୃଭାଷା ଅବଲମ୍ବନ କରି ସେ ଅନେକ ସ୍ମରଣୀୟ ମହାକାବ୍ୟ, ସଙ୍ଗୀତ ତଥା ନାଟକ ରଚନା କରିଥିଲେ । ସେହି ଦିଗରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ ହେମଚନ୍ଦ୍ର ବନ୍ଦୋପାଧ୍ୟାୟ, ରଙ୍ଗଲାଲ ବାନାର୍ଜୀ, ନବୀନଚନ୍ଦ୍ର ସେନ ଏବଂ ବିହାରୀଲାଲ ଚକ୍ରବର୍ତ୍ତୀ - ଯେଉଁମାନେ ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ପଦ୍ୟ ରଚନା ଶୈଳୀର ଭାବଧାରାଗୁଡ଼ିକ ଉଣାଅଧିକେ ବଙ୍କିମଚନ୍ଦ୍ରଙ୍କ ଭାବଧାରା ସହିତ ସମାନ ଥିଲା ଏବଂ ତାହାଥିଲା ଉତ୍‌ଥାନଶୀଳ ଦେଶାତ୍ମବୋଧର ଏକ ସାଧାରଣମଣ୍ଡପ ।

ନାଟକ କ୍ଷେତ୍ରରେ ମଧୁସୂଦନଙ୍କ ପଥପ୍ରଦର୍ଶନକାରୀ କାର୍ଯ୍ୟକଳାପ ତାଙ୍କ ପରେ ପରେ ଅନ୍ୟମାନେ ଅନୁକରଣ କରିଥିଲେ । ଦୀନବନ୍ଧୁ ମିତ୍ର (1828-1873) ଙ୍କ ନାଟକ 'ନୀଳଦର୍ପଣ' (1860) ଇଂରେଜ ନୀଳ ବ୍ୟବସାୟୀଙ୍କ ଦ୍ୱାରା ନୀଳଚାଷ କରିବା ପାଇଁ ବାଧ୍ୟ ହେଉଥିବା ଉତ୍ପୀଡ଼ିତ ରୟତମାନଙ୍କ ଅବସ୍ଥା ବିଷୟରେ ବିଶଦ୍ ବର୍ଣ୍ଣନା କରି ଏକ ଦୃଢ଼ ଜାତୀୟ ଆନ୍ଦୋଳନ ସୃଷ୍ଟି କରିଥିଲା । ଗିରୀଶଚନ୍ଦ୍ର ଘୋଷ (1844-1911) କେବଳ କେତେକ ସ୍ମରଣୀୟ ନାଟକ ରଚନା କରି ନଥିଲେ, ସେ ସ୍ଥାୟୀଭାବରେ ବ୍ୟବସାୟିକ ସୂତ୍ରରେ ଚାଲିପାରିବା ଭଳି ବଙ୍ଗଳା ନାଟ୍ୟ ମଞ୍ଚର ମୂଳଦୁଆ ପକାଇବା ସଙ୍ଗେ ସଙ୍ଗେ ଏହାର ଉତ୍ତରୋତ୍ତର ଉନ୍ନତି ଦିଗରେ ବିଶେଷ ପଦକ୍ଷେପମାନ ଗ୍ରହଣ କରିଥିଲେ । ତାହା 1872ରେ ଆନୁଷ୍ଠାନିକଭାବେ ଜନ୍ମଗ୍ରହଣ କରିଥିଲା । ତେବେ ତତ୍ ପୂର୍ବରୁ ସାମାଜିକ ଦୋଷଦୁର୍ବଳତା ତଥା ସରକାରୀ ଅନ୍ୟାୟର ସମାଲୋଚନା କରିବା ପାଇଁ ଦୃଶ୍ୟ-ଶ୍ରାବ୍ୟ ମାଧ୍ୟମ ଗ୍ରହଣ କରାଯାଇ ସାରିଥିଲା । ତେବେ ଉଣା ଅଧିକ ଭାବେ ନାଟକଗୁଡ଼ିକ ସହରାଞ୍ଚଳରେ ଜନସାଧାରଣଙ୍କ ମଧ୍ୟରେ ଜାତୀୟ ଭାବଧାରାକୁ ପ୍ରଚାର କରିଥିଲା ।

ପରିଶେଷରେ, ଯଦିଓ ପରିସମାପ୍ତିରେ ନୁହେଁ, ସାହିତ୍ୟିକ କ୍ଷେତ୍ରରେ ରବୀନ୍ଦ୍ରନାଥ ଠାକୁର (1861-1941)ଙ୍କ ଆବିର୍ଭାବ ହୋଇଥିଲା । ସେ ତାଙ୍କର ଆଦ୍ୟ ଜୀବନରୁ ହିଁ ଜଣେ କବି, ଗାଳ୍ପିକ, ସଙ୍ଗୀତଜ୍ଞ, ପ୍ରାବନ୍ଧିକ, ଜାତୀୟତାବାଦୀ ଏବଂ ବ୍ୟକ୍ତି ତଥା ପରିସ୍ଥିତିର ସମାଲୋଚକ ଭାବେ ଊନବିଂଶ ଶତାବ୍ଦୀରେ ଆପଣାର ପ୍ରତିଭାଶାଳୀ ଜୀବନ ବିକଶିତ କରିଥିଲେ ।

ରାମମୋହନଙ୍କ ସମୟରେ ହିଁ ଭାରତୀୟ ଜନତା ମଧ୍ୟରେ ରାଜନୈତିକ ଚେତନା ଜାଗ୍ରତ ହେବା ଆରମ୍ଭ ହୋଇ ଯାଇଥିଲା । ବିଶେଷ କରି ତାଙ୍କରି ଦ୍ୱାରା ପ୍ରକାଶିତ ପତ୍ରିକାଗୁଡ଼ିକର ପଦଚିହ୍ନ ବିଷୟରେ ଉଲ୍ଲେଖ କରାଯାଇ ପାରେ । ସେଥିରେ ସରକାରୀ ନୀତି ତଥା ଶାସନ ସମ୍ପର୍କରେ ସମାଲୋଚନାମାନ ପ୍ରକାଶ ପାଉଥିଲା । ସାଧାରଣ ଜନମତ ଗଠନ କରିବା ଦିଗରେ ପ୍ରାଥମିକ ପଦକ୍ଷେପ ନେବାର କୃତିତ୍ୱ ତାହାଙ୍କୁହିଁ ଦିଆ ଯାଇଥିଲା । 1823 ମସିହାରେ ଜାରି ହୋଇଥିବା ସମ୍ବାଦପତ୍ର ଅଡ଼ିନାନ୍‌ସ ବିରୁଦ୍ଧରେ ଆୟୋଜିତ ହୋଇଥିବା ପ୍ରତିବାଦମୂଳକ ସାମ୍ବିଧାନିକ ଆନ୍ଦୋଳନର ସ୍ୱର ତାଙ୍କରି ଦ୍ୱାରାହିଁ ଆରମ୍ଭ ହୋଇଥିଲା । . . . "ଏତେବେଳ ଯାଏଁ ସନ୍ଧ୍ୟକରି ଆସିଥିବା, ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ପ୍ରତିରୋଧ କେବଳ ବଞ୍ଚି ରହିବା ପାଇଁ ନଥିଲା, ଥିଲା ବଙ୍ଗ ସରକାରଙ୍କ ଶାସନ କ୍ଷମତାର ଅପବ୍ୟବହାର ପାଇଁ ।" 1827 ମସିହାର ଜୁରୀ ଆଇନ ବିରୁଦ୍ଧରେ ପ୍ରତିବାଦ କରି ସେ ସଙ୍ଗଠନ କରିଥିଲେ । ସେଥିରେ ଥିଲା ଖ୍ରୀଷ୍ଟିୟାନ୍‌ମାନଙ୍କ ବିଚାର କେବଳ ଖ୍ରୀଷ୍ଟିୟାନ୍ ଜଜ ନିଯୁକ୍ତ ଥିବା କଚେରୀଗୁଡ଼ିକରେ ହିଁ ହୋଇ ପାରିବ । ରାମମୋହନ ସରକାରଙ୍କୁ ଚେତାବନୀ ଶୁଣାଇ ଦେଇଥିଲେ ଯେ ବଳପ୍ରୟୋଗ କରି ଭାରତ ଭଳି ଏକ ଦେଶକୁ ଚାପି ରଖିବା ସମ୍ଭବପର ହୋଇ ନପାରେ । "ବ୍ରିଟିଶ ସାମ୍ରାଜ୍ୟ ସହ ସମାନ ଭାବରେ ରହିବାକୁ ଚାହୁଁ ଥିବା ଏକ ସହଯୋଗୀ ରାଜ୍ୟ ଯାହାର ଆବଶ୍ୟକତା ରହିଥିବା ସଙ୍ଗେସଙ୍ଗେ ଲାଭଦାୟକ ମଧ୍ୟ; କିମ୍ବା ଏକ ଅତି ବିରକ୍ତିକର, ବିପଦସଂକୁଳ ତଥା ନିଶ୍ଚିତ ଶତ୍ରୁ - ଏଦୁଇଟି ମଧ୍ୟରୁ ଯେ କୌଣସି ଗୋଟିଏକୁ ବାଧ୍ୟ ହୋଇ ସେମାନଙ୍କୁ ବାଛି ନେବାକୁ ହେବ !" ତାଙ୍କ ପରେ ପରେ ଫ୍ରାନସର ଆନ୍ଦୋଳନାତ୍ମକ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଡ଼େରୋଜିଏନ୍‌ମାନେ ଏବଂ 1835 ମସିହାରେ ସେମାନେ ସେମାନଙ୍କ ଉଦ୍ୟମରେ ସଫଳତା ଲାଭ କରିଥିଲେ । ସେହି ଉଦ୍ୟମରେ ଥିଲା ମଣିଷମାନଙ୍କର ମୌଳିକ ଅଧିକାର - ସମ୍ବାଦ ପତ୍ରମାନଙ୍କ ପାଦରେ ଲାଗିଥିବା ବେଡ଼ିର ଉଚ୍ଛେଦ । ଶିକ୍ଷିତ ଭାରତୀୟମାନଙ୍କୁ ଉଚ୍ଚ ସରକାରୀ ପଦ ପଦବୀଗୁଡ଼ିକରେ ନିଯୁକ୍ତି ଦିଆଯିବାଲାଗି ଅନ୍ୟ ଏକ ଉଦ୍ୟମ କରାଯାଇଥିଲା । 1843 ମସିହାରେ ସେହି ଦାବୀ ମଧ୍ୟ ମାନି ନିଆଯାଇ ଥିଲା ।

1837 ମସିହାରେ ଜମିଦାର (ବଡ଼ବଡ଼ ଜମିମାଲିକ)ମାନେ ସେମାନଙ୍କ "ସାଧାରଣ ସ୍ୱାର୍ଥ"ରକ୍ଷା ପାଇଁ ଜମିଦାର ମାଲିକ ସଙ୍ଘ ଗଠନ କରିଥିଲେ । ତାହା ସାମ୍ବିଧାନିକ ନୀତିନିୟମାନୁଯାୟୀ ହୋଇଥିଲା ଏବଂ ରାମମୋହନଙ୍କ ଜଣେ ବନ୍ଧୁ ରେଭରେଣ୍ଡ ଏଡ଼ମ୍‌ଙ୍କଦ୍ୱାରା 1839ରେ ପ୍ରତିଷ୍ଠିତ ଇଂଲଣ୍ଡର ବ୍ରିଟିଶ ଇଣ୍ଡିଆ ସୋସାଇଟି ସହିତ ତାହା ସଂଯୁକ୍ତ ହୋଇଥିଲା । 'ଯୁବରାଜ' ଦ୍ୱାରିକାନାଥ ଠାକୁର ଥରେ

ଇଂଲଣ୍ଡ ପରିଭ୍ରମଣରେ ଯାଇ ଫେରିବା ବେଳକୁ ସାଙ୍ଗରେ ବେଶ ଜଣାଶୁଣା ବ୍ରିଟିଶ ମୁକ୍ତିବାଦୀ ନେତା ଜର୍ଜ ଥମ୍ପସନ୍‌ଙ୍କୁ ନେଇ ଆସିଥିଲେ । ତାଙ୍କର ପରାମର୍ଶ କ୍ରମେ 1841 ମସିହାରେ 'ବେଙ୍ଗଲ ବ୍ରିଟିଶ ଇଣ୍ଡିଆନ୍ ସୋସାଇଟି' ଗଠିତ ହୋଇଥିଲା । ଥମ୍ପସନ୍ "ଦେଶୀୟ ରାଜନୈତିକ ଶିକ୍ଷାର ପ୍ରଥମ ବୀଜ ବପନ" କରିବା ବେଳେ ଅନ୍ୟ ଦୁଇଟି ସଂସ୍ଥା - "ଗୋଟିଏ ଧନସମ୍ପତ୍ତିର ଆଭିଜାତ୍ୟ ତଥା ଅନ୍ୟଟି ଜ୍ଞାନର ଆଭିଜାତ୍ୟ"ର ପ୍ରତିନିଧିତ୍ୱ କରି ମଧ୍ୟ ଅଧିକ ଦୂର ଅଗ୍ରଗତି କରିବା ଦିଗରେ ସଫଳ ହୋଇ ନଥିଲେ ।

1849 ମସିହାରେ ହିଁ ଯେତେବେଳେ ବ୍ରିଟିଶଜାତ ବ୍ୟକ୍ତିବୃନ୍ଦଙ୍କୁ ସ୍ଥାନୀୟ ବିଚାରାଳୟଗୁଡ଼ିକରେ ବିଚାର ପରିସର ଭୁକ୍ତ କରିବା ପାଇଁ ଡ୍ରିଙ୍କ ୱାଟର ବେଥୁନ୍ ପ୍ରସ୍ତାବ ଦେଇଥିଲେ, ସେତେବେଳେ ରାଜନୈତିକ ଆନ୍ଦୋଳନ ପୁନର୍ଜୀବନ ଲାଭ କରିଥିଲା । ବ୍ରିଟିଶ ବ୍ୟକ୍ତିବୃନ୍ଦ ତାହାକୁ "କଳା ଆଇନ" ନାମରେ ନାମିତ କରିଥିଲେ । ଭାରତୀୟ ଜନମତ ସେହି ଆଇନକୁ ସମର୍ଥନ ଜଣାଇଥିଲେ ମଧ୍ୟ ଏକ ମିଳିତ ସଙ୍ଗଠନର ଅଭାବ ଯୋଗୁଁ ସମର୍ଥନର ମାତ୍ରା ଦୁର୍ବଳ ହୋଇ ପଡ଼ିଥିଲା ଏବଂ ବ୍ରିଟିଶ ନାଗରିକମାନଙ୍କ ଚାପରେ ଉକ୍ତ ବିଲ୍‌କୁ ପ୍ରତ୍ୟାହାର କରି ନିଆ ଯାଇଥିଲା । ତା' ପରେ ପରେ ସେଇ ଦୁଇଟି ସଙ୍ଘ ମିଳିତ ହୋଇ 'ବ୍ରିଟିଶ ଇଣ୍ଡିଆନ୍ ଏସୋସିଏସନ୍' ନାମକ ଏକ ରାଜନୈତିକ ସଂସ୍କାରବାଦୀ ସଙ୍ଘରୂପେ 1851 ମସିହାରେ ଗଠିତ ହୋଇଥିଲା । ସେହିଭଳି ସଙ୍ଗଠନମାନ ସ୍ୱାଧୀନଭାବେ ବମ୍ବେ, ମାନ୍ଦ୍ରାଜ ଓ ପୁନାରେ ମଧ୍ୟ ଗଠିତ ହୋଇଥିଲା ଏବଂ ସେଗୁଡ଼ିକ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ଭାରତୀୟମାନଙ୍କୁ ବିଧାନ ସଭାରେ ଅଙ୍ଗୀଭୂତ କରାଇବା, ଇଂଲଣ୍ଡ ଓ ଭାରତରେ ଏକା ସମୟରେ ଭାରତୀୟ ସିଭିଲ ସର୍ଭିସ ପରୀକ୍ଷା ଅନୁଷ୍ଠିତ କରାଇବା, ଆଇନ ନିକଟରେ କୌଣସି ଭେଦଭାବ ନ ରଖି ସମସ୍ତଙ୍କୁ ସମାନ ଭାବରେ ଗ୍ରହଣ କରାଯିବା ନିୟମକୁ ସ୍ୱୀକାର କରିବା ସମେତ ଭାରତୀୟମାନଙ୍କୁ ସ୍ୱଳ୍ପ ମାତ୍ରାରେ ହେଲେ ମଧ୍ୟ ରାଜନୈତିକ କ୍ଷମତା ଦିଆଯିବା ଭଳି ଅନ୍ୟ କେତେକ ସଂସ୍କାରମୂଳକ ଦାବୀ ସେମାନେ ଅତି ଦୃଢ଼ ଭାବରେ ଜଣାଇ ଆସିଥିଲେ । 1861 ମସିହାରେ କେବଳ ଭାରତୀୟ ମାଜିଷ୍ଟ୍ରେଟ୍ କିମ୍ବା ଜଜ୍‌ମାନଙ୍କଦ୍ୱାରା ବିଚାରର ସମ୍ମୁଖୀନ ହେବା ବ୍ୟତୀତ ଇଉରୋପୀୟ-ମାନଙ୍କ ଅନ୍ୟାନ୍ୟ ସୁବିଧା ସୁଯୋଗଗୁଡ଼ିକ ଉଚ୍ଛେଦ କରି ଦିଆଯାଇଥିଲା । ଏହି ବିବାଦ ଅତି ଉଗ୍ର ସ୍ତରକୁ ବୃଦ୍ଧିପାଇ 1882-83 ରେ ଏକ ସଂକଟରେ ପରିଣତ ହୋଇ ଯାଇଥିଲା, ଯାହାଫଳରେ ଇଲବର୍ଟ ବିଲ ନେଇ ଏକ ବିରାଟ ଆଲୋଡ଼ନ ସୃଷ୍ଟି ହୋଇଥିଲା ।

1857ର ସିପାହୀ ବିଦ୍ରୋହ ବେଳେ ଇଂରେଜ ସରକାରଙ୍କୁ ସମ୍ମାନାସ୍ପଦ ବ୍ୟକ୍ତିମାନଙ୍କ ସମର୍ଥନ ବଙ୍ଗଳାର ରାଜନୈତିକ ଜଳବାୟୁରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । କିନ୍ତୁ ସିପାହୀ ବିଦ୍ରୋହ ସେମାନଙ୍କ ମାନସିକ ଚିନ୍ତନ ସ୍ତରରେ ମଧ୍ୟ ଠିକ୍ ସେହିଭଳି ପ୍ରଭାବ ପକାଇଥିଲା । ବିଦ୍ରୋହର ସ୍ୱଳ୍ପକାଳ ପରେ ଭାରତର ଶାସନ ଦାୟିତ୍ୱ ବ୍ରିଟିଶ ସରକାର ଗ୍ରହଣ କରିବା ଅବସରରେ ବି 'ହିନ୍ଦୁ ପେଟ୍ରିଅଟ' ଖବର କାଗଜର ସମ୍ପାଦକ ହରିଶ୍ଚନ୍ଦ୍ର ମୁଖାର୍ଜୀ ଲେଖିଥିଲେ : "ଭାରତୀୟମାନଙ୍କର ସମସ୍ତ ପ୍ରଶ୍ନ ଭାରତୀୟମାନଙ୍କ ଦ୍ୱାରା ହିଁ ସମାହିତ ହେବାର ବେଳ ଅତି ନିକଟତର ହୋଇ ଆସିଛି । ଯେଉଁ

ରାଜନୀତିରେ ଦେଶୀୟ ଜନତାଙ୍କ ମତାମତକୁ ସ୍ଥାନ ଦିଆଯାଉ ନାହିଁ, ତା'ର ପରିଣାମ କ'ଣ ହୋଇପାରେ ତାହା ସେହି ବିଦ୍ରୋହ ଇଂରେଜ ଜନତାଙ୍କ ନିକଟରେ ସ୍ପଷ୍ଟ କରିଦେଇଛି ।'' ଜାତୀୟ ସ୍ୱାଧୀନତା ସେତେବେଳେ ପର୍ଯ୍ୟନ୍ତ ଦାବୀ କରାଯାଇ-ନଥିଲା; ଯାହା ଦାବୀ କରା ଯାଉଥିଲା ତାହା ଥିଲା ଇଉରୋପୀୟ ଓ ଭାରତୀୟମାନଙ୍କ ମଧ୍ୟରେ ସମାନ ଅଧିକାର ପ୍ରାପ୍ତି । ଏକ ସଶସ୍ତ୍ର ଜାତୀୟବାଦୀ ଆନ୍ଦୋଳନ ଆରମ୍ଭ ହେବାକୁ ତଥାପି ବାକିଥିଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରୁ କେବଳ ପ୍ରକାଶ୍ୟ ଭାବରେ ତଥା ବଳପୂର୍ବକ ଧନ ସମ୍ପତ୍ତି ଲୁଟି ନେଇ ଯାଉ ନଥିଲେ, ତାଙ୍କର ପ୍ରତିନିଧି ତଥା ଅଫିସରମାନେ ମଧ୍ୟ ବ୍ୟକ୍ତିଗତ ଭାବେ ଲୁଣ୍ଠନ କରୁଥିଲେ । ଉଭୟେ, ବିଶେଷ କରି ଶେଷୋକ୍ତ ଦଳ ''ସେମାନଙ୍କ ଶାସନଗତ ଅଧିକ କ୍ଷମତା ପ୍ରୟୋଗ ସମ୍ପର୍କିତ କୌଣସି ବିବରଣୀ ଯେଭଳି ଭାବରେ ଲେଡ଼ନ୍ ହଲ୍ ଷ୍ଟ୍ରିଟ୍ (କମ୍ପାନୀର ମୁଖ୍ୟ କାର୍ଯ୍ୟାଳୟର ସ୍ଥାନ) କିମ୍ବା ଏପରିକି ଲଣ୍ଡନରେ ପହଞ୍ଚି ପାରିବ ନାହିଁ ସେଥିଲାଗି ସମସ୍ତ ପ୍ରତିକାରମୂଳକ ବ୍ୟବସ୍ଥା ଗ୍ରହଣ କରିଥିଲେ ।'' (ଜେ. ନଟରାଜନ୍ - ଭାରତୀୟ ସାମ୍ବାଦିକତାର ଇତିହାସ) । 1776 ମସିହାରେ ଖ୍ଲିଏମ୍ ବୋଲଟସ୍ ନାମକ କମ୍ପାନୀର ଜଣେ ଭୂତପୂର୍ବ କର୍ମଚାରୀ କଲିକତାରୁ ଗୋଟିଏ ସମ୍ବାଦ ପତ୍ର ପ୍ରକାଶ କରିବା ପାଇଁ ଉଦ୍ୟମ କରିଥିଲେ । ସରକାରୀ ମହଲରେ ତାହା ଏପରି ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଯେ ସଙ୍ଗେ ସଙ୍ଗେ ତାଙ୍କୁ ଇଂଲଣ୍ଡ ଦେଶାନ୍ତରିତ କରା ଯାଇଥିଲା । ଉଗ୍ର ସ୍ୱଭାବରେ ଖ୍ୟାତ ଜେ. ଏ. ହିକ୍କୀ ଥିଲେ ଦ୍ୱିତୀୟ ଉଦ୍ୟୋଗୀ । ତାଙ୍କ ଖବରକାଗଜ - 'ଦି ବେଙ୍ଗଲ୍ ଗେଜେଟ୍' ଯେତେ ତୀବ୍ର ଉତ୍ତେଜନା ସୃଷ୍ଟି କରିପାରେ ସେତିକି ଉତ୍ତେଜନାମୂଳକ ଥିଲା । 1786 ମସିହା ବେଳକୁ ବଙ୍ଗଳାରେ ଚାରୋଟି ଏବଂ ମାନ୍ଦ୍ରାଜରେ ଗୋଟିଏ ସାପ୍ତାହିକ ପତ୍ରିକା ପ୍ରକାଶ ପାଉଥିଲା । 1789 ମସିହାରେ ବମ୍ବେରେ ପ୍ରଥମ ସମ୍ବାଦପତ୍ର ପ୍ରକାଶନ ଆରମ୍ଭ ହୋଇଥିଲା । ଏହିସବୁ ପତ୍ରିକା ଇଂରେଜ ବ୍ୟକ୍ତିମାନଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା ଏବଂ ଯେଉଁ ସମ୍ପାଦକ କମ୍ପାନୀର ଅଫିସରମାନଙ୍କୁ ସମାଲୋଚନା କରୁଥିଲେ କିମ୍ବା ସେମାନଙ୍କ ଗୁମର ପଦାରେ ପକାଇ ଦେଉଥିଲେ, ତାଙ୍କୁ ସଙ୍ଗେ ସଙ୍ଗେ ଦେଶାନ୍ତର ଦଣ୍ଡ ଭୋଗ କରିବାକୁ ପଡୁଥିଲା । ଛାପାକଳଗୁଡ଼ିକୁ କଠୋର ନିୟନ୍ତ୍ରଣ ଭିତରେ ରଖା ଯାଇଥିଲା । ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ସାତଟି ଇଂରାଜୀ ଖବରକାଗଜର ପ୍ରକାଶସ୍ଥଳ ଭାବେ କଲିକତା ଗର୍ବିତ ଥିଲା । 1813 ମସିହାଠାରୁ 1818 ମସିହା ମଧ୍ୟରେ ମିସନାରୀମାନେ ସମ୍ବାଦପତ୍ର ପ୍ରକାଶନ ଉଦ୍ୟମ କରିଥିଲେ । ସେମାନେ 'ଦିଗ୍‌ଦର୍ଶନ' ନାମକ ଏକ ବଙ୍ଗଳା ମାସିକ, 'ସମାଚାର ଦର୍ପଣ' ନାମକ ଏକ ବଙ୍ଗଳା ସାପ୍ତାହିକ ଏବଂ 'ଦି ଫ୍ରେଣ୍ଡ ଅଫ୍ ଇଣ୍ଡିଆ' (ଭାରତର ବନ୍ଧୁ) ନାମକ ଏକ ଇଂରାଜୀ ମାସିକ - ଏଭଳି ତିନୋଟି ପତ୍ରିକା ପ୍ରକାଶ କରିଥିଲେ । ସେସବୁ ପତ୍ରିକା ସରକାରୀ ପୃଷ୍ଠପୋଷକତା ଲାଭ କରିଥିଲେ । 1818 ମସିହାରେ ପ୍ରେସ କଟକଣା-ଗୁଡ଼ିକୁ ଉଠାଇ ନିଆଯାଇଥିଲା । ଏହି ସମୟରେ ଦୁଇଜଣ ଦୃଢ଼ ନୀତିବାନ୍ ବ୍ୟକ୍ତି - ରାମମୋହନ ରାୟ ଏବଂ ଜେମସ ସିଲ୍‌କ ବକିଙ୍ଗହାମ ଏହି କ୍ଷେତ୍ରରେ ଆବିର୍ଭାବ ହୋଇଥିଲେ । ''ଦି କାଲକାଟା ଜର୍ନାଲସ୍''ରେ କମ୍ପାନୀର ଅନ୍ୟାୟ ଶାସନର ନିର୍ଭୀକ ଉଦ୍‌ଘାଟନ ଯୋଗୁଁ ଦ୍ୱିତୀୟ ବ୍ୟକ୍ତି ଜଣଙ୍କ ସହିତ ହାକିମମାନଙ୍କର ତୀବ୍ର ମତଭେଦ ହୋଇଥିଲା । 1823 ମସିହାରେ ତାଙ୍କୁ ବଳ

ପ୍ରୟୋଗ କରାଯାଇ ଇଂଲଣ୍ଡକୁ ଦେଶାନ୍ତରିତ କରାଯାଇଥିଲା, ଯେଉଁଠି ସେ ତାଙ୍କର ସେହି ଉଦ୍ୟମ ଅବ୍ୟାହତ ରଖିଥିଲେ । ରାମମୋହନ ବଙ୍ଗଳାରେ 'ସମ୍ବାଦ କୌମୁଦି', ପାର୍ସୀ ଭାଷାରେ 'ମିରାତ୍-ଉଲ୍-ଅଖବାର' ଏବଂ 'ଦି ବ୍ରାହ୍ମିନିକାଲ୍ ମେଗାଜିନ୍' ଇଂରାଜୀରେ ଆରମ୍ଭ କରିଥିଲେ । ଯେଉଁ ସ୍ୱଳ୍ପକାଳ ଲାଗି ସାମ୍ବାଦିକତା କ୍ଷେତ୍ରରେ ସ୍ୱାଧୀନତା ମିଳିଥିଲା ରାମମୋହନ ତାକୁ ପୁରାପୁରି ଉପଯୋଗ କରିଥିଲେ । ପୁଣି 1823 ମସିହାରେ ତାହା (ସାମ୍ବାଦିକତାର ସ୍ୱାଧୀନତା) ବିଚ୍ଛିନ୍ନ ହୋଇଯାଇଥିଲା । ସେ ଦିଗରେ ରାମମୋହନଙ୍କ ପ୍ରତିକ୍ରିୟା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଭାରତୀୟ ଭାଷାରେ ଭାରତୀୟମାନଙ୍କ ମାଲିକାନାରେ ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକୁ ନାମକୁ ମାତ୍ର ରିହାତି ଦିଆଯାଉଥିଲା ଏବଂ କେବଳ ଯେଉଁ ପତ୍ରିକାଗୁଡ଼ିକ ରକ୍ଷଣଶୀଳ ହିନ୍ଦୁମାନଙ୍କ ମତାମତ ସବୁକୁ ପ୍ରଚାର କରୁଥିଲେ ସେମାନେ ସେହି କାର୍ଯ୍ୟ ବଜାୟ ରଖିବା ପାଇଁ ସେହି ସ୍ୱାଧୀନତା ପାଇଥିଲେ । ସାଧାରଣ ଘଟଣାବଳୀ ଉପରେ ସମାଲୋଚନାମୂଳକ ମନ୍ତବ୍ୟ ଦେବାରୁ ରହିତ ହେଲେହିଁ ସଂସ୍କାରବାଦୀ ପତ୍ରିକାଗୁଡ଼ିକୁ ଚାଲୁ ରଖିବା ପାଇଁ ଅନୁମତି ଦିଆ ଯାଉଥିଲା । 1830 ମସିହାରେ ବଙ୍ଗଳାରେ ପ୍ରକାଶ ପାଉଥିବା ଇଂରାଜୀ ଦୈନିକ ଏବଂ ସାମୟିକ ପ୍ରକାଶ ପାଉଥିବା ଖବରକାଗଜଗୁଡ଼ିକର ସଂଖ୍ୟା ଥିଲା ତେତିଶ ଏବଂ ସେହିଭଳି ଭାରତୀୟ ଭାଷାରେ ପ୍ରକାଶ ପାଉଥିବା ଖବରକାଗଜଗୁଡ଼ିକର ସଂଖ୍ୟା ଥିଲା ଷୋହଳ । ଏଥି ମଧ୍ୟରୁ ଅଧିକାଂଶ ସ୍ୱଳ୍ପକାଳଲାଗି ବଞ୍ଚି ରହିଥିଲେ ଏବଂ ଅନ୍ୟ କେତେକ ଥିଲେ କେବଳ ପ୍ରଚାରଧର୍ମୀ ସଂଘ । 1835 ମସିହାରେ ସମ୍ବାଦପତ୍ରଗୁଡ଼ିକ ଉପରେ ଲାଗୁ ହୋଇଥିବା କଟକଣା ପ୍ରତ୍ୟାହାର ପରେ ଏହି ସମ୍ପର୍କିତ ତର୍କ ଯୁଦ୍ଧ ସମ୍ବାଦପତ୍ରଗୁଡ଼ିକର ବୃଦ୍ଧି ପାଇଁ ଉତ୍ସାହିତ କରିଥିଲା । ତେଣୁ ହିନ୍ଦୁ ରକ୍ଷଣଶୀଳ ଗୋଷ୍ଠୀ, ସଂସ୍କାରବାଦୀ ଦଳ ତଥା ଖ୍ରୀଷ୍ଟିୟାନ୍ ମିସନାରୀମାନେ ସମସ୍ତେ ମିଶି କଲମ ଚାଳନା ତ୍ୱରାନ୍ୱିତ କରି ଦେଇଥିଲେ । ସେ ସମସ୍ତଙ୍କର ବ୍ରିଟିଶ ସରକାରଙ୍କ ପ୍ରତି ଆନୁଗତ୍ୟ ଦେଖାଇବା ଭଳି ସାଧାରଣ ଲକ୍ଷଣ ଥିଲା କିନ୍ତୁ ସାମାଜିକ ତଥା ଧର୍ମ ଧାରଣା ନେଇ ସେମାନଙ୍କ ଥିବା ମନୋଭାବ ଯୋଗୁଁ ସେମାନଙ୍କ ମଧ୍ୟରେ ବିଶେଷ ପାର୍ଥକ୍ୟ ଥିଲା ।

ପ୍ରାୟ 1850 ମସିହା ପରଠାରୁ ବଙ୍ଗଳାର ଖବରକାଗଜଗୁଡ଼ିକ ସରକାରୀ ନୀତି ନିର୍ଦ୍ଧାରଣ ଦିଗରେ ପ୍ରଭାବ ବିସ୍ତାର କରିବା ଆରମ୍ଭ କରି ଦେଇଥିଲେ । 1853 ମସିହାରେ ଆରମ୍ଭ ହୋଇଥିବା 'ଦି ହିନ୍ଦୁ ପେଟ୍ରିଅଟ୍' ସେହି ଦୃଷ୍ଟିରୁ ଆପଣାର ସ୍ୱାକ୍ଷର ରଖି ପାରିଥିଲା ଯାହାର ସମ୍ପାଦକ ଥିଲେ ହରିଶ୍ଚନ୍ଦ୍ର ମୁଖାର୍ଜୀ ଏବଂ ଯିଏ ଥିଲେ "ବଙ୍ଗଳାର ଚାଷୀ (ନୀଳ), ଗୋରା ଔପନିବେଶବାଦୀ ତଥା ଅମଲାତାନ୍ତ୍ରିକ ଶାସନ ପାଇଁ ଏକ ଆତଙ୍କ ।" ବିଦ୍ୟାସାଗରଙ୍କ ବଙ୍ଗଳା ସାପ୍ତାହିକ 'ସୋମପ୍ରକାଶ' ସହିତ ଏହି ସମ୍ବାଦପତ୍ର ତଥା 1861 ମସିହାରେ ଆରମ୍ଭ ହୋଇଥିବା ଇଂରାଜୀ ପାକ୍ଷିକ 'ଦି ଇଣ୍ଡିଆନ୍ ମିରର୍' ମିଶି 1860-1862 ମଧ୍ୟରେ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟି କରିଥିବା ନୀଳ ବିବାଦ ବେଳେ ଉଲ୍ଲେଖ ଯୋଗ୍ୟ ଅବଦାନ ଦେଇଥିଲେ । ଇଂରାଜୀ ଭାଷାରେ ପ୍ରକାଶିତ ତତ୍ ପରବର୍ତ୍ତୀ ସମ୍ବାଦପତ୍ର ଥିଲା 'ଦି ବେଙ୍ଗଲି' ଯାହା 1862 ମସିହାରେ ଏକ ସାପ୍ତାହିକ ରୂପେ ପ୍ରକାଶ ପାଇଥିଲା । ପରେ ପରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସମ୍ପାଦକତ୍ୱରେ ତାହା ଜାତୀୟ ଆନ୍ଦୋଳନର ଏକ ନେତୃ ସ୍ଥାନୀୟ କାଗଜ ହୋଇ ପାରିଥିଲା ।

ମୋତିଲାଲ ଘୋଷ ଓ ତାଙ୍କ ଭାଇମାନେ ସାଧାରଣ ଜୀବନରେ ପ୍ରଶାନ୍ତ ଭାବରେ ପ୍ରବେଶ କଲାବେଳକୁ ବଙ୍ଗଳାର ଅବସ୍ଥା ଥିଲା ସେହିଭଳି ସ୍ତରରେ । ସେମାନେ ସହରାଞ୍ଚଳର ନେତୃମଣ୍ଡଳୀଙ୍କ ଭଳି ନଥିଲେ । ସେମାନେ ଗ୍ରାମାଞ୍ଚଳରୁ ଆସିଥିଲେ ଏବଂ ଜାତୀୟ ଜାଗରଣର ଗତିକୁ ତ୍ୱରାନ୍ୱିତ କରାଇବା ପାଇଁ ଆବଶ୍ୟକ ହେଉଥିବା ମୂଳ ଉପାଦାନ ଗ୍ରାମାଞ୍ଚଳର ଜନଗଣ, ଯେଉଁମାନେ ଥିଲେ ଭାରତୀୟ ଜନଜୀବନର ଶଯ୍ୟା ସ୍ୱରୂପ ସେମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିଥିଲେ ।

# ଏକ : ପ୍ରଥମ କେତୋଟି ବର୍ଷ

1847 ମସିହା ଅକ୍ଟୋବର 28 ତାରିଖ ଦିନ ମୋତିଲାଲ ଘୋଷ ଜେସୋର ଜିଲ୍ଲା (ବର୍ତ୍ତମାନ ବଙ୍ଗଳା ଦେଶରେ ଅବସ୍ଥିତ)ର ପୋଲୁଆ-ମାଗୁର (ପରକାଳରେ ତାଙ୍କ ମାତା ଅମୃତମୟୀଙ୍କ ନାମାନୁସାରେ ଅମୃତ ବଜାର ନାମରେ ନାମିତ ହୋଇଥିଲା) ଗ୍ରାମର ସାଧାରଣ ପରିବେଶ ମଧ୍ୟରେ ଏକ ଉଚ୍ଚ ବଙ୍ଗୀୟ କାୟସ୍ଥ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ହରି ନାରାୟଣ ଘୋଷ ନିଜ ଗ୍ରାମଠାରୁ 15 କିଲୋମିଟର ଦୂରରେ ଥିବା ଜେସୋର ସହରରେ ଜଣେ ଓକିଲ ଥିଲେ । ପାରମ୍ପରିକ ଭାରତୀୟ ଶୈଳୀରେ ଗଢ଼ି ଉଠିଥିବା ତାଙ୍କର କ୍ଷୁଦ୍ର ଗ୍ରାମଟି ସେଠିକାର ଲୋକଙ୍କର ସାଧାରଣ ଚାହିଦା ମେଣ୍ଟାଇବା ଦିଗରେ ସମର୍ଥ ଥିଲା । ମଧ୍ୟବର୍ତ୍ତୀ ଯୁଗରେ ଜଣେ କରଦ ରାଜା ପ୍ରତାପଦିତ୍ୟଙ୍କ ରାଜଧାନୀ ସେହି ଜିଲ୍ଲାରେ ଥିଲା । ତା'ରି ନାମାନୁଯାୟୀ ସେହି ଜିଲ୍ଲା ତଥା ଜିଲ୍ଲାର ରାଜଧାନୀ ସହରର ନାମକରଣ ହୋଇଥିଲା । ଯେତେବେଳେ ସମ୍ରାଟ ଆକବରଙ୍କ ସୈନ୍ୟ ବାହିନୀ ପ୍ରତାପଦିତ୍ୟଙ୍କ ରାଜ୍ୟ ଅଧିକାର କରିବାକୁ ଚାହିଁଥିଲେ ସେ ବୀରତ୍ୱର ସହିତ ସେମାନଙ୍କୁ ଶୋଚନୀୟ ଭାବେ ପରାଜିତ କରିଥିଲେ । ନିଜର ସ୍ୱାଧୀନତା ରକ୍ଷା କରିବା ପାଇଁ ଏକଦା ନିଷ୍ଫଳ ପ୍ରଚେଷ୍ଟା କରିଥିବା ସର୍ଦ୍ଦାର ରାଜା ସୀତାରାମ ମଧ୍ୟ ଥିଲେ ସେହି ଜିଲ୍ଲାର ଆଉ ଜଣେ ବୀର ପୁରୁଷ । ମୋତିଲାଲଙ୍କ ଜନ୍ମ ବେଳକୁ ତାହା ଏକ ବିଶିଷ୍ଟ ଜିଲ୍ଲା ହୋଇ ଯାଇଥିଲା । କାରଣ ତାହା ଥିଲା ନୀଳ ଉତ୍ପାଦନର ଏକ ବୃହତ୍ କେନ୍ଦ୍ର । ତତ୍ ସଙ୍ଗେ ସଙ୍ଗେ ସେଠାରେ ଚିନି ଓ ଖଜୁରୀ ରସରୁ ଗୁଡ଼ ମଧ୍ୟ ପ୍ରଚୁର ପରିମାଣରେ ପ୍ରସ୍ତୁତ କରାଯାଉଥିଲା । ଏହି ସମୟରେ ଜିଲ୍ଲାର ଦକ୍ଷିଣ ସୀମା ସୁନ୍ଦରବନ ସେପଟେ ବଙ୍ଗୋପସାଗରକୁ ସ୍ପର୍ଶ କରୁଥିଲା । ସେଠିକାର ଜୁଆର ଆସୁଥିବା ଅଞ୍ଚଳଗୁଡ଼ିକରେ ଧାନ ଜମି ବ୍ୟତୀତ ସରକାରୀ ପରିଚାଳିତ ଅନେକ ଗୁଡ଼ିଏ ଲୁଣ ତିଆରି କାରଖାନା ମଧ୍ୟ ଥିଲା । ଜିଲ୍ଲାର ଉପର ଅଞ୍ଚଳରେ ଯୁଗଯୁଗ ଧରି ଲୋକ ବସତି ସ୍ଥାପନ କରି ରହିଥିଲା ବେଳେ ତଳ ଅଞ୍ଚଳରେ ଜମିଗୁଡ଼ିକ ଅଧିକରୁ ଅଧିକ କୃଷିଯୋଗ୍ୟ ଜମିରେ ପରିଣତ ହୋଇ ଯାଉଥିଲା ଏବଂ ସେଥିରେ ଧାନ ଚାଷ କରା ଯାଉଥିଲା । ପରିଣାମ ସ୍ୱରୂପ ଦେଶୀୟ ଶିଳ୍ପଗୁଡ଼ିକର ଅବକ୍ଷୟ ଜନିତ ଅର୍ଥନୈତିକ ଅବ୍ୟବସ୍ଥା ସମ୍ପର୍କରେ ଜନସାଧାରଣ ଯଥାର୍ଥ ରୂପେ ହୃଦୟଙ୍ଗମ କରିପାରୁ ନଥିଲେ । କାରଣ ସେମାନଙ୍କ ଚାହିଦା ଥିଲା ସ୍ୱଳ୍ପ ଏବଂ ଜୀବନ ନିର୍ବାହର ଶୈଳୀ ଥିଲା ସରଳ । ମୋତିଲାଲ ତାଙ୍କର ବୃଦ୍ଧାବସ୍ଥାରେ (1915) ବାଲ୍ୟକାଳର ସ୍ମୃତି ଚାରଣ କରି ଦେଖିଥିଲେ ସେତେବେଳକାର "ସୁଖୀ ଓ ନିଷ୍ପାପ ସରଳ ଜୀବନର

ଦୃଶ୍ୟ ଯାହା ଆଜି ଆମ୍ଭମାନଙ୍କ କଳ୍ପନାର ବାହାରେ ।'' କପୋତାକ୍ଷୀ ନଦୀକୂଳରେ ଅବସ୍ଥିତ ତାଙ୍କ ଗ୍ରାମରେ ପରିତୁଷ୍ଟ ଗ୍ରାମବାସୀଙ୍କ ମେଳରେ ମୋତିଲାଲ ବାଲ୍ୟ ଜୀବନ ଅତିବାହିତ କରିଥିଲେ । ସେତେବେଳେ ତାହା ଥିଲା ଏକ ବୃହଦାକାର ଝରଣା ଓ ଇଂରେଜମାନେ ତାହାକୁ କବୋଦକ ନାମରେ ସମ୍ବୋଧନ କରୁଥିଲେ ।

ଆଠ ଭାଇଙ୍କ ମଧ୍ୟରେ ମୋତିଲାଲ ଥିଲେ ଚତୁର୍ଥ । ଜ୍ୟେଷ୍ଠ ବସନ୍ତ କୁମାରଙ୍କ ଜ୍ଞାନ ଲାଭର ପିପାସା ଥିଲା ଅଧିକ ଏବଂ ତାଙ୍କର ସେହି ଗୁଣକୁ ଅନ୍ୟ ସାନଭାଇମାନଙ୍କ ନିକଟରେ ପହଞ୍ଚାଇବା ଦିଗରେ ସେ ସକ୍ଷମ ହୋଇ ପାରିଥିଲେ । ସେ ହିଁ ସେମାନଙ୍କ ମନ ଭିତରେ ସାମ୍ବାଦିକତା ପ୍ରତି ଆଗ୍ରହ ତଥା ପ୍ରବୃତ୍ତିକୁ ଏଭଳି ଅନ୍ତର୍ନିହିତ କରାଇ ପାରିଥିଲେ ଯେ ପର କାଳରେ ଶିଶିର କୁମାର ଓ ମୋତିଲାଲ ପ୍ରସିଦ୍ଧି ଲାଭ କରିଥିଲେ । 1862 ମସିହା ଡିସେମ୍ବର ମାସରେ ବସନ୍ତ କୁମାର "ଅମୃତ ପ୍ରବାହିନୀ'' ନାମରେ ଜେସୋରରୁ ଏକ ପାକ୍ଷିକ ବଙ୍ଗଳା ପତ୍ରିକା ପ୍ରକାଶ କରିଥିଲେ । ତା'ର ଲକ୍ଷ୍ୟ ଥିଲା ବିଜ୍ଞାନ, ସାହିତ୍ୟ, ଶିଳ୍ପ, କୃଷି ଇତ୍ୟାଦି ବିଷୟରେ ବିଭିନ୍ନ ତଥ୍ୟ ପ୍ରଚାର କରାଇବା । ତାଙ୍କ ମୃତ୍ୟୁର କିଛି କାଳ ପରେ ସେହି ଉଦ୍ୟମ ବନ୍ଦ ହୋଇ ଯାଇଥିଲା । ଦ୍ୱିତୀୟ ଭାଇ ହେମନ୍ତ କୁମାର କଲିକତା ମେଡିକାଲ କଲେଜରେ ଅଧ୍ୟୟନ କରୁଥିଲେ, କିନ୍ତୁ 1863 ମସିହାରେ ହରି ନାରାୟଣଙ୍କ ମୃତ୍ୟୁ ଯୋଗୁଁ ବିପରୀତମୁଖୀ ଆର୍ଥିକ ଅବସ୍ଥାର ସମ୍ମୁଖୀନ ହୋଇ ଉପାଧି ପାଇବା ପୂର୍ବରୁ ତାଙ୍କୁ ଅଧ୍ୟୟନ ବନ୍ଦ କରିବାକୁ ହୋଇଥିଲା । ତୃତୀୟ ଭାଇ ଶିଶିର କୁମାର ଭାରତର ଜଣେ ସୁନାମଧନ୍ୟ ସାମ୍ବାଦିକ ହୋଇ ପାରିଥିଲେ । ସେ ମୋତିଲାଲଙ୍କ ବାଲ୍ୟକାଳରେ ତାଙ୍କର ଶିକ୍ଷକ ତଥା ପଥପ୍ରଦର୍ଶକ ଥିଲେ । ମୋତିଲାଲଙ୍କ କନିଷ୍ଠ ଭାଇମାନଙ୍କ ମଧ୍ୟରୁ ହୀରାଲାଲ ଓ ବିନୋଦଲାଲ ମଧ୍ୟ ସ୍ୱଳ୍ପକାଳ ପାଇଁ ବଞ୍ଚିଥିଲେ ଏବଂ ସର୍ବ କନିଷ୍ଠ ଗୋପାଳଲାଲ ପତ୍ରିକାର ସମ୍ପାଦନା ଦାୟିତ୍ୱ ମୋତିଲାଲଙ୍କଠାରୁ ଗ୍ରହଣ କରି ତାହା ସୃଷ୍ଟି କରି ସାରିଥିବା ପରମ୍ପରାକୁ ବଜାୟ ରଖି ପାରିଥିଲେ ।

କୋମଳମତି ମୋତିଲାଲ ତାଙ୍କର ପ୍ରାଥମିକ ଶିକ୍ଷା ଲାଭ କରିଥିଲେ ସର୍ବଜ୍ୟେଷ୍ଠଭ୍ରାତା ବସନ୍ତ କୁମାରଙ୍କ ଠାରୁ । ତାଙ୍କୁ ସେ ପିତୃପ୍ରତିମ ସମ୍ମାନ ଦେଉଥିଲେ । ତା'ପରେ ସେ ସ୍ଥାନୀୟ ପାଠଶାଳାରେ ଅଧ୍ୟୟନ ଶେଷ କରିଥିଲେ । ତାଙ୍କ ଗ୍ରାମ କିମ୍ବା ଆଖପାଖ ଅଞ୍ଚଳରେ ହାଇସ୍କୁଲ ନଥିବା ଯୋଗୁଁ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ପଡ଼ୋଶୀ ଜିଲ୍ଲା ନଦିଆର ରାଜଧାନୀ କୃଷ୍ଣ ନଗର ଯିବାକୁ ହୋଇଥିଲା । ଏହି ଜିଲ୍ଲାଟି ନୀଳ ବ୍ୟବସାୟ ଦୃଷ୍ଟିରୁ ଥିଲା ଏକ ପ୍ରମୁଖ ସ୍ଥାନ । ପୁଣି ଏହା ଖ୍ରୀଷ୍ଟୀୟାନ ମିସନାରୀମାନଙ୍କ ଏକ ଶକ୍ତିଶାଳୀ କେନ୍ଦ୍ର ଥିଲା । ତଦ୍ ବ୍ୟତୀତ ଅତି ପୁରାତନ ରକ୍ଷଣଶୀଳ ସଂସ୍କୃତ ଶିକ୍ଷା କେନ୍ଦ୍ରରୂପେ ମଧ୍ୟ ତାହାର ପ୍ରସିଦ୍ଧି ଥିଲା । ପୁଣି ତାହା ଥିଲା ଅର୍ଦ୍ଧ ସାମନ୍ତବାଦୀ ଜମିଦାର ନଦିଆ ମହାରାଜାଙ୍କ ପାରିବାରିକ ସ୍ଥାନ । ଯେଉଁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ନାମାନୁଯାୟୀ ସେହି ସହରର ନାମକରଣ କରାଯାଇଥିଲା, ସେ ପଲାସୀ ଯୁଦ୍ଧ ବେଳେ ବ୍ରିଟିଶର ପକ୍ଷ ସମର୍ଥନ କରିଥିଲେ ଏବଂ ସେ ମଧ୍ୟ ଥିଲେ ଶିକ୍ଷା ତଥା ସାହିତ୍ୟର ଜଣେ ପ୍ରସିଦ୍ଧ ପୃଷ୍ଠପୋଷକ । ଇଂରାଜୀ ମାଧ୍ୟମରେ ବିଦ୍ୟା ଶିକ୍ଷା କୃଷ୍ଣ ନଗରର ଶିକ୍ଷିତ ଗୋଷ୍ଠୀଙ୍କ ଉପରେ ଏପରି ପ୍ରଭାବ ବିସ୍ତାର କରି ପାରିଥିଲା ଯେ ଯଦିଓ ବୃଦ୍ଧ ରକ୍ଷଣଶୀଳ ଗୋଷ୍ଠୀ ପସନ୍ଦ କରି

ନଥିଲେ ତଥାପି ସେମାନେ ଖ୍ରୀଷ୍ଟୀୟାନ୍ ମିସନାରୀମାନଙ୍କ ପ୍ରଚାରର ଗୁରୁତ୍ୱ ଉପଲବ୍ଧି କରି ପାରିଥିଲେ । ମହର୍ଷି ଦେବେନ୍ଦ୍ରନାଥ ଠାକୁର ଏ ସହରକୁ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ସେନ୍‌ଙ୍କ ସହ 1860 ମସିହାରେ ଆସିଥିଲେ । ବ୍ରାହ୍ମ ସମାଜ ଆନ୍ଦୋଳନରେ ସେହି ଦୁଇନେତା ତେଜୀୟାନ୍ ହିନ୍ଦୁଧର୍ମ ସପକ୍ଷରେ ଦେଇଥିବା ଭାଷଣ ଶୁଣି ସେଠିକାର ସମ୍ଭ୍ରାନ୍ତ ଶ୍ରେଣୀ, ବିଶେଷ କରି ଯୁବକଦଳ, ଏତେ ଅଭିଭୂତ ହୋଇ ଯାଇଥିଲେ ଯେ ସହରଟି ଅଚିରେ ବ୍ରାହ୍ମ ଆନ୍ଦୋଳନର ଏକ କେନ୍ଦ୍ରସ୍ଥଳ ହୋଇ ଯାଇଥିଲା । ମୋତିଲାଲ ମଧ୍ୟ ସେହି ଆନ୍ଦୋଳନ ମଧ୍ୟକୁ ଟାଣି ହୋଇ ଯାଇଥିଲେ । ହିନ୍ଦୁଧର୍ମକୁ ଆନୁଷ୍ଠାନିକ ଭାବେ ତ୍ୟାଗ ନକରି ତାଙ୍କ ଭାଇମାନଙ୍କ ଭଳି ସେ ମଧ୍ୟ ସମାଜର ସଂସ୍କାରମୂଳକ କାର୍ଯ୍ୟକ୍ରମଗୁଡ଼ିକର ଦୃଢ଼ ସମର୍ଥକ ପାଲଟି ଯାଇଥିଲେ ।

ମୋତିଲାଲ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ପାସ୍ କରି ସ୍ଥାନୀୟ କଲେଜରେ କଳାଶ୍ରେଣୀରେ ନାମ ଲେଖାଇ ଥିଲେ । ସେତେବେଳେ ରେଳ ଯୋଗାଯୋଗର ସୁବିଧା ନଥିଲା କିମ୍ବା ସଡ଼କ ପଥରେ ରୀତିମତ ଯାତାୟତରେ ସୁଯୋଗ ନଥିଲା । ତେଣୁ ସେ ବିଭିନ୍ନ ଛୁଟି ସମୟରେ ସେଠାରୁ ପ୍ରାୟ 80 କିଲୋମିଟର ଦୂରସ୍ଥ ନିଜ ଗ୍ରାମକୁ ଚାଲିଚାଲି ଯାଉଥିଲେ ଏବଂ ଛୁଟି ଶେଷରେ ସେହିଭଳି ହିଁ ଫେରୁଥିଲେ । କିଭଳି କଷ୍ଟକର ପରିସ୍ଥିତି ଭିତର ଦେଇ ସେ ଅଧ୍ୟୟନ କରିଥିଲେ ସେଥିରୁ ଅନୁମାନ କରାଯାଇ ପାରେ । କଷ୍ଟଦାୟକ ପରିସ୍ଥିତି ପାଇଁ ହେଉ ବା ପିତାଙ୍କର ମୃତ୍ୟୁପରେ ପରେ ସମ୍ମୁଖୀନ ହୋଇଥିବା ଆର୍ଥିକ ଅନଟନ ପାଇଁ ହେଉ, ସେ କଲେଜର ଶେଷ ପରୀକ୍ଷା ଦେଇପାରି ନଥିଲେ । ତା'ପରେ ଜିଲ୍ଲାର ତକୁଆ ଅଞ୍ଚଳ ପିଲଜଙ୍ଗୀ ନାମକ ଗ୍ରାମରେ ବେସରକାରୀ ଉଦ୍ୟମରେ ନୂତନ କରି ଗଢ଼ି ଉଠିଥିବା ଗୋଟିଏ ଇଂରାଜୀ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ପଦବୀ ଗ୍ରହଣ କରିଥିଲେ । କିନ୍ତୁ ସେଠାରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ସେ କେବେବି ସୁସ୍ଥ ସବଳ ରହିପାରି ନଥିଲେ । ତେଣୁ ସେ ନିଜ ଗ୍ରାମକୁ ଫେରି ଆସିଥିଲେ । ପୂର୍ବରୁ ସେଠାରେ ତାଙ୍କର ଜ୍ୟେଷ୍ଠ ଭାଇମାନଙ୍କ ଦ୍ୱାରା ହାଇସ୍କୁଲ, ଗାର୍ଲସ୍ ସ୍କୁଲ ଏବଂ ପ୍ରୌଢ଼ଶିକ୍ଷା କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ମୋତିଲାଲ ସେସବୁର ଦେଖାଶୁଣା କରିଥିଲେ । ସଂସ୍କାରବାଦୀ କାର୍ଯ୍ୟକଳାପ ଯୋଗୁଁ ଗ୍ରାମର ନିଜ ଜାତି ମୁଖିଆମାନଙ୍କଦ୍ୱାରା ସେମାନେ ସମାଜରୁ ବାସନ୍ଦ ହୋଇଥିଲେ । ତେଣୁ ସେମାନଙ୍କ ବିରୋଧାତ୍ମକ କାର୍ଯ୍ୟକଳାପରୂପେ ସେମାନେ ଗୋଟିଏ ହରିସଭାର ସଙ୍ଗଠନ ମଧ୍ୟ କରିଥିଲେ । ଜୀବନର ଶେଷ ବେଳକୁ ମୋତିଲାଲଙ୍କ ଭାଇମାନେ ବୈଷ୍ଣବ ଧର୍ମଧାରା ଅନୁସରଣ କରିଥିଲେ ।

ବସନ୍ତ କୁମାରଙ୍କ ଅକାଳ ମୃତ୍ୟୁ ତାଙ୍କ ପରିବାର ପାଇଁ ଏକ ଦାରୁଣ ଧକ୍କା ଥିଲା । ସେତେବେଳକୁ ହେମନ୍ତ କୁମାର ଓ ଶିଶିର କୁମାର ଆୟକର ବିଭାଗର ଡେପୁଟି କଲେକ୍ଟର ଭାବେ ସରକାରୀ ଚାକିରୀରେ ଯୋଗଦେଇ ସାରିଥିଲେ । କିନ୍ତୁ ସାମ୍ବାଦିକତା ହିଁ ସର୍ବସାଧାରଣଙ୍କ ଲାଗି ଶିକ୍ଷାର ଏକ ମାଧ୍ୟମ ବୋଲି ଚିନ୍ତାଧାରା ସେମାନଙ୍କ ରକ୍ତରେ ପ୍ରବାହିତ ହେଉଥିଲା ଯେମିତି । ତେଣୁ 1867 ମସିହାରେ ସେମାନେ ଉଭୟେ ଚାକିରୀରୁ ଇସ୍ତଫା ଦେଇ ଆପଣାର ଗ୍ରାମକୁ ଫେରି ଆସିଥିଲେ । ସେଠାରୁ ବଙ୍ଗଳା ଭାଷାରେ ଏକ ସାପ୍ତାହିକ ସମ୍ବାଦପତ୍ରର ପ୍ରକାଶନ ଆରମ୍ଭ କରିଥିଲେ । ଦଶ ବର୍ଷର ସମୟ ସୀମା ମଧ୍ୟରେ ସମ୍ବାଦପତ୍ରର ଇତିହାସ ସୃଷ୍ଟି କରିବା ପାଇଁ ତାହା ଯେମିତି ଦୈବ ନିଯୁକ୍ତ ଥିଲା ।

# ଦୁଇ : ଗୋଟିଏ ଖବର କାଗଜର ଜନ୍ମ

1868 ମସିହା ଫେବୃୟାରୀ 20 ତାରିଖ ଦିନ ସର୍ବ ପ୍ରଥମେ 'ଅମୃତ ବଜାର ପତ୍ରିକା' ଦିବସର ଆଲୋକ ଦେଖିଥିଲା । ବାସ୍ତବିକ୍ ତାହାଥିଲା ତିନି ଭାଇଙ୍କର ଏକ ମିଳିତ ଉଦ୍ୟୋଗ । ଗ୍ରାମାଞ୍ଚଳରୁ ସାପ୍ତାହିକ ଖବରକାଗଜଟିଏ ପ୍ରକାଶ କରିବା ସାହସିକ କାର୍ଯ୍ୟ ଥିଲା । ଯେହେତୁ ସେମାନେ ତିନିଭାଇ ବିଶେଷ ବିତ୍ତଶାଳୀ ନଥିଲେ ତାହା ଏକ ଦୁଃସାହସିକ କାର୍ଯ୍ୟ ମଧ୍ୟ ଥିଲା । ସେମାନେ କିପରି ତାହା ସମ୍ଭବ କରି ପାରିଥିଲେ ସେହି ବିଷୟରେ ମୋତିଲାଲ ନିଜ ଭାଷାରେ ବର୍ଣ୍ଣନା କରିଛନ୍ତି:

"କଲିକତା ନିକଟସ୍ଥ ଏକ ସ୍ଥାନରେ ବାସ କରୁଥିବା ଜଣେ ଉଦ୍ୟୋଗୀ ବ୍ୟବସାୟ ସୂତ୍ରରେ ଛାପାକାର୍ଯ୍ୟ କରିବା ପାଇଁ କେତେକ ଯନ୍ତ୍ରପାତି କ୍ରୟ କରିଥିଲେ । କିନ୍ତୁ ସେ ତାଙ୍କ ଉଦ୍ୟମରେ ବିଫଳ ହୋଇଥିଲେ ଏବଂ ତତ୍‌ପରେ ପରେ ମୃତ୍ୟୁ ବରଣ କରିଥିଲେ । ତା'ପରେ ତାଙ୍କ ବିଧବା ସ୍ତ୍ରୀ ସେସବୁକୁ ବିକ୍ରୟ କରିବାଲାଗି ଇଚ୍ଛା କରିଥିଲେ । ସେସବୁ ଯନ୍ତ୍ରପାତି କ୍ରୟ କରାଯାଇ ଜେସୋର ଜିଲ୍ଲାର ଗୋଟିଏ ଛୋଟିଆ ଗ୍ରାମ ଅମୃତ ବଜାରକୁ ନିଆ ଯାଇଥିଲା । ସେଗୁଡ଼ିକ ମଧ୍ୟରେ ସବୁଠାରୁ ଦାମିକା ଥିଲା କାଠରେ ତିଆରି ବଲେଇ ନାମକ ଏକ ଛାପାକଳ ଯାହାର ମୂଲ୍ୟଥିଲା 32 ଟଙ୍କା । ତାହା ସେହି ଗ୍ରାମର ବଢ଼େଇ ଦ୍ୱାରା ସଂଯୋଜିତ ହୋଇଥିଲା ଏବଂ ଭଗ୍ନ ଅବସ୍ଥାରେ ଥିବା ଅକ୍ଷର କେସ୍‌ଗୁଡ଼ିକ ବଇଠି ଉପରେ ଯଥାବିଧି ରଖାଯାଇଥିଲା । ଏହିଭଳି ଅମୃତ ବଜାର ଗ୍ରାମରେ ଗୋଟିଏ ଛୋଟିଆ କାର୍ଯ୍ୟଶାଳା ଆରମ୍ଭ ହୋଇଥିଲା ।

ଯେଉଁମାନେ ଏଠାରେ କାମ କରୁଥିଲେ ସେମାନଙ୍କୁ କଲିକତା ଯାଇ ଛାପା ବିଷୟରେ ଶିକ୍ଷାଲାଭ କରିବାକୁ ହୋଇଥିଲା । ସେମାନେ ଯେତେବେଳେ ପତ୍ରିକା ଆରମ୍ଭ କରିଥିଲେ ସେତେବେଳେ ଅକ୍ଷର ସଂଯୋଜନା କରିବାଲାଗି ଆବଶ୍ୟକ କାଠି ଧରି ସେଥିରେ ଅକ୍ଷରକୁ ସଜାଡ଼ିବା ସଙ୍ଗେ ସଙ୍ଗେ ସେଇମାନଙ୍କୁ ହିଁ ଫର୍ଦ୍ଦରେ ଛାପିବା କାର୍ଯ୍ୟ କରିବାକୁ ପଡ଼ିଥିଲା । ସ୍ଥୂଳରେ କହିବାକୁ ଗଲେ, ଯଦିଚ ଗ୍ରାମର ଅଳ୍ପ କେତେଜଣ ବ୍ୟକ୍ତି ସେସବୁ ବିଷୟରେ ତାଲିମ୍ ନେଇଥିଲେ ତଥାପି ମାଲିକମାନଙ୍କୁ ନିଜ ଜନ୍ମସ୍ଥାନ ଅମୃତ ବଜାରରେ ରହିଥିବା ପର୍ଯ୍ୟନ୍ତ, କମ୍ପୋଜିଟର, ଛପାଇବା ଲୋକ ଏବଂ ସମ୍ପାଦକରୂପେ ଆପଣା ଛାଏଁ କାର୍ଯ୍ୟ କରିବାକୁ ପଡୁଥିଲା ।

ଅକ୍ଷର ଯୋଡ଼ିବା ପାଇଁ ଜାଠି ଧରିବା ତଥା ପତ୍ରିକା ଛପାଇବା ପାଇଁ ମେସିନ୍ ଚଳାଇବା ବ୍ୟତୀତ ସେମାନଙ୍କୁ ରୋଲର ତଥା ଅକ୍ଷରଗୁଡ଼ିକୁ ଛାଞ୍ଚରେ ଢାଳିବା, ମେଟ୍ରିକ୍ସ ତିଆରି ଏବଂ ସ୍ୟାହି ପ୍ରସ୍ତୁତ କରିବାକୁ ପଡୁଥିଲା । ସେମାନେ କାଗଜ ତିଆରି କରିବାରେ ପରାହତ ହୋଇଥିଲେ କିନ୍ତୁ ଉତ୍ତମ ଧରଣର ସ୍ୟାହି ପ୍ରସ୍ତୁତ କରି ପାରୁଥିଲେ । ତେବେ ଅକ୍ଷର ଏବଂ ମେଟ୍ରିକ୍ସ ଗୁଡ଼ିକ ନିମ୍ନ ମାନର ଥିଲା । କିନ୍ତୁ ଅତି ଦରକାର ପଡୁଥିବା ଯୋଗୁଁ ସେଗୁଡ଼ିକ ବ୍ୟବହାର କରାଯାଉଥିଲା ।

ଆରମ୍ଭ ହୋଇଥିବା କାଗଜଟି ବଙ୍ଗଳା ଭାଷାରେ ଥିଲା ଏବଂ ଥିଲା ସାପ୍ତାହିକ । ଅଢେଇ ଫର୍ମ ଛୋଟ କାଗଜ (କ୍ରାଉନ୍) ବିଶିଷ୍ଟ ଏହି ପତ୍ରିକାଟି 1868 ମସିହା ମାର୍ଚ୍ଚ ମାସରେ ପ୍ରକାଶ ପାଇଥିଲା ।* ଏହି ପତ୍ରିକାର ନାମକରଣ କରାହୋଇଥିଲା 'ଅମୃତ ବଜାର ପତ୍ରିକା' । "ଅମୃତ"ର ଅର୍ଥ ସୁଧା "ବଜାର"ର ଅର୍ଥ ଖବର କାଗଜ । ତେଣୁ କହିବାକୁ ଗଲେ 'ଅମୃତ ବଜାର ପତ୍ରିକା' ଏଭଳି ଗୋଟିଏ ଖବର କାଗଜ ଥିଲା ଯାହା ପ୍ରକୃତରେ ଅମୃତ ବଣ୍ଟନ କରୁଥିଲା । ଅବଶ୍ୟ ଅମୃତର ଅନ୍ୟ ଗୋଟିଏ ଅର୍ଥ ଥିଲା ଏକୋନାଇଟ ବା ବିଷ । ତେଣୁ ତାର ମାଲିକମାନଙ୍କ ମତରେ 'ଅମୃତ ବଜାର ପତ୍ରିକା' ଏଭଳି ଗୋଟିଏ ଖବରକାଗଜ ଥିଲା ଯାହା ସରବରାହ କରୁଥିଲା ଉଭୟ ଅମୃତ ଓ ବିଷ । ସତ୍ ଚିନ୍ତକ ମାନଙ୍କୁ ଅମୃତ ମିଳିବା ବେଳେ ଉଦ୍‌ଭ୍ରାନ୍ତ ଚିତ୍ତବିଶିଷ୍ଟ ବ୍ୟକ୍ତିମାନଙ୍କୁ ବିଷହିଁ ମିଳୁଥିଲା ।"

ଆପଣାଙ୍କୁ ଆପେ ସାହାଯ୍ୟ କରିବାର ମାତ୍ରା ସମ୍ଭବତଃ ଆଉ ଅଧିକ ହୋଇ ନପାରେ । ଅଧିକାଂଶ ଲେଖକ ମଧ୍ୟ ଥିଲେ ତାଙ୍କ ପରିବାରର ଲୋକ କିମ୍ବା ଅନ୍ତରଙ୍ଗ ବନ୍ଧୁବାନ୍ଧବ । ଅଳ୍ପ କେତେ ମାସ ମଧ୍ୟରେ ପତ୍ରିକାର ପ୍ରସାର ପାଞ୍ଚଶହକୁ ବୃଦ୍ଧି ପାଇ ଯାଇଥିଲା । ସେତେବେଳକାର ସମୟକୁ ବିଚାର କଲେ ସେହି ସଂଖ୍ୟା କିଛି କମ୍ ନଥିଲା । ସାପ୍ତାହିକର ଲୋକପ୍ରିୟତା ଯୋଗୁଁ ସରକାର ସେଥିରେ ପ୍ରକାଶ ପାଉଥିବା ବିଷୟବସ୍ତୁ ପ୍ରତି ନଜର ରଖୁଥିଲେ ଏବଂ ତାହା ସେମାନଙ୍କୁ ଉତ୍ତେଜିତ କରାଇ ଦେଇଥିଲା ।

ଜନସାଧାରଣଙ୍କ ପ୍ରତି ସ୍ଥାନୀୟ ଶାସକମାନଙ୍କର ଅନ୍ୟାୟମୂଳକ କାର୍ଯ୍ୟକଳାପର ଉଦ୍‌ଘାଟନ ଏବଂ ଜନତାଙ୍କ ଦୁଃଖ ଦୁର୍ଦ୍ଦଶାଗୁଡ଼ିକ ଉପସ୍ଥାପନ କରିବା ଦିଗରେ ଯତ୍ନଶୀଳତା ଥିଲା ପତ୍ରିକାଟିର ଶୀଘ୍ର ଲୋକପ୍ରିୟତା ହାସଲ କରିବାର ଗୋଟିଏ କାରଣ ।

ଯେହେତୁ ତାହା ଅଫିସରମାନଙ୍କ ମର୍ଯ୍ୟାଦା ଉପରେ ଆଞ୍ଚ ଆଣିଥିଲା, ଯେଉଁମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ଇଂରେଜ ଅଫିସର, ସେମାନେ ଚାହିଁଥିଲେ ସେମାନଙ୍କୁ ସମାଲୋଚନା କରିବାର ଔଦ୍ଧତ୍ୟ ପାଇଁ ଘୋଷଭାଇମାନଙ୍କୁ ସମୁଚିତ ଶିକ୍ଷା ଦେବେ । କିନ୍ତୁ ଇତି ମଧ୍ୟରେ ଜନସାଧାରଣଙ୍କ ମଧ୍ୟରୁ ଅନେକ ଓକିଲ, ଶିକ୍ଷକ ଏବଂ ଏପରିକି ଭାରତୀୟ ଚାକିରିଆଙ୍କୁ 'ପତ୍ରିକା' ଆପଣାର ବନ୍ଧୁରୂପେ ଲାଭ କରିସାରିଥିଲେ । ପତ୍ରିକାଟିକୁ ଚାରିମାସ ବୟସ ହେବା ପୂର୍ବରୁ ଜଣେ ଇଉରୋପୀୟ ସବ୍ ଡିଭିଜନାଲ୍ ଅଫିସରଙ୍କ ମାନହାନିମୂଳକ ଗୋଟିଏ ଲେଖା ପାଇଁ ଏହା ଏକ ଫୌଜଦାରୀ ମୋକଦ୍ଦମାର ସମ୍ମୁଖୀନ ହୋଇଥିଲା ।

---

* ଏହା ଭୁଲ ବୋଲି ମନେହୁଏ । ପତ୍ରିକାର ପ୍ରଥମ ପ୍ରକାଶନରେ ଲେଖା ହୋଇଥିବା ତାରିଖ ହେଉଛି 20 ଫେବୃଆରୀ 1868 ।

'ପତ୍ରିକା' ପାଇଁ' ସେହି ମାଜିଷ୍ଟ୍ରେଟ୍‌ଙ୍କ କାର୍ଯ୍ୟାଳୟର ଜଣେ ବନ୍ଧୁ ଲେଖାଟି ଲେଖିଥିଲେ । ଲେଖକଙ୍କ ନାମ ଜଣାଥିଲା । ପୁଣି ସେତେବେଳେ ଆଇନ ଅନୁଯାୟୀ ପତ୍ରିକାରେ ସମ୍ପାଦକଙ୍କ ନାମ ପ୍ରକାଶ କରିବା ଦରକାରୀ ନଥିଲା । ତେଣୁ ମୋକଦ୍ଦମାଟି ଶିଶିର କୁମାରଙ୍କ ଉପରେ ସମ୍ପାଦକୀୟ ଦାୟିତ୍ୱ ଆରୋପିତ କରିବା ପାଇଁ ଦୃଢ଼ ଉଦ୍ୟମ ଚଳାଇଥିଲେ । ମୋକଦ୍ଦମାରେ ସାକ୍ଷ୍ୟ ଦେବା ପାଇଁ ମୋତିଲାଲଙ୍କ ଉପରେ ହୁକୁମନାମାଜାରୀ ହୋଇଥିଲା । ଯଦିଓ ବିଚାର କରୁଥବା ମାଜିଷ୍ଟ୍ରେଟ୍ ଜଣକ ପାଲଟା ଜେରା କରିଥିଲେ ତଥାପି ସମ୍ପାଦକଙ୍କ ପରିଚୟ ପ୍ରମାଣିତ ହୋଇ ପାରି ନଥିଲା । ଯେତେବେଳେ ମାଜିଷ୍ଟ୍ରେଟ୍ ମୋତିଲାଲଙ୍କୁ ତା'ର ସମ୍ପାଦକ କିଏ ବୋଲି ପ୍ରଶ୍ନ କରିଥିଲେ, ଉତ୍ତରରେ ସେ କହିଥିଲେ, "ଖବର କାଗଜଟି ଏଇ ଅଳ୍ପ କେତେଦିନ ହେବ ଆରମ୍ଭ ହୋଇଛି । ଏହାର ସମ୍ପାଦକ କିଏ ହେବ ତାହା ଏପର୍ଯ୍ୟନ୍ତ ସ୍ଥିର ହୋଇନାହିଁ ।"

ମାଜିଷ୍ଟ୍ରେଟ୍ - "କିନ୍ତୁ ଶିଶିର କୁମାର ପ୍ରକୃତରେ ଏହାର ସମ୍ପାଦକ ବୋଲି କ'ଣ ଲୋକେ ଭାବୁ ନାହାନ୍ତି ?"

ମୋତିଲାଲ - "ହଁ ସେମାନେ ସେଭଳି ଭାବନ୍ତି । କାରଣ ସେମାନେ ଭାବନ୍ତି ଶିଶିର କୁମାର ଅତି ସୁନ୍ଦର ଭାବରେ ଲେଖି ପାରନ୍ତି ।"

ମାଜିଷ୍ଟ୍ରେଟ୍ - "ତୁମେ କ'ଣ ଭାବୁଛ ଶିଶିର କୁମାର ଉତ୍ତମ ଇଂରାଜୀ ଲେଖିପାରନ୍ତି ?"

ମୋତିଲାଲ - "ହଁ ଅତି ଉତ୍ତମ । ଅନେକ ଉଚ୍ଚ ଦରମାପ୍ରାପ୍ତ ସରକାରୀ କର୍ମଚାରୀଙ୍କ ଅପେକ୍ଷା ମଧ୍ୟ ଅଧିକ ଉତ୍ତମ ।"

କଲିକତା ହାଇକୋର୍ଟର ଜଣେ ବିଶିଷ୍ଟ ବାରିଷ୍ଟର ମନମୋହନ ଘୋଷ 'ପତ୍ରିକା'କୁ ସମର୍ଥନ ଜଣାଇଥିଲେ ଓ ସାକ୍ଷୀ ବାକ୍ସ ଭିତରୁ ମୋତିଲାଲଙ୍କ ଚତୁରତା ପୂର୍ଣ୍ଣ ଉତ୍ତର ପାଇଁ ବିଶେଷ ପ୍ରଶଂସା କରଥିଲେ । କେସ୍ ଆଠମାସ ପାଇଁ ବିଚାରଧୀନ ଥିଲା । ଘୋଷ ଭାଇମାନେ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ । କିନ୍ତୁ ପ୍ରବନ୍ଧଟିର ମୁଦ୍ରକ ଓ ଲେଖକ ଯଥାକ୍ରମେ ଛଅମାସ ଏବଂ ଏକବର୍ଷ ପାଇଁ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । କେସ୍‌ର ସାକ୍ଷ୍ୟ ପ୍ରମାଣ, ଯଥା - ଆପତ୍ତି ଉଠିଥିବା ରଚନାର ପାଣ୍ଡୁଲିପି ସବୁ କଚେରୀରେ ଦାଖଲ କରି ନଥିବା ଅଭିଯୋଗରେ ପୁଣି ଗୋଟିଏ ମୋକଦ୍ଦମା ଦାୟର ହୋଇ ମଧ୍ୟ ପରାହତ ହୋଇଥିଲା । କୌଣସି କାଳେ ଅତି ସ୍ୱଚ୍ଛଳ ଅବସ୍ଥାରେ ନଥିବା ଘୋଷ ଭାଇମାନେ ସେଭଳି ଆର୍ଥିକ ଦୁଃସ୍ଥିତି ମଧ୍ୟରେହିଁ ରହିଥିଲେ । ତେବେ କେତେକ ଉତ୍ତମ ବନ୍ଧୁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ ଏବଂ ଖବରକାଗଜଟିର ପ୍ରକାଶନ ବଜାୟ ରହିଥିଲା ।

୧୮୬୨ ମସିହାରୁ ପତ୍ରିକାର କେତେକ ସ୍ତମ୍ଭ ଇଂରାଜୀରେ ପ୍ରକାଶିତ ହୋଇ ଏହା ଏକ ଦ୍ୱିଭାଷୀ ସମ୍ବାଦ ପତ୍ରରେ ପରିଣତ ହୋଇଥିଲା । ତା'ର କାରଣ ଥିଲା ଏହାର ସମ୍ପାଦକ ତଥା ମାଲିକମାନେ ଚାହୁଁଥିଲେ ଯେ ଅନ୍ୟାନ୍ୟ ଅଞ୍ଚଳର ପାଠକମାନଙ୍କ ନିକଟରେ ଏହା ପହଞ୍ଚୁ ଯେଉଁମାନେ ବଙ୍ଗଳା ଜାଣନ୍ତି ନାହିଁ । ଆପାତତଃ ସେହିଭଳି କେତେକ ପାଠକଙ୍କ ଅନୁରୋଧର ଉତ୍ତରରେ ଏଭଳି ପଦକ୍ଷେପ

ନିଆ ଯାଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସେତେବେଳେ ବଙ୍ଗଳା ପ୍ରେସିଡେନ୍‌ସି ଅଧୀନରେ ତିନୋଟି ଭାଷାଭାଷୀ ପ୍ରଦେଶ - ବଙ୍ଗ, ବିହାର ଓ ଓଡ଼ିଶା - ଏକ ଶାସନାଧୀନ ଥିଲା । ତେଣୁ ମାଲିକମାନଙ୍କ ସେହି ଯୋଜନା ଫଳପ୍ରଦ ପ୍ରମାଣିତ ହୋଇଥିଲା । 1871 ମସିହା ବେଳକୁ ଆର୍ଥିକ ଦୃଷ୍ଟିରୁ ଏହା ଏକ ସ୍ୱଚ୍ଛଳ ପ୍ରତିଷ୍ଠାନ ହୋଇ ପାରିଥିଲା । ସମ୍ଭବତଃ ତା'ର କାରଣ ଥିଲା ମାଲିକମାନେ ସେମାନଙ୍କର ସମସ୍ତ ସୁଖ ସମ୍ଭୋଗକୁ ଅବ୍ୟାହତି ଦେଇ ସର୍ବନିମ୍ନ ପାରିଶ୍ରମିକ ପରିବର୍ତ୍ତେ କ୍ରୀତଦାସ ଭଳି କାର୍ଯ୍ୟ କରି ଆସୁଥିଲେ । ବାସ୍ତବିକ୍ କୃଚ୍ଛ୍ର ସାଧନା ଏବଂ ସରଳତା ସାରା ଜୀବନକାଳ ମଧ୍ୟରେ ଘୋଷଭାଇମାନଙ୍କ ନୀତିବାକ୍ୟ ହୋଇ ରହି ଆସିଥିଲା । ସେମାନେ ସମସ୍ତ ପ୍ରକାରର ଆଡ଼ମ୍ବରପୂର୍ଣ୍ଣ ଓ ଲୋକ ଦେଖାଣିଆ କାର୍ଯ୍ୟକୁ ପରିହାର କରିଥିଲେ । ତାହାର ଏକ ସ୍ପଷ୍ଟ ପରିଣତି ଥିଲା ଏଇଆ ଯେ ସେମାନେ ସାଧାରଣ ଜନତାଙ୍କ ସହ ଜୀବନ୍ତ ସମ୍ପର୍କ ରକ୍ଷା କରି ପାରିଥିଲେ ।

ସରଳ ଭାବରେ ଜୀବନ ଯାପନ କରିବା ମୋତିଲାଲ ଏବଂ ତାଙ୍କ ଭାଇମାନଙ୍କ ପାଇଁ ବିଶ୍ୱାସ ସହିତ ଚୁକ୍ତିବଦ୍ଧ ହେବାଭଳି ଏକ ବିଷମ ବସ୍ତୁ ଥିଲା । ସାମାଜିକ କୁପ୍ରଥାଗୁଡ଼ିକର ସଂସ୍କାର ନେଇ ସେମାନଙ୍କ ସମସ୍ତ ଦୃଷ୍ଟିକୋଣ ବୈଷ୍ଣବୀୟ ଧର୍ମନିଷ୍ଠତା ଅନୁକରଣକାରୀ ଥିଲା ଯାହାର ମୁଖ୍ୟ ନୀତିବାଣୀ ଥିଲା ସମସ୍ତ ପ୍ରାଣୀଙ୍କ ଦୁଃଖରେ କାତର ହେବା । ସାଧାରଣ ଲୋକଙ୍କ ସହିତ ଏକ ଏବଂ ଅଭିନ୍ନ ବୋଲି ପ୍ରମାଣ କରିବା ପାଇଁ ସେମାନଙ୍କ ଭାବପ୍ରବଣତା ଯୋଗୁଁ ସେମାନେ ସର୍ବସାଧାରଣଙ୍କ ଭଳି ବେଶ ପୋଷାକ ପିନ୍ଧୁଥିଲେ, ଖାଉଥିଲେ ଏବଂ ଚଳୁଥିଲେ ମଧ୍ୟ । ଭକ୍ତି ବା ଉପାସନା ସମ୍ବନ୍ଧୀୟ ସଙ୍ଗୀତ, ବିଶେଷ କରି ଧ୍ରୁପଦ ଏବଂ କୀର୍ତ୍ତନରେ ଦକ୍ଷତା ସେମାନଙ୍କର ଦେବଦତ୍ତ ଗୁଣ ଥିଲା । ବିଶେଷ କରି ପୂର୍ବାଞ୍ଚଳ ଭାରତରେ ଶେଷୋକ୍ତଟି ବୈଷ୍ଣବମାନଙ୍କଦ୍ୱାରା କରା ଯାଉଥିବା ଭକ୍ତିପୂର୍ଣ୍ଣ ସାଧନାରୂପେ ପ୍ରଚଳିତ ଥିଲା । ଅସାଧାରଣ ଭାବେ ପ୍ରକୃତିଦତ୍ତ ସାହିତ୍ୟିକ ବିଜ୍ଞତା ଥିବା ଶିଶିର କୁମାର ଧ୍ରୁପଦ ସଙ୍ଗୀତ ରଚନା କରି ପାରୁଥିଲେ । ବିଶିଷ୍ଟ ବୈଷ୍ଣବସନ୍ଥ ଶ୍ରୀ ଚୈତନ୍ୟଙ୍କ ଜୀବନୀମୂଳକ ଗଦ୍ୟଗ୍ରନ୍ଥ 'ଅମୀୟ ନିମାଇଁ ଚରିତ' - ବଙ୍ଗଳା ସାହିତ୍ୟ ପାଇଁ ତାଙ୍କର ଉଲ୍ଲେଖ ଯୋଗ୍ୟ ଅବଦାନ । ଘୋଷମାନଙ୍କ ଗ୍ରାମ ତଥା ପରବର୍ତ୍ତୀ ବର୍ଦ୍ଧମାନଙ୍କରେ ହୋଇଥିବା ସେମାନଙ୍କ କଲିକତା ବାସଗୃହ ପ୍ରତିଦିନ ସନ୍ଧ୍ୟାବେଳେ ଭକ୍ତିମୂଳକ ସଙ୍ଗୀତଗାନରେ ମୁଖରିତ ହୋଇ ଉଠୁଥିଲା । ଯେଉଁଗୁଡ଼ିକରେ ପରିବାରର ପୁରୁଷ, ସ୍ତ୍ରୀ ତଥା ବାଳକ-ବାଳିକାମାନେ ଯୋଗ ଦେଉଥିଲେ ।

ଅନ୍ୟ ଯେଉଁ ଆମୋଦ ପ୍ରମୋଦ ଘୋଷଭାଇମାନେ ନିଷ୍ଠାପର ଭାବେ ଗ୍ରହଣ କରିଥିଲେ ତାହା ଥିଲା ଆଧ୍ୟାତ୍ମିକତା । 1863 ମସିହାରେ ପିତା ହରି ନାରାୟଣଙ୍କ ମୃତ୍ୟୁ ହୋଇଥିଲା । ମୋତିଲାଲଙ୍କ କନିଷ୍ଠଭ୍ରାତା ହରିଲାଲ, ଯିଏ ଥିଲେ ଜଣେ ସ୍ପଷ୍ଟ ବିଷାଦବାଦୀ, ସେ 1866 ମସିହାରେ ଆତ୍ମହତ୍ୟା କରିଥିଲେ । ଏସବୁ ଦୁର୍ଘଟଣା ସେମାନଙ୍କୁ ଗଭୀର ଆଘାତ ଦେଇଥିଲା । ଆମେରିକାର ବିକାଶଶୀଳ ଯୋଗ ରହସ୍ୟର ଧାରା (ବ୍ରହ୍ମବିଦ୍ୟା) କୁ ଭିତ୍ତି କରି ମୃତ ବ୍ୟକ୍ତିର ପ୍ରେତାତ୍ମା ସହିତ ଯୋଗସୂତ୍ର ରକ୍ଷା କରିବା ଲାଗି ନିର୍ଦ୍ଦିଷ୍ଟ ସାହିତ୍ୟ ସୃଷ୍ଟି ହେଉଥିଲା । ଠିକ୍ ସେହି ସମୟରେ ସେଗୁଡ଼ିକ ଭାରତରେ ମଧ୍ୟ ପ୍ରାପ୍ତ ହେଉଥିଲା । ଶିଶିର କୁମାର ଆମେରିକା ଯାଇ ସେହି ଅଲୌକିକତା

(ପ୍ରେତତତ୍ତ୍ୱ) ବିଷୟରେ ଶିକ୍ଷା ଲାଭ କରିବା ପାଇଁ ଚିନ୍ତା କରିଥିଲେ । କିନ୍ତୁ ପରିଶେଷରେ ତାହା ଆବଶ୍ୟକ ମନେ ହୋଇ ନଥିଲା । କାରଣ କଲିକତା ନଗରୀରେ ତାଙ୍କୁ ସେ ବିଷୟରେ ଆବଶ୍ୟକୀୟ ଧାରଣା ଦେବା ଭଳି ଉପଦେଷ୍ଟା ବନ୍ଧୁ ସେ ପାଇ ପାରି ନଥିଲେ । ଗ୍ରାମକୁ ଫେରି ଆସି ନିଜ ପରିବାରର ସଭ୍ୟମାନଙ୍କ ସହ ଆଲୋଚନା ବୈଠକମାନ ଆରମ୍ଭ କରିଥିଲେ । "ହିନ୍ଦୁ ସ୍ପିରିଚୁଏଲ୍" ପତ୍ରିକାରେ (1908) ଶିଶିର କୁମାର ଲେଖିଥିଲେ : "ପ୍ରେତବାଦ ଏହି ଦେଶକୁ ପ୍ରଥମେ ଆମରିମାନଙ୍କ ଦ୍ୱାରା ହିଁ ଆନୀତ ହୋଇଥିଲା । ପ୍ରଥମ ଆଲୋଚନା ମଣ୍ଡଳୀଗୁଡ଼ିକ ଆମ ନିଜ ଜନ୍ମିତ ଗ୍ରାମରେ ହିଁ ଅନୁଷ୍ଠିତ ହୋଇଥିଲା । ଯେତେବେଳେ ସେସବୁ ବିଷୟରେ ବିବରଣୀ କଲିକତାସ୍ଥ ଆମର କେତେଜଣ ବନ୍ଧୁଙ୍କୁ ଜଣାଇ ଦିଆଯାଇଥିଲା, ସେମାନେ ତାହାକୁ ଖବରକାଗଜ (ଇଣ୍ଡିଆନ୍ ଡେଲି ନ୍ୟୁଜ୍)ରେ ପ୍ରକାଶ କରାଇ ଦେଇଥିଲେ । ପରିଣାମ ସ୍ୱରୂପ ତାହା ଦେଶର ଚତୁର୍ଦ୍ଦିଗରେ ଏକ ଅଭୂତପୂର୍ବ ଶିହରଣ ସୃଷ୍ଟି କରିଥିଲା । ସହରରୁ ସହରକୁ, ଗ୍ରାମରୁ ଗ୍ରାମକୁ ତଥା ଗୋଟିଏ ଘରୁ ଅନ୍ୟ ଘରକୁ ସମ୍ବାଦ ପ୍ରଚାରିତ ହୋଇଥିଲା ଯେ ଅମୃତ ବଜାର ଗ୍ରାମର ଲୋକେ ମୃତବ୍ୟକ୍ତି ମାନଙ୍କ ସହିତ କଥାବାର୍ତ୍ତା କରିବା ଦିଗରେ ସମର୍ଥ ହୋଇ ପାରିଛନ୍ତି । ଅମୃତ ବଜାର ଥିଲା ଆମ୍ଭମାନଙ୍କର ଜନ୍ମଭୂମି । ତା'ପରେ ପରେ ସେଭଳି ମଣ୍ଡଳୀମାନ ଏ ଦେଶର ସବୁ ପରିବାରରେ ଅନୁଷ୍ଠିତ ହେବା ଆରମ୍ଭ ହୋଇଥିଲା ।"

ଯଦିଓ ପର ସମୟରେ ମୋତିଲାଲ ଅଲୌକିକ ଶାସ୍ତ୍ର (ପ୍ରେତତତ୍ତ୍ୱ) ଅଧ୍ୟୟନ ତଥା କାର୍ଯ୍ୟତଃ ପ୍ରୟୋଗ କରିବା ପାଇଁ କମ୍ ସମୟ ପାଇଥିଲେ, ତଥାପି ସେ କ୍ଷେତ୍ରରେ ଅନ୍ୟ ତିନିଭାଇ ଉଲ୍ଲେଖ ଯୋଗ୍ୟ ଉନ୍ନତି କରିପାରିଥିଲେ । ହେମନ୍ତ କୁମାରଙ୍କ ପୁଅ ମୃଣାଳକାନ୍ତି (1954 ରେ ମୃତ୍ୟୁ) ଅଲୌକିକ ଶାସ୍ତ୍ରରେ ବିଶେଷଭାବେ ଦକ୍ଷତା ଅର୍ଜନ କରିଥିଲେ ଏବଂ ସେ ମଧ୍ୟ ଥିଲେ ବହୁ ବିକ୍ରିତ ବଙ୍ଗଳା ଭାଷାରେ ଲିଖିତ ମୃତ୍ୟୁ ପରର ଜୀବନ କଥା ସମ୍ବଳିତ ପୁସ୍ତକ - "ପରଲୋକର କଥା"- ର ଲେଖକ ।

ଘୋଷମାନେ ନିଜ ଗ୍ରାମରେ ଯାତ୍ରା ଥିଏଟର୍ କିମ୍ବା ଏକ ବିଶିଷ୍ଟ ସାମାଜିକ କାର୍ଯ୍ୟରୂପେ ପରିଗଣିତ ହେଉଥିବା ଖୋଲାମଞ୍ଚର ନାଟକ ପରିବେଷଣ କରାଯିବା କାର୍ଯ୍ୟକଳାପଗୁଡ଼ିକରେ ମଧ୍ୟ ନେତୃତ୍ୱ ନେଉଥିଲେ । ସେଭଳି ଯେଉଁସବୁ ନାଟକ ଘୋଷମାନଙ୍କଦ୍ୱାରା ଆୟୋଜିତ ହେଉଥିଲା ସେଗୁଡ଼ିକ ନିଶ୍ଚିତ ଭାବେ ଉନ୍ନତ ମାନର ଥିଲା । ଉଦାହରଣ ସ୍ୱରୂପ ଦୀନବନ୍ଧୁ ମିତ୍ରଙ୍କ 'ନୀଳଦର୍ପଣ' ଏବଂ ସେହିଭଳି ଅନ୍ୟାନ୍ୟ ନାଟକ । ସେ ନାଟକସବୁ ଦେଖିବାଲାଗି ଆଖପାଖ ଗ୍ରାମରୁ ମଧ୍ୟ ଅନେକ ଲୋକ ଆସୁଥିଲେ । ମୋଟାମୋଟି ଭାବରେ ଦେଖିବାକୁ ଗଲେ ଘୋଷମାନେ ସବୁ ସମ୍ଭାବିତ ଦିଗରୁ ତାଙ୍କ ଗ୍ରାମର ଲୋକମାନଙ୍କୁ ସଂଗଠିତ କରିବାକୁ ଚାହିଁଥିଲେ । ନୀଳ ରୟତମାନଙ୍କ ଆନ୍ଦୋଳନ ଦେଖାଇ ଦେଇଥିଲା ଯେ ସମସ୍ତ ପ୍ରକାର ଅନ୍ୟାୟ, ଅନୀତି ତଥା ଅସନ୍ତୋଷକୁ ସଜାଡ଼ି ନେବା ପାଇଁ ଏକମାତ୍ର ରାସ୍ତା ହେଉଛି ସଂଗଠିତ ଉଦ୍ୟମ ।

ତାଙ୍କ ନିଜ ଗ୍ରାମରେ ଘୋଷ ଭାଇମାନଙ୍କ କାର୍ଯ୍ୟକଳାପସବୁକୁ ରକ୍ଷଣଶୀଳ ଗୋଷ୍ଠୀ ବିରୋଧ କରୁଥିଲେ । ପରିଣାମ ସ୍ୱରୂପ ଶିଷ୍ଟାଚାର ରହିତ ଭାବେ ସେମାନଙ୍କୁ ସମାଜରୁ ବାସନ୍ଦ କରାଯାଇଥିଲା । ତାହା 1869 ମସିହାରେ ମୋତିଲାଲଙ୍କ ବିବାହ ଅବସରରେ ଅତି ଉତ୍କଟ ଭାବରେ ଦେଖା ଦେଇଥିଲା । ବିବାହ ପାଇଁ ଗୋଟିଏ ଯଥାଯୋଗ୍ୟ କନ୍ୟା ସ୍ଥିରୀକୃତ ହୋଇଥିଲା । ଅମୃତ ବଜାର ଗ୍ରାମଠାରୁ ୪0 କିଲୋମିଟର ଦୂରସ୍ଥ ନଦିଆ ଜିଲ୍ଲାର କୁମାରଖାଲି ଥିଲା ତାଙ୍କର ବାସସ୍ଥଳୀ । ତାଙ୍କର ପିତା ଢ଼ାକାର ଜିଲ୍ଲା କଚେରୀରେ କର୍ମଚାରୀ ଥିଲେ । ସେତେବେଳକୁ ଘୋଷ ଭାଇମାନେ ବ୍ରାହ୍ମ ସମାଜର ଆଦର୍ଶ ଅନୁକରଣ କରୁଥିବା ଯୋଗୁଁ ସ୍ପଷ୍ଟରୂପେ ସେମାନେ ସେହିଭଳି ଭାବରେ ଚିହ୍ନିତ ହୋଇ ସାରିଥିଲେ, ଯଦିଓ ଆନୁଷ୍ଠାନିକ ଭାବେ ସେମାନେ ସମାଜର ସଭ୍ୟ ଭାବରେ ଯୋଗ ଦେଇ ନଥିଲେ । କ୍ରମାଗତ ଭାବେ ଘୋଷ ଭାଇମାନଙ୍କ ମର୍ଯ୍ୟାଦା ତଥା ଉନ୍ନତିରେ ବୃଦ୍ଧି ଘଟୁଥିବା ଯୋଗୁଁ ଗ୍ରାମର ରକ୍ଷଣଶୀଳ ତଥା ବୟସ୍କ ବ୍ୟକ୍ତିବୃନ୍ଦ ସମ୍ଭବତଃ ସେମାନଙ୍କ ପ୍ରତି ଈର୍ଷାପ୍ରବଣ ହୋଇ ଉଠିଥିଲେ। ସେମାନେ ଗୋଟିଏ ମିଥ୍ୟା ଅପବାଦ ପ୍ରଚାର କଲେ ଯେ ଘୋଷ ଭାଇମାନେ ଖ୍ରୀଷ୍ଟିୟାନ ହୋଇ ସାରିଲେଣି ଏବଂ ଖ୍ରୀଷ୍ଟିୟାନ୍ ହୋଇ ସାରିଥିବା ଯୋଗୁଁ ତାଙ୍କ ନିଜ ଘରର ହତା ଭିତରେ ଥିବା ଗୋଟିଏ ଷଣ୍ଢକୁ ହତ୍ୟା କରି ତାର ମାଂସ ଖାଇବା ସଙ୍ଗେ ସଙ୍ଗେ ଗୋ-ମାଂସ ଭକ୍ଷଣ କରିବାରେ ଅଭ୍ୟସ୍ତ ହୋଇ ସାରିଲେଣି । ଷଣ୍ଢ ହତ୍ୟାର କାହାଣୀ କୁମାରଖାଲିରେ କନ୍ୟା ଘରର ଲୋକଙ୍କ ନିକଟରେ ପହଞ୍ଚାଇ ଦିଆ ଯାଇଥିଲା । ସେଥିରେ ସେମାନେ ବିଚଳିତ ହୋଇ ପଡ଼ିଥିଲେ । ତଥାପି ସେ କଥାର ସତ୍ୟତା ନେଇ ସେମାନେ ଯୁକ୍ତିଯୁକ୍ତ ଭାବେ ସନ୍ଦିହାନ୍ ହୋଇ ଉଠିଥିଲେ । ଗ୍ରାମ୍ୟ ରାଜନୀତି କେତେଦୂର ଲମ୍ବି ଯାଇପାରେ ତାହା ଆପଣାର ଅଭିଜ୍ଞତାରୁ ସେମାନେ ଜାଣି ପାରିଥିଲେ । ତେଣୁ କନ୍ୟାର ଜ୍ୟେଷ୍ଠ ଭାଇଙ୍କୁ (ଯିଏ ପର କାଳରେ ଜଣେ ଜିଲ୍ଲା ଜଜ୍ ହୋଇଥିଲେ) ସତ୍ୟାସତ୍ୟ ଅନୁସନ୍ଧାନ କରିବା ପାଇଁ ଘଟଣାସ୍ଥଳକୁ ପ୍ରେରଣ କରାଯାଇଥିଲା । ପ୍ରକୃତରେ ତାହା ଏକ କପୋଳକଳ୍ପିତ ଗଳ୍ପ ବୋଲି ତାଙ୍କଠାରୁ ବିବରଣୀ ମିଳିବା ପରେ ଉଭୟ ପକ୍ଷରୁ ଆନନ୍ଦ ଉଲ୍ଲାସର ପରିବେଶ ମଧ୍ୟରେ ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇଥିଲା । ମୋତିଲାଲଙ୍କ ଜଣେ ଆଦର୍ଶ ସହଯୋଗୀ ରୂପେ ପତ୍ନୀ ନିସ୍ତାରିଣୀ ନିଜକୁ ପ୍ରମାଣିତ କରିଥିଲେ । 1876 ମସିହାରେ ସେମାନଙ୍କ ଏକମାତ୍ର ସନ୍ତାନ-କନ୍ୟା ସଜଳ ନୟନା ଜନ୍ମଗ୍ରହଣ କରିଥିଲା ।

•

# ତିନି : ପରିବାର ସହ ପ୍ରସ୍ଥାନ

ଆରମ୍ଭ ହେବାର ପ୍ରଥମ ତିନୋଟି ବର୍ଷ ମଧ୍ୟରେ 'ପତ୍ରିକା' ଆପଣାର ସ୍ୱାକ୍ଷର ରଖି ପାରିଥିଲା । ସାପ୍ତାହିକ ପତ୍ରିକାଟି ଯେ କେବଳ "ଅନ୍ୟାନ୍ୟଗୁଡ଼ିକ ତୁଳନାରେ ବହୁ ଅଧିକ ସଂଖ୍ୟାରେ ପଢ଼ା ଯାଉଥିଲା" (1872 ରେ ପ୍ରକାଶିତ ବେଙ୍ଗଲି ଏଡ୍‌ମିନିଷ୍ଟ୍ରେଟିଭ୍ ରିପୋର୍ଟରୁ ଉଲ୍ଲେଖ କଲେ) ତାହା ନୁହେଁ, ତତ୍ ସହିତ "ଏଥିରେ ପ୍ରକାଶ ପାଉଥିବା ଲେଖାଗୁଡ଼ିକର ଭାଷା କ୍ୱଚିତ୍ ଅପରିମାର୍ଜିତ ରହୁଥିଲା . . . . ଉଭୟ ରୟତ ତଥା ଜମିଦାରମାନଙ୍କ ଦୃଷ୍ଟିରୁ କୃଷି ସମ୍ବନ୍ଧୀୟ ବିଷୟାବଳୀ ଏବଂ ସାମାଜିକ ବିଷୟ ସମୂହର ଆଲୋଚନା କରିବା କୃତିତ୍ୱ ଏହା ଅର୍ଜନ କରିଥିଲା ।" ଜନସାଧାରଣଙ୍କ ସହିତ ଏହା ଉତ୍ତମ ବନ୍ଧୁତା ମଧ୍ୟ ସୃଷ୍ଟି କରି ପାରିଥିଲା । ସେମାନେ ଏଥିପାଇଁ ନିର୍ଭରଯୋଗ୍ୟ ବିବରଣୀ ପ୍ରେରଣ କରୁଥିଲେ ଏବଂ ଆବଶ୍ୟକ ହେଉଥିବା ବେଳେ ଆର୍ଥିକ ସହାୟତା ମଧ୍ୟ କରୁଥିଲେ । ଏହା ସରକାରଙ୍କ ଗମ୍ଭୀର ତଥା ଆକ୍ରୋଶମୂଳକ ଦୃଷ୍ଟି ଆକର୍ଷଣ କରିଥିଲା । ତେବେ "ତୁଳନାତ୍ମକ ଭାବରେ ବାଧା ବିଘ୍ନ ଠାରୁ ଦୂରରେ ରହି ପାରିଥିଲା" ଏହି ପତ୍ରିକାଟି ।

ତଥାପି 1871 ମସିହାର ବର୍ଷାଋତୁ ବେଳେ ପ୍ରାୟତଃ ସମଗ୍ର ବଙ୍ଗଳା ଏହାର ଇତିହାସରେ ପ୍ରଥମ ଥର ପାଇଁ ଏକ ସଂକ୍ରାମକ ରୋଗ ମେଲେରିଆ ଯୋଗୁଁ ବିଧ୍ୱସ୍ତ ହୋଇ ପଡ଼ିଥିଲା । ବିଶେଷ କରି ଜେସୋର ଜିଲ୍ଲାରେ ଏ ରୋଗର ଗୁରୁ ପ୍ରଭାବ ଅନୁଭୂତ ହୋଇଥିଲା । ଅମୃତ ବଜାର ଗ୍ରାମର ପ୍ରତ୍ୟେକ ପରିବାର ରୋଗରେ ଆକ୍ରାନ୍ତ ହୋଇ ପଡ଼ିଥିଲେ । ସେତେବେଳେ ଏ ରୋଗର କୌଣସି ନିର୍ଦ୍ଦିଷ୍ଟ ଚିକିତ୍ସା ନଥିଲା । ବଜାରରେ କୁଇନାଇନ୍ ମିଳୁ ନଥିଲା । ଦେଶୀୟ ପଦ୍ଧତି ଅନୁକରଣ କରି ପ୍ରଥମ ଆକ୍ରମଣଜନିତ ରୋଗୀ ଗୁଡ଼ିକୁ ସୁସ୍ଥ କରାଯିବାବେଳକୁ ଅତି ଅନିୟନ୍ତ୍ରିତ ଅବସ୍ଥାରେ ଥିବା ମଶାମାନଙ୍କ ଦ୍ୱାରା ସେମାନେ ପୁଣି ଥରେ ଆକ୍ରମିତ ହେଉଥିଲେ । ଏଥିରେ ଅନେକ ଲୋକ ମୃତ୍ୟୁ ବରଣ କରିଥିଲେ ଏବଂ ଆହୁରି ଅନେକେ ଅତି ଦୁର୍ବଳ ହୋଇ କାର୍ଯ୍ୟ କରିବା ଲାଗି ଅକ୍ଷମ ହୋଇ ପଡ଼ିଥିଲେ । ତତ୍ ପରେ ପରେ ଏକ ପ୍ରଳୟଙ୍କରୀ ବନ୍ୟା ଫଳରେ ବଙ୍ଗଳାର ଅବସ୍ଥା ଆହୁରି ଅଧିକ ଶୋଚନୀୟ ହୋଇ ଉଠିଥିଲା । ବନ୍ୟା କେବଳ ଫସଲଗୁଡ଼ିକର କ୍ଷତି କରିବା ସଙ୍ଗେ ସଙ୍ଗେ ଅସଂଖ୍ୟ ଗୃହପାଳିତ ପଶୁଙ୍କ ଜୀବନ ନଷ୍ଟ କରି ନଥିଲା, ଚତୁର୍ଦ୍ଦିଗ ଜଳମଗ୍ନ ରହିବା ଫଳରେ ସେହି ସଂକ୍ରାମକ ରୋଗଟି ଅତିମାତ୍ରାରେ ବୃଦ୍ଧି ପାଇଥିଲା । 'ପତ୍ରିକା'ର ଅଧିକାଂଶ କର୍ମଚାରୀ ରୋଗରେ ପୀଡ଼ିତ ହୋଇଥିବା ଯୋଗୁଁ ଅବଶ୍ୟମ୍ଭାବୀ ରୂପେ ତାହା ଆପଣାର କାର୍ଯ୍ୟ ସମାହିତ କରିବା

ଦିଗରେ ଲକ୍ଷ୍ୟଚ୍ୟୁତ ହୋଇ ଯାଇଥିଲା । ପୁଣି ଶରତ ଋତୁରେ ବନ୍ୟାର ପୁନଃ ଆବିର୍ଭାବ 'ପତ୍ରିକା'ର ପ୍ରକାଶନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା ।

ପରିଶେଷରେ ଗଭୀର ବିତୃଷ୍ଣାର ସହିତ ଘୋଷ ଭାଇମାନେ ସ୍ଥିର କରିଥିଲେ ଯେ ସେମାନେ 'ପତ୍ରିକା' ସହିତ କଲିକତା ଚାଲିଯିବେ । ପୁଣିଥରେ ସେମାନେ କପର୍ଦ୍ଦିକଶୂନ୍ୟ ହୋଇ ପଡ଼ିଥିଲେ ଏବଂ ସେହି କାରଣରୁ ପ୍ରେସଟିକୁ ବିକ୍ରୀ କରିବାକୁ ବାଧ୍ୟ ହୋଇଥିଲେ, ଆର୍ଥିକ ଋଣ ଭାରରୁ ମୁକ୍ତ ହେବାପାଇଁ । ଜଣେ ସ୍ଥାନୀୟ ମହାଜନଠାରୁ ସେମାନେ ଏକ ଶହ ଟଙ୍କା ଋଣ କରିଥିଲେ ସେଇଥି ପାଇଁ । ମୋତିଲାଲ ପିଲଜଙ୍ଗାରେ ଚାକିରୀ କରିବା ବେଳେ ପାଉଥିବା ଦରମାରୁ ସଞ୍ଚୟ କରି ରଖିଥିବା ଦୁଇଶହ ଟଙ୍କା ସହିତ ସେହି ଟଙ୍କା ମିଶି କଲିକତାରେ ସେମାନଙ୍କ ମୋଟ ପୁଞ୍ଜିର ପ୍ରଥମ ପ୍ରତିନିଧିତ୍ୱ କରିଥିଲା । ସେମାନେ ସେମାନଙ୍କ ପରିବାରର ପ୍ରାୟ 30 ଜଣ ସଭ୍ୟଙ୍କ ସହିତ କଲିକତା ଆସିଥିଲେ ଯେଉଁଠି ସେମାନେ କ୍ୱଚିତ୍ ଜଣାଶୁଣା ଥିଲେ । ଅକ୍ଟୋବରର ଶେଷ ବେଳକୁ ସହରର ବଉବଜାର ଅଞ୍ଚଳରେ ସେମାନେ ଗୋଟିଏ ଘର ଭଡ଼ା ନେଇଥିଲେ । ଏବଂ 'ପତ୍ରିକା'ର ପୁନଃ ପ୍ରକାଶନ ପାଇଁ ସଙ୍ଗେ ସଙ୍ଗେ ଗୋଟିଏ ଛାପାକଳର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ଉଦ୍ୟମ ଆରମ୍ଭ କରିଥିଲେ । ବିକ୍ରି ହେବାକୁ ଥିବା ଗୋଟିଏ ଛାପାକଳର ଦାମ୍ 600 ଟଙ୍କା ଥିବା ବେଳେ ସେମାନଙ୍କ ନିକଟରେ ମୋଟ ପୁଞ୍ଜି ଥିଲା କେବଳ 300 ଟଙ୍କା । କଲିକତାର ଜଣେ ବିତ୍ତଶାଳୀ ଜମିଦାର, ରାଜା ଦିଗମ୍ବର ମିତ୍ର ସେମାନଙ୍କୁ ଋଣ ଯାଚନା କରିଥିଲେ ମଧ୍ୟ ଶିଶିର କୁମାର ତାହା ଗ୍ରହଣ କରି ନଥିଲେ । ସୌଭାଗ୍ୟ-ବଶତଃ ଆଉଜଣେ ଜମିଦାରଙ୍କ ପାଇଁ ଦଲାଲଗିରି କରି ସେହି ରାଜାଙ୍କ ଠାରୁ 60 ହଜାର ଟଙ୍କା ଋଣ ବ୍ୟବସ୍ଥା କରାଇ ଦେଇଥିଲେ । ପରିମାଣତଃ ଦଲାଲି ଦେୟ ବାବଦରେ ସେ ପାଇଥିଲେ 800 ଟଙ୍କା ।

ଉକ୍ତ ଛୋଟିଆ ହସ୍ତଚାଳିତ ପ୍ରେସଟି କ୍ରୟ କରାଯାଇଥିଲା ଏବଂ ପତ୍ରିକାର ପ୍ରଥମ ସଂଖ୍ୟା ଏହି ନୂତନ ବାସସ୍ଥାନରୁ 1871 ମସିହା ଡିସେମ୍ବର 21 ତାରିଖ ଦିନ ପ୍ରକାଶ ପାଇଥିଲା । ସେହି ସଂଖ୍ୟାରେ ବଙ୍ଗଳା ଭାଷାରେ ଲିଖିତ ସମ୍ପାଦକୀୟ ଅଗ୍ରଲେଖ ଏହିପରି ଭାବରେ ଆରମ୍ଭ ହୋଇଥିଲା :

"ଆମେ ଆମର ପାଠକମାନଙ୍କ ଉପରେ ଆସ୍ଥା ପ୍ରକାଶ କରି କହିବାକୁ ଚାହୁଁ ଯେ ଯଦିଓ ଅତୀତରେ ଆମେ ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲୁ ଏବଂ ଅମୃତ ବଜାର ପତ୍ରିକା ପାଇଁ ବହୁ ପରିମାଣରେ ଅର୍ଥ ଖର୍ଚ୍ଚ କରିଥିଲୁ, ପରେ ପରେ ତାହା ଏକ ଲାଭଜନକ ପ୍ରତିଷ୍ଠାନରେ ପରିଣତ ହୋଇ ଯାଇଥିଲା । କେହି କୌଣସି ଏକ ଲାଭଜନକ ପ୍ରତିଷ୍ଠାନକୁ କୌଣସି କାରଣରୁ ପରିହାର କରିପାରେ ନାହିଁ । ଯେଉଁମାନେ ସମ୍ଭବତଃ ଭାବୁଥିବେ ଯେ ଆମେମାନେ ଗୋଟିଏ ଖବର କାଗଜକୁ ଗ୍ରାମାଞ୍ଚଳରୁ ମହାନଗରକୁ ଉଠାଇ ଆଣିଥିବାରୁ ତାହାର ସମ୍ପାଦନା ସମ୍ପର୍କୀୟ ନୀତି ବଦଳି ଯିବ, ସେମାନଙ୍କୁ ଆମେମାନେ କହିବା ଉଚିତ ହେବ ଯେ ପତ୍ରିକାଟି ପୂର୍ବେ ଯେଉଁମାନଙ୍କ ହାତରେ ଥିଲା ବର୍ତ୍ତମାନ ମଧ୍ୟ ଠିକ୍ ସେହିମାନଙ୍କ ହାତରେ ଅଛି ଏବଂ ସାମାନ୍ୟତମ ଅଦଳ ବଦଳ ମଧ୍ୟ ହୋଇନାହିଁ । କିନ୍ତୁ ଆମେମାନେ କେତେକ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛୁ । ଆମ୍ଭମାନଙ୍କର ଖର୍ଚ୍ଚ

ଶବ୍ଦେ ଗୁଣ ବୃଦ୍ଧି ପାଇଛି । ଯଦି ଜନସାଧାରଣ ଆମ୍ଭମାନଙ୍କୁ କିଛିଟା ପ୍ରଶ୍ରୟ ଦେବେ ଏବଂ ଯଦି କଲିକତାର ଅଧିବାସୀଗଣ ଆମ୍ଭମାନଙ୍କୁ ସାମାନ୍ୟ ଦୟା ପ୍ରଦର୍ଶନ କରିବେ ତାହା ହେଲେ କେବଳ ଖବରକାଗଜଟି ବଞ୍ଚି ରହିବ । ନଚେତ୍ ଅମୃତ ବଜାର ପତ୍ରିକାର ସର୍ବନାଶ ହେବ ।''

ରାଜଧାନୀର କୋଳାହଳମୟ ସାମ୍ବାଦିକତା କ୍ଷେତ୍ର ମଧ୍ୟକୁ 'ପତ୍ରିକା'ର ପ୍ରବେଶ ଅତି ଶାନ୍ତ ତଥା ନିରାଡ଼ମ୍ବର ଥିଲା । 1874 ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଘୋଷମାନେ ବଉବଜାର ଘରେ ରହିଥିଲେ ଏବଂ ସେମାନଙ୍କ ଶିଳ୍ପ ଉଦ୍ୟୋଗରେ ପୂର୍ବବତ୍ କାର୍ଯ୍ୟ କରିଥିଲେ । ତା'ପରେ ସେମାନେ ଉତ୍ତର କଲିକତାର ବାଘବଜାର ଅଞ୍ଚଳରେ ଏକ ବିରାଟ ହତାଥିବା ପୁରାତନ ବିଶାଳ କୋଠାଘରକୁ ଭଡ଼ାରେ ନେଇଥିଲେ । ଭାରତୀୟ ସମ୍ବାଦିକତାର ଇତିହାସରେ ପ୍ରସିଦ୍ଧି ଲାଭ କରିଥିବା ଏହି ଘରଟି କାଶିମ୍ ବଜାର ମହାରାଜାଙ୍କ ସମ୍ପତ୍ତି ଥିଲା ଏବଂ ଘୋଷ ଭାଇମାନଙ୍କୁ ମାସିକ 40 ଟଙ୍କା ଭଡ଼ାରେ ଦିଆ ଯାଇଥିଲା । ତାହାଥିଲା ପତ୍ରିକାର ତଥା ଘୋଷ ଭାଇମାନଙ୍କର 50 ବର୍ଷ ପାଇଁ ବାସସ୍ଥଳୀ । ଯଦିଚ ପରବର୍ତ୍ତୀ ଘୋଷମାନେ ଆନନ୍ଦ ଚାଟାର୍ଜୀ ଲେନର ଦ୍ୱିତୀୟ ଗଳି କଡ଼ରେ ସେମାନଙ୍କ ନୂତନ କୋଠା ନିର୍ମାଣ କରିଥିଲେ ତଥାପି ତାହା ଏପର୍ଯ୍ୟନ୍ତ ସେମାନଙ୍କ ଦ୍ୱାରା ରଖା ଯାଇଛି ।

କ୍ରାନ୍ତିକାରୀ ଜାତୀୟତାବାଦର ବ୍ୟାଖ୍ୟାକାରୀମାନଙ୍କ ସହିତ ସାକ୍ଷାତ କରିବା ପାଇଁ ଭାରତରୁ ତଥା ଭାରତ ବାହାରୁ ଅନେକ ପ୍ରସିଦ୍ଧ ଲୋକ ଏଠାକୁ ଆସିଛନ୍ତି । ବିଶେଷ ଭାବେ ଜଣାଶୁଣା ବଙ୍ଗଳା କବି ନବୀନ୍ ଚନ୍ଦ୍ର ସେନ ଲେଖିଥିଲେ : ''ଏହି ଘରଟି ଏକ ଶତାବ୍ଦୀ ଭିତରେ କୌଣସି ପ୍ରକାର ମରାମତି ଦେଖିନାହିଁ ବୋଲି ଅନୁମାନ କରାଯାଇ ପାରେ ।'' ସେହି ଘର ସମ୍ପର୍କରେ ତାଙ୍କ ଆତ୍ମ ଜୀବନୀରେ ସେ ଦେଇଥିବା ନିମ୍ନଲିଖିତ ବର୍ଣ୍ଣନା (ଯାହା ବଙ୍ଗଳାରୁ ଅନୁବାଦ କରି ଶ୍ରୀ ପରମାନନ୍ଦ ଦତ୍ତ ତାଙ୍କ ପୁସ୍ତକରେ ଉଦ୍ଧାର କରିଥିଲେ) ନିଶ୍ଚୟ ଆଗ୍ରହାତ୍ମକ ମନେ ହେବ :

''ଏହି ଘରର ତଳ ମହଲା ଓ ପ୍ରଥମ ମହଲାର ବାହାର ଘରେ ଛାପାକଳର ବିଭିନ୍ନ ଯନ୍ତ୍ରପାତି ଗୁଡ଼ିକ ଏଠି, ସେଠି ଓ ସବୁଠି ଅତି ଅନିୟମିତ ଓ ଅଶୋଭନୀୟ ରୂପେ ବିଛାଡ଼ି ହୋଇ ପଡ଼ିଛି । ସ୍ଥାନଟି ପୂରାପୂରି ଭାବେ ଆବର୍ଜନା ତଥା ମଇଳା ଯୁକ୍ତ । କାଠ ନିର୍ମିତ ସିଢ଼ିଟି ଯେ କେବଳ ଅତି କମ୍ ଚଉଡ଼ା ବିଶିଷ୍ଟ ତାହା ନୁହେଁ, ଅନେକ ସ୍ଥାନରେ ତାହା ଭାଙ୍ଗି ମଧ୍ୟ ଯାଇଛି । ବିଗତ କେତେ ବର୍ଷ ଧରି କେବଳ ସିଢ଼ି ନୁହେଁ, ଘରଗୁଡ଼ାକରେ ମଧ୍ୟ ଝାଡୁ ବାଜି ନାହିଁ । ବାରଣ୍ଡାରେ (ପ୍ରଥମ ମହଲାରେ ଥିବା) ଗୋଟିଏ ଛୋଟିଆ ମଇଳା କ୍ୟାମ୍ପ ଟେବୁଲ୍ ପଡ଼ିଛି । ତା'ର ଗୋଟିଏ ପାଖରେ ପଡ଼ିଥିବା ଭଙ୍ଗା ଚଉକିଟିରେ ମୁଣ୍ଡକୁ ଆଣ୍ଠୁ ସହିତରେ ମିଳାଇଦେଇ କ୍ଷୁଦ୍ରକାୟ ମଣିଷଟିଏ - ମୋତିଲାଲ - ବସିଛନ୍ତି । ଏକ ଆକର୍ଷଣୀୟ ଶକ୍ତିରେ ସେ ଶକ୍ତିମନ୍ତ ଯିଏ ବ୍ରିଟିଶ ଶାସକମାନଙ୍କ ହୃଦୟରେ ହିଁ ଆତଙ୍କର ଆଘାତ ସୃଷ୍ଟି କରନ୍ତି । କିଛି ସାଧାରଣ କାଗଜ ସହିତ ହାତରେ ପେନସିଲଟିଏ ଧରି ସେ ରାଜନୈତିକ ଅସ୍ତ୍ର-ଗୁଡ଼ିକଠାରୁ ଆହୁରି ଅଧିକ କ୍ଷମତାଶାଳୀ ଅସ୍ତ୍ର ଗଠନ କରନ୍ତି । ଜଣେ ବ୍ୟକ୍ତି ହିସାବରେ ଦେଖିଲେ, ନାଲି ଧାର ଥିବା ଖଣ୍ଡିଏ ମୋଟା ଧୋତି ସାଙ୍ଗକୁ ବୋତାମ ନଥିବା ଧଳା ମଇଳା ସାର୍ଟଟିଏ ସେ ପିନ୍ଧନ୍ତି ।

ତାଙ୍କ ସାମନାରେ ଥିବା ଟେବୁଲ୍‌ର ଅପର ପଟରେ ଗୋଟିଏ ସାଧାରଣ ବେଞ୍ଚ ପଡ଼ିଛି ଏବଂ ତାଙ୍କର ବାମ ପଟରେ "ଓଡ଼ଶମାନଙ୍କ ବାସସ୍ଥାନ" - ଆଉ ଗୋଟିଏ ପୁରାତନ ଚୌକି ପଡ଼ିଛି ଯାହାର ଗୋଟିଏ ହାତ ବିଗତ ପଲାସୀ ଯୁଦ୍ଧ ସମୟରୁ କୁଆଡ଼େ ହଜି ଯାଇଛି । ଟେବୁଲ୍‌ର ଅପର ଦିଗରେ ଅଛି ଗୋଟିଏ ଅତି ମଇଳା କାନ୍ଥ । ସେହି କାନ୍ଥର ଅନ୍ୟ ଦିଗରେ ଗୋଟିଏ ବଡ଼ କୋଠରୀ କିମ୍ବା ହଲ୍ ଅଛି । ବିଗତ କେତେ ବର୍ଷ ଧରି ଧୂଳି, ବୁଢ଼ିଆଣୀ ବସା, ଥୁକ ଚିହ୍ନ ଏବଂ କାଳି ଦାଗ ଏହି କୋଠରୀର କାନ୍ଥଗୁଡ଼ିକୁ ତଥା ଛାତକୁ ମଣ୍ଡନ କରି ଆସୁଛି ତାହା କିଏ କହି ପାରିବ ? କୋଠରୀରେ ଗୋଟିଏ ଦରି ବିଛା ଯାଇଛି ଏବଂ ତା' ଉପରେ ବିଛଣା ଚଦରଟିଏ ପଡ଼ିଛି । ତା'ର ଗୋଟିଏ କୋଣରେ ଦୁଇଟି କିମ୍ବା ତା'ଠାରୁ ଅଧିକ ଛୋଟ ଛୋଟ ଲମ୍ବା ତକିଆ ପଡ଼ିଛି । କାନ୍ଥଗୁଡ଼ିକ ଭଳି ସେଗୁଡ଼ିକରେ ମଧ୍ୟ ବିଭିନ୍ନ ଦାଗ ସବୁ ରହିଛି । ବାସ୍ତବିକ୍ ସେହି ବିଛଣା ଚଦର ଓ ତକିଆଗୁଡ଼ିକ ଆନ୍ତରିକ ଶପଥଟିଏ ନେଇ କହି ପାରିବେ ଯେ ସେମାନେ କୌଣସି ଧୋବା ନିକଟରେ କଦାପି ଋଣୀ ହୋଇ ରହି ନାହାନ୍ତି । ଭାରତରେ ଏଭଳି ଜଣେ ମଧ୍ୟ ବିଶିଷ୍ଟ ଲୋକ ନାହାନ୍ତି ଯାହାଙ୍କର ପାଦଧୂଳି ସେହି ବିଛଣା ଚଦରରୁ ଦେଖା ଯାଇ ପାରିବ ନାହିଁ କିମ୍ବା ଯାହାର ଦେହର ଗନ୍ଧ ସେହି ତକିଆଗୁଡ଼ିକରୁ ବାରି ହୋଇ ପାରିବ ନାହିଁ । ଉକ୍ତ ଭାଇମାନଙ୍କ ବାହାର ଘରର ଅବସ୍ଥା ଏହିଭଳି । ମୁଁ ଶୁଣିଛି ଭିତର ଘରଗୁଡ଼ିକର ଅବସ୍ଥା ମଧ୍ୟ ଆହୁରି ଅଧିକ ଶୋଚନୀୟ ।"

ନିଜ ଗ୍ରାମରୁ ଆସି କଲିକତାରେ ପହଞ୍ଚିବା ପରେ ଆଗନ୍ତୁକମାନେ ସମ୍ପୂର୍ଣ୍ଣ ଏକ ଭିନ୍ନ ପୃଥିବୀରେ ପାଦ ଦେଇଥିଲେ । ଦଶଲକ୍ଷର ନିକଟତର ହେବାକୁ କ୍ଷିପ୍ର ହାରରେ ବୃଦ୍ଧି ପାଉଥିବା ମହାନଗରୀର ଜନସାଧାରଣ, ଜନ୍ମବେଙ୍କରୁ ହିଁ ଥିଲେ ବିସଦୃଶ୍ୟ ବା ବହୁବିଧ ପ୍ରକାରର । 1901 ମସିହାରେ ଜନଗଣନା ରିପୋର୍ଟରୁ ଜଣାଯାଏ ଯେ ପ୍ରାୟ ଦଶଲକ୍ଷ ଜନସଂଖ୍ୟା ମଧ୍ୟରୁ ବଙ୍ଗାଳୀମାନେ କେବଳ ସାମାନ୍ୟଭାବେ ଅର୍ଦ୍ଧାଧିକ ଥିଲେ । ବାଣିଜ୍ୟ ବ୍ୟବସାୟ ତଥା ରାଜନୈତିକ କ୍ଷମତାର ଅଧିକାରୀ ରୂପେ ବ୍ରିଟିଶ ନାଗରିକମାନେ ଅତି ନ୍ୟୁନ ପରିମାଣରେ ଶତକଡ଼ା 1.3 ଭାଗ ପ୍ରତିନିଧିତ୍ୱ କରୁଥିଲା ବେଳେ ରେଳ ପରିବହନ, ଡ଼ାକ ଓ ତାର ବିଭାଗ ତଥା ଅନ୍ୟାନ୍ୟ ଅନ୍ତର୍ଦେଶୀୟ ପରିବହନ ସଂସ୍ଥାରେ ଦ୍ୱିତୀୟ ଶ୍ରେଣୀ ପଦପଦବୀଗୁଡ଼ିକରେ ବସ୍ତୁତଃ ଏକଚାଟିଆ ଭାବେ ଥିବା ଇଉରେସିଆନ୍‌ମାନଙ୍କ ପରିମାଣ ଥିଲା ଶତକଡ଼ା 1.6 ଭାଗ । ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ମୁଷ୍ଟିମେୟ ଆର୍ମେନିୟାନ୍, ଜୀଉ, ହିନ୍ଦୁ ଗୁଜରାଟୀ ତଥା ମୁସଲମାନ ଓ ମାରୱାଡ଼ି ମଧ୍ୟ ଥିଲେ । କଳକାରଖାନା, ପରିବହନ, ନିର୍ମାଣ ତଥା ବ୍ୟବସାୟ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଖଟିଖିଆ ଶ୍ରମିକମାନଙ୍କ ମଧ୍ୟରୁ ଅଧିକାଂଶ ବିହାର, ଉତ୍ତର ପ୍ରଦେଶର ପୁର୍ବାଞ୍ଚଳ ତଥା ଓଡ଼ିଶାରୁ ଆସିଥିଲେ । ବଙ୍ଗାଳୀ ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ କାର୍ଯ୍ୟାଳୟମାନଙ୍କରେ ଚାକିରି ତଥା ଶିକ୍ଷକତା କରୁଥିଲେ କିମ୍ବା ଓକିଲାତି, ଡାକ୍ତରୀ ବ୍ୟବସାୟ କରି କର୍ମଜୀବୀ ଥିଲେ ଏବଂ ଥିଲେ କ୍ଷୁଦ୍ର ବ୍ୟବସାୟୀ । ଇଂରାଜୀ ଭାଷାରେ ସାକ୍ଷରତା ହାସଲ କରିବା ଥିଲା ସମ୍ମାନତାର ପ୍ରବେଶ ପତ୍ର ଏବଂ ଏହାର କେନ୍ଦ୍ରସ୍ଥଳ ଥିଲା କଲିକତା, ଯଦିଓ କଲିକତା ନଗରୀରେ ସାକ୍ଷରତା ହାସଲ କରିବା କେବଳ ସୀମାବଦ୍ଧ ନଥିଲା । ପ୍ରାୟ 1872 ମସିହା ବେଳକୁ ଢାକା, କୃଷ୍ଣ ନଗର, ମେଦିନୀପୁର, ଜେସୋର, ମୈମନସିଂ, ରଙ୍ଗପୁର,

ପାବନା ତଥା ଅନ୍ୟାନ୍ୟ ମଫସଲ ସହରଗୁଡ଼ିକରେ ଶିକ୍ଷିତ ଲୋକଙ୍କର ଆବିର୍ଭାବ ହୋଇଥିଲା ଯେଉଁମାନେ ଜାତୀୟତା ଭାବଧାରାର ବିକାଶ କରିଥିଲେ । ସାମ୍ବାଦିକତା କ୍ଷେତ୍ରରେ ଦୈନିକ ଷ୍ଟେଟସ୍‌ମ୍ୟାନ୍, ଇଣ୍ଡିଆନ୍ ଡେଲି ନ୍ୟୁଜ୍, ଏବଂ ଦି ଇଙ୍ଗଲିସ୍ ମ୍ୟାନ୍ ମାଧ୍ୟମରେ ବ୍ରିଟିଶ ସରକାରଙ୍କ ସ୍ୱାର୍ଥ ସାଧିତ ହେଉଥିଲା । ସେତେବେଳେ ଇଂରାଜୀ ଭାଷାରେ ଭାରତର ବୃହତ୍ ଖବରକାଗଜ ଥିଲା ଦି ହିନ୍ଦୁ ପେଟ୍ରିଅଟ୍, ଦି ଇଣ୍ଡିଆନ୍ ମିରର୍ ଏବଂ ଦି ବେଙ୍ଗଲି । ବଙ୍ଗଳା ସମ୍ବାଦପତ୍ରଗୁଡ଼ିକର ପ୍ରତିନିଧିତ୍ୱ କରୁଥିଲେ ସୋମପ୍ରକାଶ, ସାପ୍ତାହରେ ଥରେ ପ୍ରକାଶ ପାଉଥିବା ପଇସିକିଆ ସୁଲଭ ସମାଚାର ଏବଂ ଅମୃତ ବଜାର ପତ୍ରିକା ଯାହା ଦୁଇଟି ଭାଷାରେ ପ୍ରକାଶ ପାଉଥିଲା । ଘୋଷ ଭାଇମାନେ ନିଜ ଗ୍ରାମରୁ ତଥା ଘରୁ ପ୍ରତିକା ପ୍ରକାଶ କରିବାର ସୁବିଧା ହରାଇବା ସଙ୍ଗେ ସଙ୍ଗେ ଆପଣାର ସ୍ଥିତି ବଜାୟ ରଖିବା ପାଇଁ ତୀବ୍ର ପ୍ରତିଯୋଗୀତାର ସମ୍ମୁଖୀନ ହୋଇଥିଲେ । ତଥାପି ଖବରକାଗଜଟି ଚାଲିଥିଲା । ଏହାର ଅଧିକାରୀମାନେ ସ୍ୱଳ୍ପ ମୂଳଧନମୂଳକ ବଜେଟ୍ ଉପରେ ନିର୍ଭର କରିହିଁ ବଞ୍ଚି ରହିଥିଲେ ।

ପ୍ରାୟ ଏହି ସମୟରେ ଆୟକର ବୃଦ୍ଧି କରିବା ଉଦ୍ଦେଶ୍ୟରେ ସରକାର ଏକ ବିଲ୍ ଆଗତ କରିଥିଲେ । ସବୁ ଖବରକାଗଜ, ସେ ଭାରତୀୟ ହେଉ କି ଇଂରାଜୀ ହେଉ ସମସ୍ତେ ମିଳିମିଶି ତାର ବିରୋଧ କରିଥିଲେ । ଅଥଚ "ପତ୍ରିକା" ଥିଲା ସେହି ପଦକ୍ଷେପର ମୁଖ୍ୟତଃ ଏକମାତ୍ର ସମର୍ଥକ । ତା'ର ସମର୍ଥନ ଯୋଗୁଁ ଧନୀକ ଗୋଷ୍ଠୀର କେତେଜଣ ଗ୍ରାହକଙ୍କୁ ପତ୍ରିକା ହରାଇଥିଲା । ନୂଆ କର ଦ୍ୱାରା ପ୍ରଭାବିତ ହେଉ ନଥିବା ନିମ୍ନବିତ୍ତ ଶ୍ରେଣୀର ଅଧିକାଂଶ ଲୋକେ ତାହାର ପାଠକ ହୋଇ ଥିବାରୁ, ସେମାନଙ୍କୁ ପୃଷ୍ଠପୋଷକତା କରିବା ଲାଗି ଏହା ଅନୁରୋଧ କରିବାକୁ ସମର୍ଥ ହୋଇଥିଲା ଏବଂ କେତେକାଂଶରେ ସଫଳ ମଧ୍ୟ ହୋଇଥିଲା । ରାଜା ଦିଗମ୍ବର ମିତ୍ରଙ୍କ ଭଳି କଲିକତାର କେତେ ଜଣ ପ୍ରଭାବଶାଳୀ ଲୋକ ମଧ୍ୟ ଏହାର ପ୍ରସାର ଅଭିବୃଦ୍ଧି ଘଟାଇବାରେ ସାହାଯ୍ୟ କରିବାଲାଗି ଆଗେଇ ଆସିଥିଲେ । ନୂତନ ଗ୍ରାହକମାନଙ୍କ ମଧ୍ୟରେ ଥିଲେ କଲିକତା ହାଇକୋର୍ଟର ଜଣେ ପ୍ରଖ୍ୟାତ ବିଚାର-ପତି ଦ୍ୱାରିକାନାଥ ମିତ୍ର । ସେ ଯଦିଓ ପତ୍ରିକାର ଗ୍ରାହକ ହୋଇଥିଲେ ତଥାପି ସେ ନିଜର ଆଶଙ୍କା ପ୍ରକାଶ କରି ଶିଶିର କୁମାରଙ୍କୁ କହିଥିଲେ, "ଆପଣଙ୍କର ଲେଖାଗୁଡ଼ିକ ଏଭଳି ଏକ ବିପ୍ଳବାତ୍ମକ ଭାବଧାରାରେ ଚିତ୍ରିତ ହେଉଛି ଯାହା ପରେ ପରେ ଜନସାଧାରଣଙ୍କୁ ପ୍ରଭାବିତ କରାଇ ଦେଇପାରେ ଏବଂ ଦେଶରେ ଅଶାନ୍ତି ଓ ଅସନ୍ତୋଷ ବିଚ୍ଛୁରଣ କରାଇ ଦେଇପାରେ ।" ଶିଶିର କୁମାରଙ୍କ ଉତ୍ତରରେ ପ୍ରକାଶ ପାଇଥିଲା ଘୋଷ ଭାଇମାନଙ୍କ ଚାରିତ୍ରିକ ଲକ୍ଷଣ । ସେ କହିଥିଲେ ଯେ 'ପତ୍ରିକା'ର ଆଭିମୁଖ୍ୟ ଥିଲା ଜନସାଧାରଣଙ୍କୁ ସେମାନଙ୍କ ଆତ୍ମସମ୍ମାନ ରହିତ ଅବସ୍ଥା ସମ୍ପର୍କରେ ସଚେତନ କରାଇ ଦେବା ଏବଂ ସେମାନଙ୍କ ମନ ଭିତରେ ଦେଶାତ୍ମବୋଧ ଭାବର ଉଦ୍ରେକ କରାଇ ସେମାନଙ୍କୁ ଜାଗ୍ରତ କରାଇବା । "ସେମାନେ ବର୍ତ୍ତମାନ ଜୀବନ୍ତ ଅପେକ୍ଷା ଅଧିକ ମୃତ ଏବଂ ନିଦ୍ରିତାବସ୍ଥାରୁ ଉତ୍‌ଥାନର ଆବଶ୍ୟକ କରନ୍ତି । ସେହି କାରଣରୁ ଆମମାନଙ୍କର ଭାଷା ତୀକ୍ଷ୍ଣ ତଥା ଉଚ୍ଛାଦିତ ହେବାକୁ ହେବ ।" ଘଟଣାବଳୀ ଯାହା ପ୍ରମାଣିତ କରିଥିଲା ଏହା କେବଳ ଗୋଟିଏ ବ୍ୟକ୍ତିଗତ ପତ୍ରିକାର ଆବଶ୍ୟକତା ନଥିଲା, ଥିଲା ସମସ୍ତ ଜାତୀୟତାବାଦୀ ସାମ୍ବାଦିକତାର ପ୍ରଚାରିତ ମତ ଯାହା ପରବର୍ତ୍ତୀ ଶତାବ୍ଦୀରେ ସ୍ୱାଧୀନତା ସଂଗ୍ରାମର ବ୍ୟାଧିଗ୍ରସ୍ତ ଅବକ୍ଷୟମାଣ ଦିନଗୁଡ଼ିକରେ ଆବିର୍ଭାବ ହୋଇଥିଲା । ଜାତୀୟତାବାଦୀ

ସାମ୍ପ୍ରଦାୟିକତାର ସେହି ସ୍ୱର ଅପରିବର୍ତ୍ତନୀୟ ରୂପେ ସ୍ଥାପିତ ହୋଇ ଆସିଥିଲା ଏବଂ ସେ ସ୍ୱରକୁ ଉତ୍ତିଷ୍ଠିତ ରଖିବା ତଥା ଜାଗ୍ରତ କରାଇବା ଦିଗରେ ମୋତିଲାଲ ମଧ୍ୟ ବାସ୍ତବିକ ନିର୍ଭୀକତା ଅବଲମ୍ବନ କରିବା ପାଇଁ ଅନ୍ୟମାନଙ୍କ ମଧ୍ୟରେ ଜଣେ ହେବାପାଇଁ ବାଧ୍ୟ ହୋଇଥିଲେ ।

# ଚାରି : ପତ୍ରିକାର ରୂପାନ୍ତର

ମୁଖ୍ୟତଃ ଭାରତୀୟ ସାଧାରଣ ସେବା କ୍ଷେତ୍ରରେ କେବଳ ଇଂରେଜ ଲୋକମାନେହିଁ ନିଯୁକ୍ତ ଥିଲେ । ସେମାନେ ସେମାନଙ୍କର ସ୍ୱାର୍ଥ ସାଧନ ପାଇଁ କ୍ରମାଗତ ଭାବେ ଭାରତରେ ଅତ୍ୟାଚାର ଚଳାଉଥିଲେ । ଭାରତର କୌଣସି ପ୍ରକାର ସମାଲୋଚନାମୂଳକ ମତାମତ ପ୍ରତି ସେମାନେ ଥିଲେ ଅତି ଅଭିମାନୀ । କାରଣ ସେମାନେ ଆଶା କରୁଥିଲେ ଇଂରାଜୀ ଶିକ୍ଷାପ୍ରାପ୍ତ ଭଦ୍ରଲୋକମାନେ, ବ୍ରିଟିଶ ସରକାର ସେମାନଙ୍କୁ ଦେଇଥିବା ସୁବିଧା ସୁଯୋଗଗୁଡ଼ିକ ପାଇଁ (ସହରାଞ୍ଚଳର ଭଦ୍ରଲୋକ) ସେମାନଙ୍କ ନୀତିଗୁଡ଼ିକ ପ୍ରତି ତଥା ଶାସନ ପ୍ରଣାଳୀ ପ୍ରତି କୃତକୃତ୍ୟ ହୋଇ ପ୍ରଶଂସା କରିବେ । କିନ୍ତୁ ଶାସନ କ୍ଷେତ୍ରରେ ତଥା ନୀତି ନିର୍ଦ୍ଧାରଣ ଦିଗରେ ଅଧିକ ସଂଖ୍ୟାରେ ଭାରତୀୟମାନଙ୍କୁ ନିଯୁକ୍ତି ଦିଆଯିବା ଲାଗି ଭାରତୀୟଙ୍କ ଦାବୀ ଥିଲା । ତେବେ ସେହି ପାଶ୍ଚାତ୍ୟ ଗଣତାନ୍ତ୍ରିକ ଚିନ୍ତାଧାରାକୁ କାର୍ଯ୍ୟକାରୀ କରାଗଲେ ତାହା ଅନୁଷ୍ଠାନଗୁଡ଼ିକରେ ଭାରତୀୟମାନଙ୍କଦ୍ୱାରା "ଅପବ୍ୟବହାର" ହେବାର ପ୍ରବଳ ସମ୍ଭାବନାକୁ ଇଂରେଜମାନେ ଲକ୍ଷ୍ୟ କରି ପାରିଥିଲେ । ସେହି କାରଣରୁ ସେତେବେଳେ ବଙ୍ଗଳା ବିଧାନ ସଭାରେ ଥିବା ଲେଫଟ୍‌ନାଣ୍ଟ ଗଭର୍ଣ୍ଣରଙ୍କୁ ମିଶାଇ ମୋଟ 13 ଜଣ ସଭ୍ୟଙ୍କ ମଧ୍ୟରେ ଥିଲେ ଚାରିଜଣ ଇଉରୋପୀୟ ସରକାରୀ କର୍ମଚାରୀ, ଚାରିଜଣ ଇଉରୋପୀୟ ଅଣକର୍ମଚାରୀ, ଦୁଇଜଣ ଭାରତୀୟ ସରକାରୀ କର୍ମଚାରୀ ଏବଂ ଆଉ ଦୁଇଜଣ ଭାରତୀୟ ନାଗରିକ । କଲିକତା ମହାନଗରୀ ରାଜ୍ୟ ସରକାରଙ୍କ ରାଜଧାନୀ ଥିବା ସଙ୍ଗେ ସଙ୍ଗେ ଭାରତୀୟ ସାମ୍ରାଜ୍ୟର ରାଜଧାନୀ ଥିଲା । ତେଣୁ ଶେଷୋକ୍ତଙ୍କ ସମ୍ପ୍ରସାରଣ ମନୋଭାବାପନ୍ନ ନୀତିସବୁ ଯେଉଁଭଳି ଭାବରେ ସମ୍ବାଦପତ୍ରଗୁଡ଼ିକରେ ସମାଲୋଚନାମୂଳକ ଭାବେ ପ୍ରକାଶିତ ନହେବ, ସେଥିଲାଗି ପ୍ରଥମୋକ୍ତ ସରକାର ଅତି ଉତ୍କଣ୍ଠିତ ଥିଲେ । ପୁଣି ତତ୍ ସହିତ ସେମାନେ ମଧ୍ୟ ଉଦ୍‌ବିଗ୍ନ ଥିଲେ, ସେମାନଙ୍କ କାର୍ଯ୍ୟକଳାପ ଭାଇସରୟଙ୍କ ନିକଟରେ ପହଞ୍ଚି ନପାରିବା ଲାଗି ।

1876 ମସିହାରେ ଭାଇସରୟ ରୂପେ ନିଯୁକ୍ତ ହୋଇଥିଲେ ଲର୍ଡ ଲିଟନ୍ (Lord Lytton) "ରକ୍ଷୀୟ ଅଭିପ୍ରାୟରେ" ପ୍ରତିକୂଳ ଅବସ୍ଥା ସୃଷ୍ଟି କରୁଥିବା ସନ୍ଦେହଯୁକ୍ତ ଆଫଗାନିସ୍ଥାନକୁ ପରାଜିତ କରିବା ଆହ୍ୱାନକୁ ସେ ନିଜେ ଗ୍ରହଣ କରିଥିଲେ । ସେ "କାଶ୍ମୀରର ମହାରାଜାଙ୍କୁ ଯଥାନୁରୂପେ ଅସ୍ତ୍ରଶସ୍ତ୍ର ଯୋଗାଇ ଦେବା ସଙ୍ଗେ ସଙ୍ଗେ ଚିତ୍ରଲ ଗିରିପଥ ମଧ୍ୟଦେଇ ସୈନ୍ୟ ସାମନ୍ତ ପଠାଇବାପାଇଁ ମଧ୍ୟ

ତାଙ୍କୁ ଉତ୍ସାହିତ କରିଥିଲେ । ମୁଖ୍ୟତଃ କାଶ୍ମୀର ଥିଲା ଗୋଟିଏ ଦେବାଳିଆ ରାଜ୍ୟ । ବ୍ରିଟିଶ ଅଧିକୃତ ଭାରତ ଅତ୍ୟଧିକ କର ପୀଡ଼ାରେ ଗୁମୁରି ଉଠୁଥିଲା ଏବଂ ଦୀର୍ଘ ଏକ ଶତାବ୍ଦୀକାଳ ମଧ୍ୟରେ ଘଟି ନଥିବା ଭଳି ଗୋଟିଏ କରାଳ ଦୁର୍ଭିକ୍ଷର ପ୍ରାଦୁର୍ଭାବ ଦେଖାଦେଇଥିଲା । କିନ୍ତୁ ସେଥିରୁ ମୁକ୍ତି ପାଇଁ କୌଣସି ଅର୍ଥନୈତିକ ପଦକ୍ଷେପ ଗ୍ରହଣ କରିବା କିମ୍ବା ଜନସାଧାରଣଙ୍କ ଉପରୁ କର ଭାର ଲାଘବ କରିବା ପାଇଁ ମାନବିକ ବିଚାରହୀନତା ଭଳି ଭାଇସରୟଙ୍କ ନିଜର କାର୍ଯ୍ୟକଳାପ ହିଁ ସେଭଳି ପରିସ୍ଥିତି ସୃଷ୍ଟି କରିବା ଦିଗରେ ସହାୟକ ହୋଇଥିଲା । ସେ ତଥାପି ସଂଘଟିତ ହୋଇ ନଥିବା ଏକ ବିପଦ ବିରୁଦ୍ଧରେ ସେଭଳି ବିଶାଳ ତଥା ଖର୍ଚ୍ଚବହୁଳ ଆୟୋଜନରୁ କ୍ଷାନ୍ତ ହୋଇ ନଥିଲେ ।'' (ଦତ୍ତ - ଭାରତର ଅର୍ଥନୈତିକ ଇତିହାସ - ଦ୍ୱିତୀୟ ଭାଗ) ସରକାରଙ୍କ ରକ୍ତ ଲୋଲୁପୀ ନୀତି ତଥା 1877 ମସିହାରେ ମାଡ୍ରାଜ ପ୍ରଦେଶରେ ହୋଇଥିବା ବିଧ୍ୱସ୍ତକାରୀ କରାଳ ଦୁର୍ଭିକ୍ଷ ଯୋଗୁଁ ଜନସାଧାରଣଙ୍କ ଅକଥନୀୟ ନୀପୀଡ଼ନ ସମ୍ପର୍କରେ ସରକାରୀ ନୀତି ସହ ତୀବ୍ର ମତଭେଦ ନେଇ କୌଣସି ସାଧାରଣ ସମାଲୋଚନା ପ୍ରକାଶ ନହେବା ମଧ୍ୟ ସରକାରଙ୍କ ଲାଗି ଆବଶ୍ୟକ ଥିଲା । ବଙ୍ଗଳାର ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ସାର୍ ଏସ୍‌ଲେ ଏଡ଼ନ୍ (Sir Ashley Eden) ଭାରତୀୟ ଭାଷାରେ ପ୍ରକାଶ ପାଉଥିବା ଖବରକାଗଜଗୁଡ଼ିକୁ ନିଜ ଅଧୀନସ୍ଥ କରିବା ପାଇଁ ବଦ୍ଧ ପରିକର ଥିଲେ । ଇଂରାଜୀରେ ପ୍ରକାଶ ପାଉଥିବା ଖବରକାଗଜଗୁଡ଼ିକୁ ଟଙ୍କା ଲାଞ୍ଚ ଦେଇ ସେମାନଙ୍କ ଆତ୍ମରକ୍ଷା ପାଇଁ ସରକାରୀ ମତଦ୍ୱାରା ପରିଚାଳିତ ହେବାଲାଗି ସ୍ୱୀକୃତ କରାଇ ନିଆ ଯାଇଥିଲା । ସେଭଳି ବିଶେଷ ଉଗ୍ର ସ୍ୱଭାବ ନଥିବା 'ଦି ହିନ୍ଦୁ ପେଟ୍ରିଅଟ୍' ର ଉଦାରପନ୍ଥୀ କ୍ରିଷ୍ଟୋଦାସଙ୍କୁ ଅକ୍ତିଆର କରି ସାରିବା ପରେ ସେ ଶିଶିର କୁମାରଙ୍କୁ ନିମନ୍ତ୍ରଣ କରିଥିଲେ ତାଙ୍କ ସହିତ ସାକ୍ଷାତ କରିବା ପାଇଁ ତଥା ତାଙ୍କୁ ଶିଶୁ ସୁଲଭ ପରିଚର୍ଯ୍ୟା କରିବା ପାଇଁ । ''ସେ ତାଙ୍କ ପରାମର୍ଶ ରକ୍ଷା କଲେ ସରକାରଙ୍କ ସାହାଯ୍ୟ ପାଇ ପାରିବେ ବୋଲି ମଧ୍ୟ ପ୍ରସ୍ତାବ କରିଥିଲେ ।'' ମୋତିଲାଲଙ୍କ ଭାଷାରେ :

''ସେ ଯାହା ପ୍ରସ୍ତାବ ଦେଇଥିଲେ ତାର ସାରମର୍ମ ହେଉଛି, ''ଆମେ ତିନିଜଣ - ଆପଣ, ମୁଁ ଓ କ୍ରିଷ୍ଟୋଦାସ - ଏହି ପ୍ରଦେଶକୁ ଶାସନ କରିବା । ମୋର ନିର୍ଦ୍ଦେଶ ଅନୁଯାୟୀ ତାଙ୍କର ଖବରକାଗଜକୁ ପରିଚାଳିତ କରିବା ପାଇଁ କ୍ରିଷ୍ଟୋଦାସ ସ୍ୱୀକୃତି ଦେଇ ସାରିଛନ୍ତି । ଅପାଣଙ୍କୁ ମଧ୍ୟ ସେଇଯାହିଁ କରିବାକୁ ହେବ । 'ଦି ହିନ୍ଦୁ ପେଟ୍ରିଅଟ' କୁ ସାହାଯ୍ୟ କରିବା ଭଳି ମୁଁ ଆପଣଙ୍କ ଖବରକାଗଜକୁ ମଧ୍ୟ ଅର୍ଥ ସାହାଯ୍ୟ କରିବି ଏବଂ ଯେତେବେଳେ ଆପଣ ସରକାରଙ୍କୁ ସମାଲୋଚନା କରି ପ୍ରବନ୍ଧଟିଏ ଲେଖିବେ ତାହା ପ୍ରକାଶିତ ହେବା ପୂର୍ବରୁ ପାଣ୍ଡୁଲିପିକୁ ମୋ ନିକଟରେ ଦାଖଲ କରିବାକୁ ହେବ । ତା'ର ପ୍ରତିବଦଳରେ ସରକାର ଆପଣଙ୍କଠାରୁ ଉଲ୍ଲେଖ ଯୋଗ୍ୟ ସଂଖ୍ୟକ ପତ୍ରିକା କ୍ରୟ କରିନେବେ । ଏହି ପ୍ରଦେଶର ଶାସନଗତ ପରିଚାଳନା ଦୃଷ୍ଟିରୁ ମୁଁ କ୍ରିଷ୍ଟୋଦାସଙ୍କ ସହ ପରାମର୍ଶ କଲାଭଳି ଆପଣଙ୍କ ସହ ମଧ୍ୟ ପରାମର୍ଶ କରିବି ।''

ବାବୁ ଶିଶିର କୁମାର ସେତେବେଳେ ଥିଲେ ଜଣେ ନିମ୍ନ ବିତ୍ତଶାଳୀ ଲୋକ । କଲିକତାର ସମାଜରେ ସେତେବେଳେ ତାଙ୍କର ବିଶେଷ ସ୍ଥାନ ନଥିଲା । ରାଜ୍ୟର ଶାସନକର୍ତ୍ତାଙ୍କ ନିକଟରୁ ଘୁଷ

ନେଇ ଅନୁଚିତ୍ କାର୍ଯ୍ୟ କରିବା ପାଇଁ ଗୋପନ ପ୍ରସ୍ତାବ ଆସିଥିଲା . . . . କିନ୍ତୁ ସେ ଭିନ୍ନ ଉପାଦାନରେ ଗଠିତ ହୋଇଥିଲେ । ସାର ଏସ୍‌ଲେଙ୍କ ବଦାନ୍ୟ ପ୍ରସ୍ତାବ ପାଇଁ ଧନ୍ୟବାଦ ଦେଇଥିଲେ ଏବଂ ଅତି ଶାନ୍ତ ଭାବରେ ମତାମତ ଦେଇଥିଲେ : "ମହାଶୟ, ଏ ଭୂମିରେ ଅନ୍ତତଃ ଜଣେ ସଚ୍ଚୋଟ ସାମ୍ବାଦିକ ରହିବା ଉଚିତ ହେବ ।" . . . ସାର୍. ଏସ୍‌ଲେ ଅଜେୟ ଉତ୍ତେଜନାରେ ପ୍ରଚଣ୍ଡ କ୍ରୋଧାନ୍ୱିତ ହୋଇ ଯାଇଥିଲେ । ଅତି ତୀବ୍ର ଚାଞ୍ଚଲ୍ୟରେ ବାବୁ ଶିଶିର କୁମାରଙ୍କୁ କହିଥିଲେ ଯେ ସେ କାହାକୁ ସେ କଥା କହୁଛନ୍ତି ତାହା ସେ ଭୁଲି ଯାଇଛନ୍ତି । ପ୍ରଦେଶରେ ସର୍ବୋଚ୍ଚ କର୍ତ୍ତା ହିସାବରେ ଯେଉଁ ଦିନ ଇଚ୍ଛା ସେହିଦିନ ସେ ତାଙ୍କ ପତ୍ରିକାରେ ଉତ୍ତେଜନାମୂଳକ ଲେଖା ପ୍ରକାଶିତ ହେବା ଅଭିଯୋଗରେ ତାଙ୍କୁ ଜେଲ୍ ହାଜତରେ ଭର୍ତ୍ତି କରିଦେଇ ପାରିବେ । ପୁଣି ତାଙ୍କର ଆସବାବପତ୍ର ସହିତ ଛଅମାସ ମଧ୍ୟରେ ସେ ଯେଉଁଠାରୁ ଆସିଥିଲେ ସେହି ଜେସୋରକୁ ବହିଷ୍କାର କରିଦେଇ ପାରିବେ । ଏହା ଏକ ନିଷ୍ଫଳ ଧମକ ନଥିଲା ।

ସେଥିପାଇଁ ଭର୍ନାକୁଲର୍ ପ୍ରେସ୍ ଆଇନ୍ (1878 ର ନବମ ଆଇନ୍) ପାସ୍ ହୋଇଥିଲା । ସେହି ଆଇନ୍ ବଳରେ ଗୋଟିଏ ଜିଲ୍ଲାର ମାଜିଷ୍ଟ୍ରେଟ୍ କିମ୍ବା ପ୍ରେସିଡେନ୍‌ସି ସହରରେ ପୋଲିସ୍ କମିଶନରଙ୍କୁ ଯେକୌଣସି ଭାରତୀୟ ଭାଷାରେ ପ୍ରକାଶିତ ଖବରକାଗଜର ପ୍ରକାଶକଙ୍କୁ କିମ୍ବା ପ୍ରେସ୍ ମାଲିକଙ୍କୁ ଡକାଇବା ପାଇଁ କ୍ଷମତା ଦିଆ ଯାଇଥିଲା । ପୁଣି ବ୍ରିଟିଶ୍ ଅଧିକୃତ ଭାରତରେ ଆଇନ୍‌କାନୁନ୍ ଅନୁଯାୟୀ ପ୍ରତିଷ୍ଠିତ ସରକାରଙ୍କ ବିରୁଦ୍ଧରେ ଅସନ୍ତୋଷ ଜାଗ୍ରତ କରାଇବା କିମ୍ବା ବିଭିନ୍ନ ଜାତି, ଉପଜାତି, ଗୋଷ୍ଠୀ, ଧର୍ମର ଲୋକଙ୍କ ମଧ୍ୟରେ ଘୃଣା ସୃଷ୍ଟି କରିବା ଭଳି କୌଣସି ଶବ୍ଦ, ସଂକେତ କିମ୍ବା ସେଭଳି କୌଣସି ତଥ୍ୟ ପ୍ରକାଶ ନକରିବା ଲାଗି ଗୋଟିଏ ଚୁକ୍ତି ସମ୍ପାଦନ କରିବା ମଧ୍ୟ ସେମାନଙ୍କ କ୍ଷମତାଭୁକ୍ତ ଥିଲା । ତତ୍ ସଙ୍ଗେ ସଙ୍ଗେ ସରକାର ଉଚିତ୍ ମନେ କରିଥିବା ପରିମାଣର ଟଙ୍କା ପାଇଁ ଗୋଟିଏ ଜାମିନ୍‌ଦାର ଦାଖଲ କରିବା ପାଇଁ କହିବାକୁ ମଧ୍ୟ ସେମାନଙ୍କୁ କ୍ଷମତା ଦିଆ ଯାଇଥିଲା । "ଆପତ୍ତିଜନକ" ଲେଖାର ବର୍ଣ୍ଣନାଗୁଡ଼ିକ ଭିତରେ ଥିଲା :

ବିଦ୍ରୋହାତ୍ମକ କୁତ୍ସା ପ୍ରଚାର, ଲୁଣ୍ଠନ, ଦମନ ଏବଂ ନିଷ୍ଠାବିହୀନତାର ଅଭିଯୋଗ କରାଯାଇ ସରକାରଙ୍କ ବିରୁଦ୍ଧରେ ଅପମାନସୂଚକ ଲେଖା, କିମ୍ବା ହିଂସାତ୍ମକ ଆକ୍ରମଣ ତଥା ଅବିଶ୍ୱାସ, ଅନୀତି ଓ ପକ୍ଷପାତିତା ନୀତି ଆରୋପଣ ;

ସରକାରୀ ଅଫିସରମାନଙ୍କ ବିଷୟରେ କୁତ୍ସା ପ୍ରଚାର ;

ଶାସନମୂଳକ ନୀତିରେ ଅଶୁଦ୍ଧତା ତଥା ମୂଲ୍ୟହୀନତା ଅଭିଯୋଗ ପ୍ରଦର୍ଶନ କରିବା ଭଳି ଅବମାନନାସୂଚକ ମନ୍ତବ୍ୟ ;

ଇଉରୋପୀୟମାନଙ୍କ ଚରିତ୍ରର ନିନ୍ଦା କରାଯାଇ ସେମାନଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗ, ପ୍ରତାରଣା, ନିଷ୍ଠୁରତା ତଥା ହୃଦୟହୀନତା ପ୍ରଭୃତି ଆରୋପ କରାଯିବା ;

ଖ୍ରୀଷ୍ଟିୟାନ୍ ଏବଂ ଖ୍ରୀଷ୍ଟିୟାନ୍ ସରକାରଙ୍କ କୁତ୍ସା ରଚନା କରାଯିବା ତଥା ଗୋଷ୍ଠୀଗତ କିମ୍ବା ଧର୍ମଗତ ବିଦ୍ୱେଷମୂଳକ ଉତ୍ତେଜନା ସୃଷ୍ଟି କରିବା ଭଳି ଖଳ ପ୍ରକୃତି ;

ସେହିଭଳି ପରୋକ୍ଷ ଆଭାସ କିମ୍ବା ପରାମର୍ଶ ଯେଉଁଗୁଡ଼ିକରେ ଲେଖକମାନଙ୍କ ମତରେ କୌଣସି ବିଦ୍ରୋହାତ୍ମକ କୁତ୍ସା ଆରୋପଣର ବାସ୍ତବ ଘୋଷଣା କରାଯାଇନାହିଁ ।

ମୁଖ୍ୟତଃ ଆଇନ୍‌ଟି ଯେ 'ପତ୍ରିକା' ପାଇଁ ଉଦ୍ଦିଷ୍ଟ ଥିଲା ସେଥିରେ କୌଣସି ସନ୍ଦେହ ନଥିଲା । ସାର୍ ଏସ୍‌ଲେ ମଧ୍ୟ ବିଧାନସଭାରେ ଦେଇଥିବା ଭାଷଣରେ କୌଣସି କଥା ଗୋପନ ନରଖି ବର୍ଣ୍ଣନା କରିଥିଲେ - "ସରକାର ଯେଉଁ କଥାକୁ ବିରୋଧ କରୁଛନ୍ତି ତାହା ହେଉଛି ବିଦ୍ରୋହାତ୍ମକ କାର୍ଯ୍ୟକଳାପ ଏବଂ ଦେଶୀୟ ଭାଷାରେ ପ୍ରକାଶ ପାଉଥିବା କେତେକ ପତ୍ରିକାର ଚରମ ଆନୁଗତ୍ୟହୀନତା ତଥା ଅଜ୍ଞ ଜନସାଧାରଣଙ୍କ ମନରେ ବ୍ରିଟିଶ ସରକାରଙ୍କ ପ୍ରତି ଅସନ୍ତୋଷର ବୀଜ ବପନ କରିବା ପାଇଁ ସେମାନଙ୍କ ଉଦ୍ୟମ . . . ମୁକ୍ତି ଏବଂ ସ୍ୱାଧୀନତାର ଏକ ଭ୍ରାନ୍ତ ଧାରଣା ମଧ୍ୟରେ ସମ୍ବାଦପତ୍ରଗୁଡ଼ିକର ସ୍ୱୈରାଚାର ଏପରି ଏକ ଅବସ୍ଥାରେ ପହଞ୍ଚିବା ପାଇଁ ଦିଆଯାଇଛି ଯେ ଜନସାଧାରଣଙ୍କ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ବିଧାନସଭା ସଙ୍ଗେ ସଙ୍ଗେ ସେଥିରେ ହସ୍ତକ୍ଷେପ କରିବାର ଆବଶ୍ୟକତା ରହିଛି . . . . ।"

କିନ୍ତୁ ଶିଶିର କୁମାର ଏବଂ ତାଙ୍କ ଭାଇମାନେ ମଧ୍ୟ ସାର୍ ଏସ୍‌ଲେଙ୍କ ଭଳି ବେଶ ଚାଲାକ ଥିଲେ । "ଉକ୍ତ ଆଇନ୍‌ଟି କାର୍ଯ୍ୟ କ୍ଷେତ୍ରରେ ପ୍ରଯୁଜ୍ୟ ହେବା ପୂର୍ବରୁ ସେମାନେ ସେମାନଙ୍କର ସମ୍ବାଦପତ୍ରଟିକୁ ଇଂରାଜୀ ବେଶ ପୋଷାକରେ ପୁରାପୁରି ସଜ୍ଜିତ କରାଇ ଆଇନ୍‌ର ବିଡ଼ମ୍ବନା ପ୍ରଚାର କରିବା ସଙ୍ଗେ ସଙ୍ଗେ ସେଥିପାଇଁ ଲେଫଟ୍‌ନାଣ୍ଟ ଗଭର୍ଣ୍ଣରଙ୍କୁ ଅପ୍ରତ୍ୟାଶିତ ଭାବେ ଆକ୍ରମଣ କରିଥିଲେ ।" ମାତିଲାଲଙ୍କ ସ୍ମୃତିଚାରଣରେ - "ଯେଉଁ ପତ୍ରିକା ଇଂରାଜୀ ଭାଷାରେ ପ୍ରକାଶ ପାଉଥିଲା ତାହା ଲର୍ଡ ଲିଟନ୍‌ଙ୍କ ଭର୍ଣ୍ଣାକୁଲର୍ ପ୍ରେସ୍ ଆଇନ୍‌ର ପରିସର ବାହାରେ ରହି ଯାଉଥିଲା ।"

ସାର୍ ଏସ୍‌ଲେ ଥିଲେ ଜଣେ ସ୍ପଷ୍ଟବାଦୀ ଲୋକ ଏବଂ 'ପତ୍ରିକା' ନିସ୍ତାର ପାଇ ଯାଇଥିବା ନେଇ ନିଜର ତୀବ୍ର ଅସନ୍ତୋଷ ସେ ତାଙ୍କର ବଙ୍ଗାଳୀ ବନ୍ଧୁମାନଙ୍କ ମଧ୍ୟରେ ଅନେକଙ୍କ ନିକଟରେ ଅଛପା ରଖି ନଥିଲେ । ସେମାନଙ୍କୁ କହିଥିଲେ ଯେ 'ପତ୍ରିକା'କୁ ଇଂରାଜୀ ଭାଷାରେ ରୂପାନ୍ତରିତ କରିବାରେ ମାଲିକମାନେ ଯଦି ମାତ୍ର ଗୋଟିଏ ସପ୍ତାହ ଡେରି କରିଦେଇଥାନ୍ତେ ତେବେ ସେମାନଙ୍କଠାରୁ ଅତି ଗୁରୁତ୍ୱପୂର୍ଣ୍ଣ ଜାମିନ୍ ବଣ୍ଡ ଦାବୀ କରି ତାକୁ ସେ ଏକ ଅତି ଦାରୁଣ ଧକ୍କା ଦେଇଥାନ୍ତେ ।

ସେହିସବୁ କାରଣରୁ 1878 ମସିହା ମାର୍ଚ୍ଚ 21 ତାରିଖରେ ପ୍ରକାଶ ପାଇବାକୁ ଥିବା ପରବର୍ତ୍ତୀ ସଂଖ୍ୟା ସମ୍ପୂର୍ଣ୍ଣ ରୂପେ ଇଂରାଜୀ ଭାଷାରେ ପ୍ରକାଶିତ ହୋଇଥିଲା । ସେଥିରେ ପ୍ରକାଶ ପାଇଥିବା ସମ୍ପାଦକୀୟ ଅଗ୍ରଲେଖାଟି ଉକ୍ତ ଆଇନ୍ ସମ୍ପର୍କରେ ବିଜ୍ଞତାର ସହିତ ସିଧାସଳଖ ଭାବରେ କୌଣସି କଥା ଉଲ୍ଲେଖ କରା ନଯାଇ କେବଳ ଏତିକି କୁହା ଯାଇଥିଲା :

"ଅତି ଦୁଃଖର ସହିତ ଆମେ ଆମର ମାତୃଭାଷାକୁ ପରିହାର କରୁଛୁ । ଏଭଳି ପଦକ୍ଷେପ ପାଇଁ

ଆମକୁ ଆମର ପୃଷ୍ଠପୋଷକ ତଥା ବନ୍ଧୁମାନଙ୍କଦ୍ୱାରା ବାଧ୍ୟ କରାଯାଇଛି ଯେଉଁମାନଙ୍କ ମତାମତ ତଥା ଦେଶାତ୍ମବୋଧକୁ ଆମେ ବିଶ୍ୱାସ କରୁଛୁ . . . ଏଇ ପରିବର୍ତ୍ତନ ଆମ ଦେଶକୁ ଲାଭବାନ କରି ପାରିବକି ନାହିଁ ତାହା କେବଳ ଭଗବାନ ଜାଣନ୍ତି । କିନ୍ତୁ ଆମେ ଭାବୁଛୁ ବର୍ତ୍ତମାନ ଇଂରାଜୀ ଭାଷାରେ ପ୍ରକାଶିତ ଗୋଟିଏ ସମ୍ପୂର୍ଣ୍ଣ ସ୍ୱାଧୀନ ଖବରକାଗଜର ଅତ୍ୟନ୍ତ ଆବଶ୍ୟକତା ରହିଛି । ଆମେମାନେ ବହୁ ପରୀକ୍ଷା ଅତିକ୍ରମ କରି ଆସିଛୁ । ଆମ ପ୍ରତି ପ୍ରଦର୍ଶିତ ହୋଇଥିବା ସାହାଯ୍ୟ ସହାନୁଭୂତି କଥା ସ୍ମରଣ କଲାବେଳେ କୃତଜ୍ଞତାରେ ଆମେ ଅତି ବଳବାନ୍ ହୋଇ ଉଠୁଛୁ । ଆମେ ଆଶା କରୁଛୁ, ଆମେ ଯଦି ସେଥିପାଇଁ ଯୋଗ୍ୟ ଥିଲୁ ତାହେଲେ ଭଗବାନ ଆମ ଦେଶର ଜନସାଧାରଣଙ୍କୁ ସେ ଦିଗରେ ପୁଣି ଥରେ ପରିଚାଳିତ କରିବେ ।''

ବଳ ପ୍ରୟୋଗ କରାଯାଇ ମୁହଁ ବନ୍ଦ କରିବା ପାଇଁ ଚେଷ୍ଟା କରୁଥିବା ସେହି ଆଇନ୍ ପ୍ରତି ଜନସାଧାରଣଙ୍କ ପ୍ରତିକ୍ରିୟା ଅତି ମାରାତ୍ମକ ହୋଇଥିଲା । ଉଲ୍ଲେଖ କରାଯାଇ ପାରେ ଯେ ପୂର୍ବରୁ 1875 ମସିହାରେ ଶିଶିର କୁମାର ଏବଂ ମୋତିଲାଲ ଇଣ୍ଡିଆନ୍ ଲିଗ ଗଠନ କରିଥିଲେ, ଜନସାଧାରଣଙ୍କୁ ସଙ୍ଗଠିତ କରିବା ପାଇଁ । ତାହା ତତ୍ ପରବର୍ଷ 1876 ମସିହାରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କଦ୍ୱାରା ଗଠିତ ଇଣ୍ଡିଆନ୍ ଏସୋସିଏସନ୍ ଦ୍ୱାରା ଅତିକ୍ରମିତ ହୋଇଯାଇଥିଲା । ସୁରେନ୍ଦ୍ରନାଥ 1869 ମସିହାରେ ଇଂଲଣ୍ଡରେ ଅନୁଷ୍ଠିତ ଭାରତୀୟ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ସେ ଉଲ୍ଲେଖ କରିଥିବା ବୟସରେ ତାରତମ୍ୟ ଯୋଗୁଁ ତାଙ୍କ ନିଯୁକ୍ତିକୁ ବାତିଲ କରି ଦିଆଯାଇଥିଲା । ସେ ସେଇ ଅଭିଯୋଗ ବିରୁଦ୍ଧରେ ଅପିଲ୍ କରି ଜୟଯୁକ୍ତ ହୋଇଥିଲେ ଏବଂ 1871 ମସିହାରେ ସିଲହଟ୍‌ରେ ଉପଜିଲ୍ଲାପାଳ ରୂପେ ନିଯୁକ୍ତି ପାଇଥିଲେ । ସେଠାରେ ଜଣେ ଇଉରୋପୀୟ ସହକର୍ମୀଙ୍କ ସହିତ ସମାନ ଅଧିକାରଭୁକ୍ତ ହୋଇଥିଲେ ମଧ୍ୟ ଗୋଟିଏ ଗୁରୁତ୍ୱହୀନ ଅଭିଯୋଗରେ ତାଙ୍କୁ ଚାକିରୀରୁ ବହିଷ୍କାର କରିଦିଆ ଯାଇଥିଲା । ତାହା ଏକ ବିଶିଷ୍ଟ ଘଟଣାରେ ପରିଣତ ହୋଇଯାଇଥିଲା । ସେ ଯେତେବେଳେ ଭାରତୀୟ ଚାକିରୀରେ ପୁନଃ ସଂସ୍ଥାପନ ପାଇଁ ଲଣ୍ଡନରେ ଉଦ୍ୟମ ଚଳାଇ ଥିଲେ ତାଙ୍କ ପଛରେ ଭରତୀୟ ଜନମତ ତଥା ଜନ ଶକ୍ତିର ସମର୍ଥନ ରହିଥିଲା । ସେ କେବଳ ତାଙ୍କ ଉଦ୍ୟମରେ ପରାଜିତ ହୋଇ ନଥିଲେ, ତା'ର ପରିଣାମ ସ୍ୱରୂପ କୋର୍ଟ କଚେରୀରେ ଜଣେ ବାରିଷ୍ଟର ରୂପେ ଆଇନ୍ ବ୍ୟବସାୟ କରିବା ଅଧିକାର ମଧ୍ୟ ହରାଇ ଥିଲେ ।

ଏହା ଥିଲା ତାଙ୍କ ଜୀବନର ଗତିପଥ ପରିବର୍ତ୍ତନକାରୀ ଘଟଣା । "ମୁଁ ଅନୁଭବ କଲି", ତାଙ୍କ ଆତ୍ମ ଜୀବନୀ "ଏ ନେସନ୍ ଇନ୍ ମେକିଙ୍ଗ୍"ରେ ସେ ଲେଖିଥିଲେ, "ମୁଁ ସେଭଳି କଷ୍ଟ ପାଇବାର କାରଣ ହେଲା ମୁଁ ଥିଲି ଜଣେ ଭାରତୀୟ - ଏଭଳି ଅସଂଗଠିତ ଭାବେ ପଡ଼ି ରହିଥିବା ଏକ ଜାତିର ସଭ୍ୟ ଯାହାର ଜନମତ ବୋଲି କିଛି ନଥିଲା ଏବଂ ସରକାରୀ ମହଲରେ ମଧ୍ୟ ଉପଦେଶାତ୍ମକ ସ୍ୱରର କୌଣସି ମୂଲ୍ୟ ନଥିଲା । ଯୌବନରେ ସମସ୍ତ ଉଦ୍ଦାମତା ଭିତରେ ମୁଁ ଅନୁଭବ କରିଥିଲି ଯେ ଆମେମାନେ ଆମର ଜନ୍ମଭୂମିରେ ଥିଲୁ କ୍ରୀତଦାସ, କାଠ କଟାଳୀ କିମ୍ବା ଜଳବାଶିର ଦୁଣ୍ଡି ଲେଖକ ।

. . . ମୁଁ ମୋ ଭିତରେ ସ୍ଥିର ନିଶ୍ଚିତ କରିଥିଲି ଯେ ଆମ୍ଭମାନଙ୍କର ଭୁଲ ଭ୍ରାନ୍ତିଗୁଡ଼ିକୁ ସଜାଡ଼ିବା ଦିଗରେ ଏବଂ ଉଭୟ ବ୍ୟକ୍ତି ତଥା ଜାତି ହିସାବରେ ଆମ୍ଭମାନଙ୍କର ଅଧିକାରକୁ ବଜାୟ ରଖିବା ପାଇଁ ଆମ ଅସହାୟ ଜନସାଧାରଣଙ୍କୁ ସାହାଯ୍ୟ କରିବା ଦିଗରେ ମୁଁ ନିଜକୁ ନିବେଦନ କରିବି ।" ତାହାଙ୍କର ସେହି ସଙ୍କଳ୍ପରେ ଇସ୍ପାତ ପରି ଦୃଢ଼ତା ଥିଲା । ଇଂରାଜୀ ଭାଷାରେ ତାଙ୍କର ବାକ୍‌ପଟୁତା ଥିଲା ଏବଂ ଥିଲା ଯୁବକମାନଙ୍କର ଦିଗଦର୍ଶକ ରୂପେ ଦଣ୍ଡାୟମାନ ହେବାର ସାମର୍ଥ୍ୟ । ଭାରତକୁ ଫେରିବା ପରେ ପରେ ସର୍ବ ପ୍ରଥମେ 'ଦି ଇଣ୍ଡିଆନ୍ ଲିଗ୍' ଓ ତାଙ୍କରି ଭଳି ବ୍ରାହ୍ମ ସମାଜ ପରିବାରଭୁକ୍ତ ଆନନ୍ଦ ମୋହନ ବୋଷଙ୍କ ଦ୍ୱାରା ସଂଗଠିତ 'ଛାତ୍ର ସମାଜ'ରେ ସଭ୍ୟ ଭାବରେ ଯୋଗ ଦେଇଥିଲେ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଦ୍ୱାରା ମେଟ୍ରୋପଲିଟାନ୍ କଲେଜରେ ଇଂରାଜୀ ସାହିତ୍ୟର ଅଧ୍ୟାପକ ରୂପେ ସ୍ଥାପିତ ହେବା ଫଳରେ ଇଣ୍ଡିଆନ୍ ଏସୋସିଏସନ୍‌କୁ ଅବିଶ୍ୱାସ୍ୟ ରୂପେ ସ୍ୱଳ୍ପ ସମୟ ମଧ୍ୟରେ ସୁଦୃଢ଼ ଭାବେ ଗଠନ କରିବା ପାଇଁ ଯଥେଷ୍ଟ ସୁଯୋଗ ପାଇଥିଲେ । ସତେ ଯେମିତି ସେଇଥି ପାଇଁ ସମସ୍ତ ଉପାଦାନ ପ୍ରସ୍ତୁତ ହୋଇ ରହିଥିଲା । ଜମିଦାରମାନଙ୍କ ଦ୍ୱାରା ଗଠିତ ହୋଇଥିବା 'ଦି ବ୍ରିଟିଶ ଇଣ୍ଡିଆନ୍ ଏସୋସିଏସନ୍' ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକଳାପଗୁଡ଼ିକ କ୍ଷେତ୍ରରେ ଆପଣାର ପରିସୀମା ବୃଦ୍ଧି କରି ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର କ୍ରମବର୍ଦ୍ଧନଶୀଳ ଚାହିଦା ପରିପୂରଣ ଦିଗରେ ଅସମର୍ଥ ଥିଲା । ସୁରେନ୍ଦ୍ରନାଥ 'ଦି ବେଙ୍ଗଲୀ' ସମ୍ବାଦପତ୍ର ମଧ୍ୟ ଲାଭ କରିଥିଲେ ଏବଂ ଏହାକୁ ଜାତୀୟତାବାଦର ପ୍ରଚାର ପାଇଁ ମାଧ୍ୟମରୂପେ ବ୍ୟବହାର କରିଥିଲେ ।

ତାହାଙ୍କର ଦକ୍ଷ ସଂଗଠନ ଶକ୍ତି, ବ୍ୟକ୍ତିତ୍ୱ, ବାକ୍‌ପଟୁତା ତଥା ପୃଷ୍ଠଭୂମି ଯୋଗୁଁ ସୁରେନ୍ଦ୍ରନାଥ ଅତିଶୀଘ୍ର ଦେଶର ବୁଦ୍ଧିଜୀବୀ ମହଲରେ ନେତୃସ୍ଥାନୀୟ ହୋଇ ପାରିଥିଲେ । ଇଣ୍ଡିଆନ୍ ଏସୋସିଏସନ୍ ବାସ୍ତବିକ ଜାତୀୟ ଭାବଧାରାର ଅନୁସରଣ କରୁଥିଲା । ଏହାର ପ୍ରଥମ ସଭାପତି ଥିଲେ ଭାରତୀୟ ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟର କୃଷ୍ଣ ମୋହନ ବାନାର୍ଜୀ ଏବଂ ସମ୍ପାଦକ ଥିଲେ ଜଣେ ବ୍ରାହ୍ମଣ ସମାଜବାଦୀ ଆନନ୍ଦ ମୋହନ ବୋଷ । ସଂଗଠନର ମୁଖ୍ୟ ଉଦ୍ଦେଶ୍ୟଗୁଡ଼ିକ ମଧ୍ୟରେ ଥିଲା - ପ୍ରଥମତଃ - ଦେଶରେ ଦୃଢ଼ ଜନମତ ସୃଷ୍ଟି କରିବା, ଦ୍ୱିତୀୟତଃ - ଭାରତର ବିଭିନ୍ନ ଜାତି ତଥା ଜନଗଣଙ୍କ ମଧ୍ୟରେ ରାଜନୈତିକ ସ୍ୱାର୍ଥ ତଥା ଆଶା ଆକାଂକ୍ଷାକୁ ଭିତ୍ତି କରି ଐକ୍ୟ ସ୍ଥାପନ, ତୃତୀୟତଃ - ହିନ୍ଦୁ ଓ ମୁସଲମାନ ଜାତି ମଧ୍ୟରେ ଭ୍ରାତୃଭାବର ଅଭିବୃଦ୍ଧି, ଏବଂ ଚତୁର୍ଥତଃ - ସାମସମୟିକ ବୃହତ୍ତର ଜାତିବ ସାଧାରଣ ଆନ୍ଦୋଳନଗୁଡ଼ିକ ସହ-ଜନସାଧାରଣଙ୍କୁ ସାମିଲ କରିବା । ସଂଘ, ଭର୍ଣ୍ଣାକୁଲର୍ ପ୍ରେସ୍ ଆଇନ୍ ବିରୁଦ୍ଧରେ ଏକ ଦୃଢ଼ ଆନ୍ଦୋଳନ ସଂଗଠିତ କରାଇ ପାରିଥିଲା । ତାଙ୍କର ଶକ୍ତିମନ୍ତ ବାକ୍‌ପଟୁତା ବଳରେ ସୁରେନ୍ଦ୍ରନାଥ ଜନସାଧାରଣଙ୍କ ଆଦର୍ଶସ୍ଥାନୀୟ ହୋଇ ପାରିଥିଲେ ।

ତେବେ ବ୍ରିଟିଶ ଉଦାରପନ୍ଥୀ ରାଜନୈତିକ ଚିନ୍ତାଧାରାର ପକ୍ଷପାତୀ ଥିଲେ ସୁରେନ୍ଦ୍ରନାଥ । ସେ ସାମ୍ବିଧାନିକ ପଦ୍ଧତି ଅନୁକରଣ କରି ଆନ୍ଦୋଳନ କରିବାରେ ବିଶ୍ୱାସ କରୁଥିଲେ । ସେ ଏକ ସାମ୍ରାଜ୍ୟବାଦୀ ସରକାରଠାରୁ ଜନ ସମର୍ଥିତ ପ୍ରତିନିଧିଙ୍କ ଜରିଆରେ ରିହାତି ପାଇ ପାରିବେ ବୋଲି ମଧ୍ୟ ଦର୍ପର ସହିତ ଆଶା କରୁଥିଲେ । କ୍ରମାଗତଭାବେ ପରିସ୍ଥିତିର ଉନ୍ନତି କରିବା ତାଙ୍କର ପ୍ରତିରୂପ

କାର୍ଯ୍ୟ ଥିଲା । କର୍ମଜୀବନରେ ଭାରତୀୟମାନଙ୍କ ସହିତ ସେମାନଙ୍କ ସମାନତା ଭଳି ବ୍ରିଟିଶ ଉଦାରପନ୍ଥୀମାନଙ୍କ ମୌଳିକ ନିଷ୍ଠାପର ଚିନ୍ତାଧାରାରେ ସେ ବିଶ୍ୱାସୀ ଥିଲେ । କିନ୍ତୁ 'ପତ୍ରିକା'ର ସମ୍ପାଦକମାନେ ସେମାନଙ୍କ ଶାସକମାନଙ୍କୁ ଯଥାର୍ଥରୂପେ ବୁଝି ପାରିଥିଲେ । ସେମାନଙ୍କ ହୃଦ୍‌ବୋଧ ହୋଇଥିଲା ଯେ ସେମାନଙ୍କ ଦ୍ୱୀପସ୍ଥ ନିବାସ ସ୍ଥଳୀରେ ଥିବା ବ୍ରିଟିଶମାନଙ୍କ ରୁଚି ଅନୁଯାୟୀ ସେମାନଙ୍କୁ ଫଳ ରସ ଯୋଗାଇ ଦେବା ଲାଗି ଉଦ୍ଦିଷ୍ଟ ଗୋଟିଏ ବିଦେଶୀ ସରକାରକୁ କେବଳ "ଗୋଟିଏ ସୁନ୍ଦର ପାତ୍ରରେ ଅର୍ପିତ ହୋଇଥିବା ଦାବୀ ପତ୍ର କିମ୍ବା ଆବେଦନ ପତ୍ର" ଦ୍ୱାରା ଦେଶ ଛାଡ଼ି ଚାଲିଯିବା ପାଇଁ ବାଧ୍ୟ କରାଯାଇ ପାରିବ ନାହିଁ । ସେଥିପାଇଁ ସଂଘବଦ୍ଧ କାର୍ଯ୍ୟକଳାପଦ୍ୱାରା ସେମାନଙ୍କ ଶାସନକୁ ଅସମ୍ଭବ କରାଇବାକୁ ହେବ । କାରଣ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ସାର୍. ଏ. ମେକାନ୍‌ଜେ (Sir A. Meckenzie) ସ୍ପଷ୍ଟଭାବେ ପ୍ରକାଶ କରିଥିଲେ : "ପ୍ରତ୍ୟେକ ସରକାର, ବିଶେଷ କରି ଗୋଟିଏ ବିଦେଶୀ ସରକାରର ପ୍ରଥମ କାର୍ଯ୍ୟ ହେଉଛି ଆତ୍ମ ସଂରକ୍ଷଣଶୀଳତା ।" ତେଣୁ କୌଣସି ସରକାରୀ କାର୍ଯ୍ୟକଳାପରେ ମୌଳିକ ଆଦର୍ଶଗତ ଉଦ୍ଦେଶ୍ୟ ରହି ନପାରେ । ଜନସାଧାରଣ ସେମାନଙ୍କର ଅଧିକାରସବୁ ବଳ ପ୍ରୟୋଗ କରି ପ୍ରତିପାଦିତ କରିବାକୁ ହେବ । ଆପଣାର ଯୌବନାବସ୍ଥାରେ ହୋଇଥିବା ନୀଳ ଆନ୍ଦୋଳନର ନଜିର ଘୋଷ ଭାଇମାନେ ଦେଖି ପାରିଥିଲେ । ସୁରେନ୍ଦ୍ରନାଥ ଓ ମୋତିଲାଲଙ୍କ ଦୃଷ୍ଟିକୋଣ ମଧ୍ୟରେ ଥିବା ଏହି ମୌଳିକ ପାର୍ଥକ୍ୟ ପରକାଳରେ ଜାତୀୟତାବାଦୀ ଆନ୍ଦୋଳନର ବିକାଶ ସହିତ ଆପେ ଆପେ ସ୍ପଷ୍ଟରୂପେ ପ୍ରକାଶ ପାଇ ଯାଇଥିଲା । ଶିଶିର କୁମାର କ୍ରମେ କ୍ରମେ ସାଧାରଣ ଜନଜୀବନ କ୍ଷେତ୍ରରୁ ନିଜକୁ ନିଜେ ପ୍ରତ୍ୟାହାର କରିନେଇ ସେହି ଅଲୌକିକ ବିଜ୍ଞାନ (ପ୍ରେତତତ୍ତ୍ୱ)ରେ ମନୋନିବେଶ କରିଥିଲେ ।

ବ୍ରିଟେନର ସାଧାରଣ ନିର୍ବାଚନରେ ଟୋରି (Tory) ଦଳର ପରାଜୟ ଘଟିଥିବା ଯୋଗୁଁ 1880 ମସିହାରେ ଭାଇସରୟ ହିସାବରେ ଲର୍ଡ ଲିଟନଙ୍କ କାର୍ଯ୍ୟକାଳ ପୂରି ଯାଇଥିଲା । ଉଦାରପନ୍ଥୀ ଦଳର ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍, ଭାଇସରୟ ରୂପେ ଲର୍ଡ ଲିଟନ୍‌ଙ୍କ ସ୍ଥାନରେ ଲର୍ଡ ରିପନ୍‌ଙ୍କୁ ନିଯୁକ୍ତ କରିଥିଲେ । ତାଙ୍କର ପ୍ରାଥମିକ କାର୍ଯ୍ୟକଳାପଗୁଡ଼ିକ ମଧ୍ୟରେ ଥିଲା 1881 ମସିହା ଡିସେମ୍ବର ମାସରେ ଭର୍ଣ୍ଣାକୁଲାର୍ ପ୍ରେସ୍ ଆଇନ୍‌କୁ ପ୍ରତ୍ୟାହାର କରିନେବା । ସୁରେନ୍ଦ୍ରନାଥଙ୍କ ଜନପ୍ରିୟତା ପର୍ବତ ଶିଖରରେ ପହଞ୍ଚି ପାରିଥିଲା ଏବଂ ସାର୍ ଏସ୍‌ଲେ ଏଡ଼ନ୍‌ଙ୍କ ପ୍ରତ୍ୟାବର୍ତ୍ତନ ବେଳେ ତାଙ୍କୁ ବିଦାୟକାଳୀନ ସାଧାରଣ ସମ୍ବର୍ଦ୍ଧନା ମଧ୍ୟ ଦିଆ ଯାଇଥିଲା ।

ଇତି ମଧ୍ୟରେ ଘୋଷ ଭାଇମାନେ ବଙ୍ଗଳା ଭାଷାରେ 'ଆନନ୍ଦ ବଜାର ପତ୍ରିକା' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର 1878 ମସିହାରୁ ପ୍ରକାଶନ ଆରମ୍ଭ କରିଥିଲେ । ମୁଖ୍ୟତଃ ତାହା ଏକ ଧର୍ମ-ଭିତ୍ତିକ ସମ୍ବାଦପତ୍ର ଥିଲା । ପତ୍ରିକାଟି 1922 ମସିହାରେ ଏକ ଜାତୀୟବାଦୀ ଦୈନିକ ରୂପେ ସୁରେଶଚନ୍ଦ୍ର ମଜୁମଦାର୍ ଏବଂ ପ୍ରଫୁଲ କୁମାର ସରକାରଙ୍କ ପରିଚାଳନାରେ ଆତ୍ମପ୍ରକାଶ କରିଥିଲା ଏବଂ କ୍ରମାଗତ ଭାବେ ଆପଣାର ପ୍ରତିଷ୍ଠା ବୃଦ୍ଧି କରିଥିଲା ।

# ପାଞ୍ଚ : ବିଶ୍ୱାସକାରୀ ପାଇଁ ଶିକ୍ଷା

ଲର୍ଡ ରିପନ୍ ଥିଲେ ଜଣେ ବେଶ ସମଝଦାର ଲୋକ । ସେ ମହାରାଣୀଙ୍କ ଭାରତୀୟ ପ୍ରଜାଗଣଙ୍କର ମଙ୍ଗଳ କାମନା କରୁଥିଲେ । ମ୍ୟୁନିସିପାଲିଟି ଏବଂ ଜିଲ୍ଲାମାନଙ୍କରେ ସ୍ୱାୟତ୍ତ ଶାସନର ପ୍ରଚଳନ କରାଇ ଥିବା ଯୋଗୁଁ ଇତିହାସରେ ସେ ସ୍ମରଣୀୟ । ଯଦିଚ ସେହି ଭଳି ପଦକ୍ଷେପ "କେବଳ ଶାସନଗତ ପରିଚାଳନାର ଦକ୍ଷତା ବୃଦ୍ଧି ପାଇଁ" ନିଆ ଯାଇ ନଥିଲା, ତାହା ଥିଲା "ମୁଖ୍ୟତଃ ରାଜନୈତିକ ତଥା ସାଧାରଣ ଶିକ୍ଷାର ଏକ ମାଧ୍ୟମରୂପେ ଆବଶ୍ୟକତା ପୂରଣ ପାଇଁ ।" ସେହି କାରଣରୁ ଅଧିକାଂଶ ନିର୍ବାଚିତ ସଭ୍ୟଙ୍କୁ ନେଇ ଜିଲ୍ଲା ବୋର୍ଡମାନ ଗଠନ କରାଯାଇଥିଲା । ଜିଲ୍ଲାର କାର୍ଯ୍ୟ ନିର୍ବାହ ଦାୟିତ୍ୱ ଚେୟାରମ୍ୟାନଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ସେ ଥିଲେ ସେହି ଜିଲ୍ଲାର ସରକାରୀ କାର୍ଯ୍ୟ ନିର୍ବାହୀ ଅଫିସର । ରାସ୍ତାଘାଟ, ଶିକ୍ଷା (ପ୍ରାଇମେରୀ ଏବଂ ମଧ୍ୟ ଇଂରାଜୀ), ଚିକିତ୍ସା ଏବଂ କେତେକ ଫେରୀ ଘାଟର ଦାୟିତ୍ୱ ଜିଲ୍ଲା ବୋର୍ଡକୁ ଦିଆଯାଇଥିଲା । ସେହିଭଳି ସ୍ଥାନୀୟ ବୋର୍ଡମାନ ଗଠନ କରାଯାଇଥିଲା ଏବଂ ସେଗୁଡ଼ିକୁ ଜିଲ୍ଲା ବୋର୍ଡ ଅଧୀନରେ ରଖା ଯାଇଥିଲା । ମ୍ୟୁନିସିପାଲିଟି ସହରଗୁଡ଼ିକରେ ଅଧିକାଂଶ ସଭ୍ୟ ନିର୍ବାଚିତ ହୋଇ ଆସୁଥିଲେ ଏବଂ ସୁପ୍ରତିଷ୍ଠିତ ମ୍ୟୁନିସିପାଲିଟିଗୁଡ଼ିକୁ ଅଣକାର୍ଯ୍ୟକାରୀ ଚେୟାରମ୍ୟାନ ନିର୍ବାଚିତ କରିବା ପାଇଁ ମଧ୍ୟ ଅନୁମତି ଦିଆ ଯାଇଥିଲା । ପୁଣି ସେ ଗୋଟିଏ ଭାରତୀୟ ଶିକ୍ଷା କମିଶନ୍ ବସାଇଥିଲେ ଏବଂ ତା'ର ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ ମଧ୍ୟ କରାଇ ଥିଲେ ।

ଶାସନ ଦାୟିତ୍ୱରେ ଥିବା ଶାସକଙ୍କ ନିଷ୍ଠାପର ମନୋବୃତ୍ତିର ଅଭାବ ଯୋଗୁଁ ବିଦେଶୀ ଶାସନ ଭାରତରେ ମଙ୍ଗଳଦାୟକ ହୋଇପାରିବ ନାହିଁ ବୋଲି ଦୃଢ଼ ମତ ପୋଷଣ କରୁଥିବା 'ପତ୍ରିକା' ନିଜର ସ୍ଥିତିକୁ ଦୃଢ ରଖି ପାରିଥିବା ଯୋଗୁଁ ରିପନ୍‌ଙ୍କ ସ୍ୱର୍ଣ୍ଣୀଭ ପରାଜୟ ମଧ୍ୟ ସ୍ମରଣଯୋଗ୍ୟ । ସ୍ମରଣ କରାଯାଇ ପାରେ ଯେ ମୁଖବନ୍ଧରେ କୁହାଯାଇଥିବା 1849 ମସିହାର କଳା ଆଇନ୍ ବିବାଦ ଭାରତୀୟ ଓ ଭାରତରେ ଥିବା ଇଂରେଜ ଲୋକଙ୍କ ମଧ୍ୟରେ ଅନେକଗୁଡ଼ିଏ ତିକ୍ତତାମୂଳକ ପ୍ରତିକ୍ରିୟା ସୃଷ୍ଟି କରିଥିଲା । 1882 ମସିହାରେ ରିପନ୍ ଇଉରୋପୀୟମାନଙ୍କର କେତେକ ସୁବିଧା ଯଥା ସେମାନେ କେବଳ ବ୍ରିଟିଶ ଅଫିସର ଥିବା କଚେରୀଗୁଡ଼ିକରେ ବିଚାରର ସମ୍ମୁଖୀନ ହେବା ସୁଯୋଗର ଉଚ୍ଛେଦ କରିବା ପାଇଁ ମନସ୍ଥ କରିଥିଲେ । ପୁଣି କାଉନସିଲରେ ଆଇନ୍ ସଭ୍ୟ ଥିବା ସି. ପି. ଆଇବେର୍ଟଙ୍କଦ୍ୱାରା ଆଗତ କରାଯାଇଥିବା କ୍ରିମିନାଲ୍ ପ୍ରୋସିଜିଓର କୋର୍ଡର ସଂଶୋଧନ ପ୍ରସ୍ତାବକୁ ମଧ୍ୟ ଗୋଟିଏ ବିଲ୍ ମାଧ୍ୟମରେ ଗ୍ରହଣ କରିବା ପାଇଁ ଇଚ୍ଛା କରିଥଲେ । ଭାରତୀୟ ଜନମତ ସେ ବିଲ୍‌କୁ ସମର୍ଥନ

ଜଣାଇଥିବା ବେଳେ ସମଗ୍ର ଇଉରୋପୀୟ ଜାତି ଅତି ଉଗ୍ର ଭାବରେ ତାହାର ବିରୋଧ କରିଥିଲା । ସେମାନଙ୍କ ଆନ୍ଦୋଳନ ମିଃ ବ୍ରାନ୍‌ସନ୍ (Mr. Branson) ନାମକ ଜଣେ ବାରିଷ୍ଟରଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା ଓ ସେ ଇଉରୋପୀୟମାନଙ୍କ ଏକ ସମ୍ମିଳନୀର ଆୟୋଜନ କରିଥିଲେ । ସେହି ବିଲକୁ ବିରୋଧ କରି ସେଠାରେ ଏକ ପ୍ରସ୍ତାବ ଗ୍ରହଣ କରା ଯାଇଥିଲା । ସେହି ପ୍ରସ୍ତାବରେ କୁହାଯାଇଥିଲା :

"ଇଉରୋପୀୟ ବ୍ରିଟିଶ ଅଧିକାରୀମାନଙ୍କର ଅତି ଗୁରୁତ୍ୱପୂର୍ଣ୍ଣ, ଉପଯୋଗୀ ତଥା ସମୟୋପଯୋଗୀ ବିଶେଷ ଅଧିକାରଟିଏ ବାତିଲ ହେଉଥିବା ବେଳେ ଏହା ଦେଶୀୟ ଜନସାଧାରଣଙ୍କ ପାଇଁ କୌଣସି ସୁବିଧା ପ୍ରଦାନ କରୁନାହିଁ; ଇଉରୋପୀୟ ବ୍ରିଟିଶ ନାଗରିକମାନଙ୍କର ଅଧିକାରକୁ ବିପନ୍ନ କରାଯାଉଥିବା ବେଳେ ଏହା କୌଣସି ଦୃଷ୍ଟିରୁ ଦେଶୀୟ ଲୋକଙ୍କୁ ସୁରକ୍ଷା ଦେଇ ପାରୁ ନାହିଁ । ଏହା ଫଳରେ ମଫସଲଗୁଡ଼ିକରେ ନିଯୁକ୍ତି ପାଇଥିବା ଇଉରୋପୀୟ ବ୍ରିଟିଶ ନାଗରିକମାନଙ୍କର ନିଜର ତଥା ସେମାନଙ୍କ ସ୍ତ୍ରୀ-କନ୍ୟାମାନଙ୍କର ଅଧିକାରଗୁଡ଼ିକର ନିରାପତ୍ତା ପ୍ରତି ବିପଦ ଜନିତ ଆଶଙ୍କା ଯୋଗୁଁ ଏଦେଶରେ ବ୍ରିଟିଶ ପୁଞ୍ଜିର ବିନିଯୋଗ ସଙ୍କଟଜନକ ହେବ । ଏହା ବର୍ତ୍ତମାନ ଉଭୟ ଗୋଷ୍ଠୀ ମଧ୍ୟରେ 1857 ମସିହାର ବିଦ୍ରୋହ ପରଠାରୁ କ୍ରମାନ୍ୱୟରେ ଦେଖାଦେଇ ନଥିବା ଜାତିଗତ ପ୍ରତିଦ୍ୱନ୍ଦ୍ୱୀ ଭାବ ଏବଂ ପରସ୍ପର ପ୍ରତି ଈର୍ଷା ପ୍ରବଣତା ସୃଷ୍ଟି କରି ସାରିଲାଣି ।"

ରିପନ୍ ସେ ସବୁରେ ବଶୀଭୂତ ହେବାର ଲୋକ ନଥିଲେ । ଇଉରୋପୀୟ ସମାଜର କୋଳାହଳ ବୃଦ୍ଧି ପାଇଥିଲା । 1883 ମସିହାର ଶେଷ ବେଳକୁ ସେମାନଙ୍କ ଅସନ୍ତୋଷ ଏପରି ଶୀର୍ଷ ଅବସ୍ଥାରେ ପହଞ୍ଚିଥିଲା ଯେ ଥରେ ଦାର୍ଜିଲିଂରୁ ଫେରିବା ରାସ୍ତାରେ ଭାଇସରୟଙ୍କ ଗୃହର ଦ୍ୱାର ନିକଟରେ ଏବଂ ରେଳ ଷ୍ଟେସନରେ ରିପନଙ୍କୁ ଅବଜ୍ଞାସୂଚକଭାବେ ପରିହାସ କରି ଥଟ୍ଟା ତାମସା କରାଯାଇଥିଲା । ପରମାନନ୍ଦ ଦତ୍ତ ଲେଖିଛନ୍ତି (ପୂର୍ବୋକ୍ତ ପୁସ୍ତକରେ) : "କହିବାକୁ ଗଲେ କେତେକ ଲୋହିତ ଭାରତୀୟ (ଭାରତରେ ରହିଥିବା ବ୍ରିଟେନ୍‌ର ଅଧିବାସୀଗଣ) ଗୋଟିଏ ଷଡ଼ଯନ୍ତ୍ର ରଚନା କରିଥିଲେ । ସେହି ଅନୁସାରେ ସେମାନେ ଯୋଜନା କରିଥିଲେ ଯେ ଯଦି ସରକାର ସେହି ପ୍ରସ୍ତାବିତ ଆଇନ୍ କାନୁନ୍ ସପକ୍ଷରେ ଅଟଳ ରହନ୍ତି ତାହେଲେ ସରକାରୀ ବାସ ଭବନର ଜଗୁଆଳିମାନଙ୍କୁ ନିରସ୍ତ୍ର କରି ଭାଇସରୟଙ୍କୁ ଚନ୍ଦପାଳ ଘାଟଠାରେ ଜାହାଜରେ ବସାଇ ଶୁଭେଚ୍ଛାର ଅନ୍ତରାୟ ମଧ୍ୟ ଦେଇ ଇଂଲଣ୍ଡ ପଠାଇ ଦେବେ ।" ପରିଣାମତଃ ବ୍ରିଟିଶଦ୍ୱାରା ବିନିଯୁକ୍ତମାନଙ୍କୁ ଭୟ ପ୍ରଦର୍ଶନ କରାଯାଉଥିବା ଯଥାର୍ଥ ଭାବେ ଅନୁଭବ କରି ଲଣ୍ଡନର ସର୍ବୋଚ୍ଚ ସରକାର ସେଥିରେ ହସ୍ତକ୍ଷେପ କରିଥିଲେ । ଯଦିଓ ମୁକ୍ତ କଣ୍ଠରେ ସ୍ୱୀକାର କରିନ ନଥିଲେ ଏବଂ ବାସ୍ତବିକ କାର୍ଯ୍ୟକ୍ଷେତ୍ରରେ ତାହା ପ୍ରତିଫଳିତ ହୋଇ ନଥିଲା ତଥାପି ସେହି ବିବାଦ ଶେଷ ହୋଇଥିଲା । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ସେସନସ୍ ଜଜମାନଙ୍କୁ କେବଳ ନିୟମ ପାଳନ କରିବା ପାଇଁ ନାମକୁ ମାତ୍ର ସେହି କ୍ଷମତା ସେମାନଙ୍କ ପରିସରଭୁକ୍ତ କରାଯାଇ ସେହି ପଦକ୍ଷେପକୁ ପରିତ୍ୟାଗ କରା ଯାଇଥିଲା । ଅତି ସ୍ୱଳ୍ପସଂଖ୍ୟକ ଭାରତୀୟଙ୍କୁ ବାଦ୍ ଦେଲେ ସେହିସବୁ ପଦବୀଗୁଡ଼ିକ ସେତେବେଳେ ବ୍ରିଟିଶ ରାଜକର୍ମଚାରୀମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ବସ୍ତୁତଃ

ତତ୍ ପରବର୍ତ୍ତୀ ପ୍ରଣୀତ ଆଇନ୍, ଅପରାଧୀ ଅଭିଯୁକ୍ତ ଇଉରୋପୀୟ୍ ବ୍ରିଟିଶ୍ ନାଗରିକମାନଙ୍କର ସୁବିଧା ସୁଯୋଗ ସବୁ କ୍ଷୁଣ୍ଣ କରିବା ପରିବର୍ତ୍ତେ ବୃଦ୍ଧି କରିଥିଲା ଏବଂ ସେମାନଙ୍କ ସ୍ଥାନ ପୂର୍ବବତ୍ ଅସାଧାରଣ ରହିଥିଲା ।

ଇଲବର୍ଟ ବିଲ୍‌ର ପରିଣାମ ସେହି ଭାରତୀୟ୍‌ମାନଙ୍କୁ ଦାରୁଣଭାବେ ହତୋତ୍ସାହ କରି ଦେଇଥିଲା, ଯେଉଁମାନେ ଆଇନ୍ ଆଗରେ ସମସ୍ତଙ୍କର ସମାନତାର ଉଷା କାଳ ଆଶା କରିଥିଲେ । କିନ୍ତୁ ମୋତିଲାଲ ଏବଂ 'ପତ୍ରିକା' ଏଥିରୁ ନୈତିକତାର ଏହି ଚିତ୍ର ଅଙ୍କନ କରି ପାରିଥିଲେ ଯେ ଭାରତରେ ଥିବା ଇଉରୋପୀୟ୍‌ମାନେ  ମହାରାଣୀଙ୍କ ପ୍ରତି ଆନୁଗତ୍ୟ ଦେଖାଇବାରେ ସେତେ ନିଷ୍ଠାପର ନୁହନ୍ତି ଯେତେ ସେମାନେ ଭାରତୀୟ୍‌ମାନଙ୍କଠାରୁ ଆଶା କରନ୍ତି । ଇଉରୋପୀୟ୍ ସମର୍ଥକମାନେ ଭାରତୀୟ୍ ଜାତୀୟ୍‌ବାଦୀମାନଙ୍କ ପ୍ରତିବାଦମୂଳକ କାର୍ଯ୍ୟକଳାପଗୁଡ଼ିକୁ ସମାଲୋଚନା କଲାବେଳେ, ମୋତିଲାଲ ଇଉରୋପୀୟ୍‌ମାନଙ୍କ ଚରିତ୍ର ପ୍ରତି ମର୍ମଭେଦୀ ଆକ୍ଷେପ କରୁଥିଲେ । କସ୍ମିନ୍‌କାଳେ ସେ ତାଙ୍କର ଉଦ୍‌ଘୋଷଣ ବନ୍ଦ କରି ନଥିଲେ ଯେ ଇଉରୋପୀୟ୍‌ମାନେ ଭାରତୀୟ୍‌ମାନଙ୍କୁ ଶୋଷଣ କରିବା ସଙ୍ଗେ ସଙ୍ଗେ ଦମନ କରିବା ପାଇଁ ଭାରତରେ ଥିଲେ ଏବଂ ସେହି କାରଣରୁ ସେମାନେ ସେମାନଙ୍କର ଅସ୍ତ୍ରଦ୍ୱାରା ହିଁ ଆଘାତପ୍ରାପ୍ତ ହେବା ଉଚିତ । ଅତୀବ ଆଶ୍ଚର୍ଯ୍ୟର ବିଷୟ୍ ଯେ ଯଦିଓ ସେ "ଭୟଙ୍କରଭାବେ ନିନ୍ଦା ଓ ଅପମାନର ପ୍ରବଳ ସ୍ରୋତ" ବୁହାଇ ଲେଖୁଥିଲେ ଏବଂ "ଇଉରୋପୀୟ୍ ଗୋଷ୍ଠୀଙ୍କ ବିରୁଦ୍ଧରେ ଅତ୍ୟନ୍ତ ଅସଦିଚ୍ଛା ପ୍ରକାଶ କରି ଅପମାନସୂଚକ ଭାଷା ବ୍ୟବହାର କରୁଥିଲେ" ତଥାପି ସେ "ଅତି ଉଦାରଭାବେ ସ୍ମିତହାସ୍ୟ ସହିତ" ତାହା ସମ୍ପାଦନ କରୁଥିଲେ । ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ରଖିବା ଲାଗି ଆସୁଥିବା ଇଉରୋପୀୟ୍‌ମାନେ ତାଙ୍କର କାର୍ଯ୍ୟ କ୍ଷେତ୍ରରେ ନିଷ୍ଠାପରତା ତଥା ଉତ୍ତମ ଭଦ୍ରୋଚିତ ବ୍ୟବହାର ପାଇଁ ତାଙ୍କୁ ସମ୍ମାନ ଜଣାଇ ଆସୁଥିଲେ ।

କଲିକତା ହାଇକୋର୍ଟର ଅବମାନନା ଅଭିଯୋଗରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ଦୁଇ ମାସ କାରାଦଣ୍ଡ ଯୋଗୁଁ ଇଲବର୍ଟ ବିଲ୍ ବିବାଦ ଜନଗଣଙ୍କ ମନରେ ଆହୁରି ଅଧିକ ତୀବ୍ର ହୋଇଥିଲା । 'ଦି ବେଙ୍ଗଲୀ' ପତ୍ରିକାରେ ଗୋଟିଏ ପ୍ରବନ୍ଧରେ ଜଷ୍ଟିସ୍ ନୋରିସ୍‌ଙ୍କୁ କଟୁ ଆକ୍ଷେପ କରି ସେ ଲେଖିଥିଲେ ଯେ ଶାଳଗ୍ରାମ ପ୍ରତିମାକୁ କଚେରୀରେ ଉପସ୍ଥିତ କରାଇ ତାହାର ଚିହ୍ନଟ କରାଇ ଦେବା ପାଇଁ ଆଦେଶ ଦେଇଥିବାରୁ ସେ ଜଣେ ଜଜ୍-ହେବା ପାଇଁ ଅନୁପଯୁକ୍ତ । ସେଥିପାଇଁ ସମଗ୍ର ହିନ୍ଦୁ ଜାତିର ମତାମତ ଆକ୍ରମଣାତ୍ମକ ହୋଇ ଉଠିଥିଲା ଏବଂ ପୁଣି ଥରେ ସୁରେନ୍ଦ୍ରନାଥ ଜନଗଣଙ୍କଦ୍ୱାରା ପ୍ରଶଂସାର ତରଙ୍ଗାୟିତ ଲହରିରେ ଶୀର୍ଷ ସ୍ଥାନକୁ ଉଠି ଯାଇଥିଲେ । ସେ ମୁକ୍ତି ପାଇବା ପରେ ପରେ 1883 ମସିହା ଡିସେମ୍ବର ମାସରେ କଲିକତାରେ ଏକ ଅଖିଳ ଭାରତୀୟ୍ ସମ୍ମିଳନୀ ପାଇଁ ଇଣ୍ଡିଆନ୍ ଏସୋସିଏସନ୍ ତରଫରୁ ଆହ୍ୱାନ ଦେଇଥିଲେ । ଭାରତର ଏକ ଶୁଭାକାଂକ୍ଷୀ ବନ୍ଧୁ ଡବ୍ଲ୍ୟୁ. ଏସ୍. ବ୍ଲଣ୍ଟ (W.S. Blunt) ଲକ୍ଷ୍ୟ କରିଥିଲେ  ଯେ ଏହା ଜାତୀୟ୍ ପାର୍ଲାମେଣ୍ଟ ପାଇଁ ଥିଲା ପ୍ରଥମ ସୋପାନ । ତା'ର ବହୁ ପୂର୍ବରୁ 1870 ମସିହାରେ ଶିଶିର କୁମାର ଜାତୀୟ୍ ପାର୍ଲାମେଣ୍ଟ ପାଇଁ ପ୍ରସ୍ତାବ ଦେଇ ସାରିଥିଲେ । 1885

ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହେବାପରେ ଏହା ସହିତ ସେହି ଜାତୀୟ ସମ୍ମିଳନୀଟି ସମ୍ପୂର୍ଣ୍ଣ ସମ୍ମିଶ୍ରିତ ହୋଇ ଯାଇଥିଲା ।

•

'ପତ୍ରିକା' ଏହି ସବୁ ପଦକ୍ଷେପଗୁଡ଼ିକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ପୂର୍ବପରି ସରକାରଙ୍କୁ ମଧ୍ୟ ସମାଲୋଚନା କରି ଆସୁଥିଲେ । ମଧ୍ୟ ଭାରତରେ (Central India) ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟ ସାର୍ ଲେପଲ ଗ୍ରୀଫନ୍ (Sir Lepal Griffen)ଦେଶୀୟ ରାଜ୍ୟ ଭୋପାଳର ଶାସନ ପରିଚାଳନା କ୍ଷେତ୍ରରେ ସୃଷ୍ଟି କରିଥିବା ଅନିଷ୍ଟକର ଖଳ ପ୍ରକୃତିକୁ 1884 ମସିହାରେ ଏହା ଲୋକ ଲୋଚନକୁ ଆଣି ପାରିଥିଲା । ସେହି ଉଦ୍‌ଘାଟନ ସତ୍ୟ ପ୍ରମାଣିତ ହେବାପରେ ସାର୍ ଲେପଲଙ୍କୁ ଇସ୍ତଫା ଦେଇ ଚାକିରୀରୁ ଅବସର ଗ୍ରହଣ କରିବାକୁ ହୋଇଥିଲା ।

1889 ମସିହାରେ 'ପତ୍ରିକା' ସରକାରୀ ବୈଦେଶିକ ମନ୍ତ୍ରଣାଳୟର ଗୁପ୍ତ ଦଲିଲ ସମ୍ପର୍କୀତ ମହତ୍ତ୍ୱପୂର୍ଣ୍ଣ ଆଉ ଗୋଟିଏ ଆଗୁଆ ସମ୍ବାଦ ପ୍ରଥମେ ପ୍ରକାଶ କରିଥିଲା । ସେଥିରେ ଦର୍ଶାଇ ଦିଆ ଯାଇଥିଲା ଯେ କାଶ୍ମୀରର ମହାରାଜା "ଆପଣା ଆପେ ଇସ୍ତଫା ଦେଇ ଥିବା କାରଣରୁ କିମ୍ବା ଜନଗଣଙ୍କୁ ଦମନ କରିବା ଯୋଗୁଁ ନୁହେଁ, ବରଂ ବ୍ରିଟିଶ ସରକାରଙ୍କ ସାମରିକ ଦୃଷ୍ଟିକୋଣରୁ ଆବଶ୍ୟକ ହେଉଥିବା ଗିଲିଗିଟ୍ ପାଇଁ" ସିଂହାସନଚ୍ୟୁତ ହୋଇଛନ୍ତି । ଗୋଟିଏ ଅତି ଗୋପନୀୟ ଦଲିଲ୍ର ସାଧାରଣରେ ପ୍ରକାଶ ପାଇଯାଇଥିବା ଯୋଗୁଁ ପ୍ରବଳ ହଇଚଇ ସୃଷ୍ଟି ହୋଇଥିଲା । ପରିଶେଷରେ ମହାରାଜା ତାଙ୍କର ଶାସନଗାଦି ଫେରି ପାଇଥିଲେ ଏବଂ 'ପତ୍ରିକା' ମଧ୍ୟ ଅକ୍ଷତ ଅବସ୍ଥାରେ ନିସ୍ତାର ପାଇଯାଇଥିଲା । କାରଣ ଗୁପ୍ତ ତଥ୍ୟ ପ୍ରକାଶନ ପାଇଁ ଦଣ୍ଡିତ କରାଯିବାଲାଗି ସେତେବେଳ ସୁଦ୍ଧା କୌଣସି ଆଇନ୍ ହୋଇ ନଥିଲା । ତେଣୁ ବିଦ୍ରୋହାତ୍ମକ ମନୋଭାବାପନ୍ନ ସମ୍ବାଦପତ୍ରଗୁଡ଼ିକୁ ଆହୁରି ଅଧିକ ଗୁପ୍ତ ତଥ୍ୟ ପ୍ରକାଶ କରି କ୍ଷତି କରିବା ଭଳି କାର୍ଯ୍ୟକଳାପରୁ ନିବୃତ୍ତ କରିବା ପାଇଁ ତରବରିଆ ଭାବେ ସେଭଳି ଏକ ଆଇନ୍ ପାସ୍ କରାଯାଇଥିଲା । ସେହିଭଳି, ମୁହଁ ବନ୍ଦ କରାଇବା ଆଇନ୍ ସରକାରଙ୍କ ଅଭିଳାଷ ସ୍ପଷ୍ଟ କରାଇ ଦେଇଥିଲା ଏବଂ ସେଥିପ୍ରତି ଜନସାଧାରଣଙ୍କ ଅବିଶ୍ୱାସର ମାତ୍ରା ଆହୁରି ଅଧିକ ବୃଦ୍ଧି କରିଥିଲା ଯାହାକୁ ସରକାରୀ କର୍ମକର୍ତ୍ତାମାନେ ଖାତିର କରି ନଥିଲେ । ତେବେ 'କ୍ଷୁଦ୍ରପକ୍ଷୀ'ମାନେ ବାଗ୍‌ବଜାରରେ ଗୁପ୍ତ ତଥ୍ୟସବୁକୁ ନେଇ ପୂର୍ବବତ୍ ଗୁଜରଣ ସୃଷ୍ଟି କରି ଚାଲିଥିଲେ ।

•

ବଙ୍ଗଳାରେ ଶୀର୍ଷସ୍ଥାନ ଅଧିକାର କରିବା ଲାଗି 'ପତ୍ରିକା' ଓ 'ଦି ବେଙ୍ଗଲୀ' ପ୍ରତିଦ୍ୱନ୍ଦିତା କରୁଥିବା ବେଳେ ଦେଶୀୟ ଭାଷାରେ ପ୍ରକାଶ ପାଉଥିବା ସମ୍ବାଦପତ୍ରଗୁଡ଼ିକ ଭାରତୀୟ ଜାତୀୟତାବାଦ ପ୍ରଚାର କରିବା ଦିଗରେ ଆଗେଇ ଆସିଥିଲେ । ବଙ୍ଗଳା ଭାଷାରେ ପ୍ରକାଶ ପାଉଥିବା ସମ୍ବାଦପତ୍ରଗୁଡ଼ିକ ମଧ୍ୟରେ ସୁନାମଧନ୍ୟ ଥିଲେ ରକ୍ଷଣଶୀଳ ହିନ୍ଦୁ ମତବାଦ ପୋଷଣକାରୀ 'ବଙ୍ଗବାସୀ' (1881), ବ୍ରାହ୍ମ ସମାଜବାଦ ସମର୍ଥକ 'ସଞ୍ଜୀବନୀ' (1883) ଏବଂ ହିନ୍ଦୁ ସଂସ୍କାରମୂଳକ 'ହିତବାଦୀ' (1891) ।

ମହାରାଷ୍ଟ୍ରରୁ ପ୍ରକାଶ ପାଉଥିଲା 'ଇନ୍ଦୁପ୍ରକାଶ', 'ମରହଟ୍ଟା', 'କେଶରୀ' ଏବଂ 'କାଲ୍'। ବମ୍ବେରୁ 'ବମ୍ବେ ସମାଚାର', 'ଜା ସ - - ଇ-ଜାମ୍‌ସେଦ୍' ଏବଂ 'ରାସ୍ତ ଗୁଫତାର' ପ୍ରକାଶ ପାଉଥିବା ବେଳେ ମାନ୍ଦ୍ରାଜରୁ 'ଦି ହିନ୍ଦୁ' ଏବଂ 'ସ୍ୱଦେଶ ମିତ୍ରନ୍' ତଥା ଉତ୍ତର ଭାରତରୁ ପ୍ରକାଶ ପାଉଥିଲା 'ଦି ଟ୍ରିବ୍ୟୁନ୍'। 1890 ମସିହାରେ କେଶରୀ ଓ ମରାଠାର ସମ୍ପାଦକ ହୋଇଥିବା ବାଳ ଗଙ୍ଗାଧର ତିଳକ ଶିଶିର କୁମାରଙ୍କୁ ତାଙ୍କର ଗୁରୁ ରୂପେ ସ୍ୱୀକାର କରିଥିଲେ। 1917 ମସିହାରେ ତିଳକ ଲେଖିଥିଲେ, "ମୁଁ ତାଙ୍କୁ ମୋର ପିତୃତୁଲ୍ୟ ସମ୍ମାନ କରୁଥିଲି ଏବଂ ମୁଁ ପୁଣି ଥରେ କହିବାକୁ ସାହସ କରିପାରେ ଯେ ତାରି ପ୍ରତିବଦଳରେ ସେ ମୋତେ ତାଙ୍କର ପୁଅଭଳି ସ୍ନେହ କରୁଥିଲେ।"

ବ୍ରିଟିଶ ରାଜକର୍ମଚାରୀମାନଙ୍କ ମଧ୍ୟରୁ ଉଦାର ମନୋଭାବାପନ୍ନ ବ୍ୟକ୍ତିବୃନ୍ଦ ଲର୍ଡ ରିପନଙ୍କ ନିକଟରୁ ପ୍ରେରଣା ଲାଭ କରି "ଦେଶୀୟ ଶିକ୍ଷିତ ଜନସାଧାରଣଙ୍କୁ ଆମ ଶାସନର ଶତ୍ରୁ ପରିବର୍ତ୍ତେ ବନ୍ଧୁ ମନେ କରିବା ପାଇଁ" ଯୁକ୍ତି କରିଥିଲେ। ରିପନଙ୍କ ସହିତ ସେମାନେ ମଧ୍ୟ ଅନୁଭବ କରିଥିଲେ ଯେ ତାହା କେବଳ ଗୋଟିଏ ମନ୍ଦ ନୀତି ନଥିଲା, ଥିଲା ମଧ୍ୟ ନୂତନ "ବିଜ୍ଞ ଜନତାର ଗୋଷ୍ଠୀ"କୁ ଉପଯୋଗ କରାଯାଇ ନପାରିବା ଜନିତ କ୍ଷମତାର ବୃଥା ଅପଚୟ ମାତ୍ର। କଲିକତାରେ ଇଣ୍ଡିଆନ୍ ଏସୋସିଏସନ୍ ଶିକ୍ଷିତ ଜନମତକୁ ସଂଗଠିତ କରୁଥିବା ବେଳେ, ଅବସର ଗ୍ରହଣ କରିଥିବା କିମ୍ବା ତଥାପି ଚାକିରୀରେ ଥିବା ତିନିଜଣ ବ୍ରିଟିଶ ନାଗରିକ ଯଥା - ଏ. ଓ. ହ୍ୟୁମ୍, ସାର୍. ଡବ୍ଲ୍ୟୁ. ୱେଡରବର୍ଣ୍ଣ ଏବଂ ଡବ୍ଲ୍ୟୁ. ଏସ୍. ବ୍ଲଣ୍ଟ (A. O. Hume, Sir W. Wedderburn, W. S. Blunt) ଭାରତୀୟ ମତାମତର ପରିପ୍ରକାଶ ପାଇଁ ଗୋଟିଏ ସର୍ବଭାରତୀୟ ଅନୁଷ୍ଠାନ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଆଗେଇ ଆସିଥିଲେ। 1883 ମସିହାରେ ହ୍ୟୁମ୍ ଗୋଟିଏ ଖୋଲା ଚିଠିରେ "ଦେଶର ସର୍ବଶ୍ରେଷ୍ଠ ଶିକ୍ଷିତ ବ୍ୟକ୍ତିମାନଙ୍କୁ" ଆହ୍ୱାନ ଦେଇଥିଲେ ଯେ "ଆପଣମାନଙ୍କ ଲାଗି ଏବଂ ଆପଣଙ୍କ ଦେଶ ଲାଗି ଅଧିକତର ସ୍ୱାଧୀନତା ହାସଲ କରିବା ପାଇଁ, ଅଧିକ ନିରପେକ୍ଷ ଶାସନ ପାଇଁ, ଆପଣମାନଙ୍କ ନିଜର କାର୍ଯ୍ୟକଳାପର ପରିଚାଳନା ଦିଗରେ ଅଧିକତର ଅଂଶୀଦାର ହେବା ପାଇଁ ଦୃଢ଼ପ୍ରତିଜ୍ଞ ହୋଇ ସଂଗ୍ରାମ କରିବାକୁ ହେବ। . . . ଆପଣମାନେ କିଭଳି ଭାବେ କାର୍ଯ୍ୟ କରିବାକୁ ହେବ ତାହା ଜାଣିବା, ଅନୁଭବ କରିବା ଏବଂ ଚିରନ୍ତନ ସତ୍ୟ ପଥରେ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ। ତା'ର କାରଣ ଆତ୍ମୋତ୍ସର୍ଗ ଏବଂ ନିଃସ୍ୱାର୍ଥତା ହିଁ ସ୍ୱାଧୀନତା ତଥା ଆନନ୍ଦ ଉପଭୋଗର ଅପରାଜେୟ ଦିଗ୍‌ଦର୍ଶକ।" ସେହି ଯୋଜନା, 1884 ମସିହାରେ ଲର୍ଡ ରିପନଙ୍କ ପରେ ପରେ ଭାଇସରୟ ହୋଇ ଆସିଥିବା ଲର୍ଡ ଡଫରିନ୍ (Lord Dufferin)ଙ୍କ ନୀରବ ସମର୍ଥନ ଲାଭ କରିଥିଲା। ସେହି ଅନୁସାରେ କେତେକ ନିର୍ବାଚିତ ଲୋକଙ୍କୁ ନେଇ 1885 ମସିହା ଡିସେମ୍ବର ମାସରେ ବମ୍ବେରେ ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହୋଇଥିଲା। ସେହି ଅଧିବେଶନରେ ସଭାପତି, ପାଶ୍ଚାତ୍ୟ ଢଙ୍ଗଢାଙ୍ଗପୂର୍ଣ୍ଣ ବାରିଷ୍ଟର ଡବ୍ଲ୍ୟୁ. ସି. ବାନାର୍ଜୀଙ୍କ ବ୍ୟତୀତ ମାତ୍ର ଦୁଇଜଣ ବଙ୍ଗାଳୀ ଯୋଗ ଦେଇଥିଲେ। ସେମାନେ ଥିଲେ 'ଦି ଇଣ୍ଡିଆନ୍ ମିରର୍' ଓ 'ନବ ବିଭାକର'ର ସମ୍ପାଦକ। ସୁରେନ୍ଦ୍ରନାଥ ନିମନ୍ତ୍ରିତ ହୋଇଥିଲେ ମଧ୍ୟ ସେଇ ଏକା ସମୟରେ କଲିକତାରେ ଅନୁଷ୍ଠିତ ହେବାକୁ ଥିବା ଇଣ୍ଡିଆନ୍

ଏସୋସିଏସନ୍‌ର ଦ୍ୱିତୀୟ ଅଧିବେଶନ ପାଇଁ ବ୍ୟଗ୍ର ଥିଲେ । ବଙ୍ଗଳାର ଅନ୍ୟ କୌଣସି ଜାତୀୟବାଦୀ ସେଥିପାଇଁ ସମ୍ଭବତଃ ନିମନ୍ତ୍ରିତ ହୋଇ ନଥିଲେ ।

ତତ୍ ପରବର୍ତ୍ତୀ ବର୍ଷ ଦାଦାଭାଇ ନାରୋଜୀଙ୍କ ସଭାପତିତ୍ୱରେ କଲିକତାରେ ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେଠାରେ କଂଗ୍ରେସ ସହିତ ଇଣ୍ଡିଆନ୍ ଏସୋସିଏସନ୍ ସମ୍ମିଳିତ ହୋଇ ଯାଇ ତାହା ଏକ ରାଜନୈତିକ ଅନୁଷ୍ଠାନରେ ରୂପାନ୍ତରିତ ହୋଇଥିଲା । ଏହି ଅଧିବେଶନରେ ବିଧାନ-ସଭାଗୁଡ଼ିକରେ ଭାରତୀୟ ସଭ୍ୟମାନଙ୍କୁ ମନୋନୟନ ପରିବର୍ତ୍ତେ ପ୍ରତିନିଧିତ୍ୱ (ନିର୍ବାଚିତ ହୋଇ) କରାଯିବା ଲାଗି ଦାବୀ ଉପସ୍ଥାପିତ କରାଯାଇଥିଲା ଏବଂ ନିର୍ବାଚନ ପଦ୍ଧତି ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ଯଦିଚ ସେହି ପ୍ରସ୍ତାବଗୁଡ଼ିକ ଶାନ୍ତ ତଥା ନିରପରାଧୀ ଥିଲା ତଥାପି ସେଥିପାଇଁ ହୋଇଥିବା ବାଦାନୁବାଦଗୁଡ଼ିକ ସେଭଳି ବିଶେଷ ନଥିଲା । ପ୍ରତିନିଧିମାନେ "ବିଦେଶୀ ଅମଲାତାନ୍ତ୍ରିକ ଶାସନ ତଳେ ବାସ କରୁଥିବା" ବିଷୟ ନେଇ ଆଲୋଚନା କରିଥିବା ଯୋଗୁଁ ଲର୍ଡ ଡଫରିନ୍‌ଙ୍କୁ ବିଶେଷ ଭାବେ ଆକ୍ଷେପ କରାଯାଇଥିଲା ।

ମୁଷ୍ଟିମେୟ "ନିର୍ଦ୍ଦିଷ୍ଟ ଲୋକଙ୍କ" ଗୁପ୍ତ ମନ୍ତ୍ରଣା ସମିତିକୁ ଦୟାବିହୀନ ଆଗ୍ରହ ନେଇ ଦେଖୁଥିବା ମୋତିଲାଲ, କଂଗ୍ରେସକୁ ବାସ୍ତବିକ ଏକ ଜାତୀୟ ମତାମତମୂଳକ ପ୍ରଭୂତ ଶକ୍ତିଶାଳୀ ଅନୁଷ୍ଠାନରୂପେ ଲକ୍ଷ୍ୟ କରିପାରିଥିଲେ । ପୁଣି ଶୈଳପ୍ରାନ୍ତ ଉପରେ ସରକାରଙ୍କ ଭର୍ତ୍ସନାମୂଳକ ଭୃକୁଞ୍ଚନ ଅଧିକତର ହୋଇଥିବା ଫଳରେ ସେଥିପ୍ରତି ତାଙ୍କର ଆଗ୍ରହ ବୃଦ୍ଧି ପାଇଥିଲା । ଯେତେବେଳେ ଲର୍ଡ ଡଫରିନ୍ କଂଗ୍ରେସକୁ "ଏକ ଅଣୁବୀକ୍ଷଣିକ ସଂଖ୍ୟାଲଘିଷ୍ଠ ମତ"ର ପ୍ରତିନିଧିତ୍ୱ କରୁଥିବା କାରଣ ଦର୍ଶାଇ କରି ବରଖାସ୍ତ କରି ଦେଇଥିଲେ, ମୋତିଲାଲ ଆପଣାଛାଏଁ କଂଗ୍ରେସରେ ଯୋଗ ଦେଇଥିଲେ । ଆଲାହାବାଦଠାରେ ୧୮୮୮ ମସିହାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସର ଚତୁର୍ଥ ଅଧିବେଶନରେ ସେ "ଗୋଟିଏ ପୁରୁଣାକାଳିଆ ଚଦର ଘୋଡ଼ାଇ ହୋଇ" ଯୋଗ ଦେଇଥିବା ଦେଖା ଯାଇଥିଲା । ଏକା ସାଙ୍ଗରେ ଅନୁଷ୍ଠିତ ହେଉଥିବା ଭାରତୀୟ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ଭାରତରୁ ଉତ୍ତୀର୍ଣ୍ଣ ହେଉଥିବା ପ୍ରାର୍ଥୀମାନେ ଇଂଲଣ୍ଡରେ କିଛିକାଳ ବାଧ୍ୟ ହୋଇ ବାସ କରିବା ଲାଗି ଉପସ୍ଥାପିତ ପ୍ରସ୍ତାବକୁ ସେଠାରେ ସେ ବିରୋଧ କରିଥିଲେ । ମୋତିଲାଲଙ୍କ ଦ୍ୱାରା ଉତ୍‌ଥାପିତ ସେହି ବିଷୟ ହିଁ ସେଠାରେ ସାରାଦିନ ବିଚାର ଆଲୋଚନା ହୋଇଥିଲା । ସନିର୍ବନ୍ଧ ଅନୁରୋଧମୂଳକ ମିଳାମିଶା ପ୍ରସ୍ତାବରେ କୁହାଯାଇଥିଲା ଯେ ଯେତେବେଳ ପର୍ଯ୍ୟନ୍ତ ଖୋଲାଖୋଲି ଭାବରେ ଏକା ସମୟରେ ଇଂଲଣ୍ଡ ଓ ଭାରତରେ ପ୍ରତିଯୋଗିତାମୂଳକ ଆଇ. ସି. ଏସ୍. ପରୀକ୍ଷା ଅନୁଷ୍ଠିତ ହେବ ନାହିଁ, ସେତେବେଳ ପର୍ଯ୍ୟନ୍ତ ଭାରତୀୟ ଛାତ୍ରମାନଙ୍କୁ ସମ୍ପୂର୍ଣ୍ଣ ନ୍ୟାୟ ମିଳି ପାରିବ ନାହିଁ । ସେହି ଅଧିବେଶନର ଫଳାଫଳରେ ଯେ ମୋତିଲାଲ ସନ୍ତୁଷ୍ଟ ନଥିଲେ ତାହା 'ପତ୍ରିକା'ରେ ଦେଇଥିବା ତାଙ୍କ ଟିପ୍‌ପଣୀରୁ ସ୍ପଷ୍ଟ :

"କଂଗ୍ରେସରେ ପ୍ରତିନିଧି ଭାବେ ଯୋଗ ଦେବାକୁ ଆହ୍ଲାବାଦ ଯାଇଥିବା ଅନେକ ଉତ୍ସାହୀ ଲୋକଙ୍କୁ ଅସନ୍ତୁଷ୍ଟ ଭାବେ ସେହିଁ ସ୍ଥାନ ପରିତ୍ୟାଗ କରିବାକୁ ହୋଇଥିଲା । ସେମାନଙ୍କ ଅନେକ କଥା କହିବାର ଥିଲା ଏବଂ ଅନେକ କାର୍ଯ୍ୟ କରିବାର ଥିଲା । କିନ୍ତୁ ସେମାନେ କେବଳ ପ୍ରତିନିଧିମାନଙ୍କ ସଂଖ୍ୟା ବୃଦ୍ଧି କରିବା ବ୍ୟତୀତ କଂଗ୍ରେସର କୌଣସି ଉନ୍ନତି କରିବାଲାଗି ସୁଯୋଗ ପାଇ ନଥିଲେ । . . . . . ତଥାପି

ଏହା ନିଶ୍ଚିତ ଯେ ଗତ ବର୍ଷ ଅପେକ୍ଷା ଏ ବର୍ଷ ଉତ୍‌କଣ୍ଠାମୂଳକ ପ୍ରସ୍ତାବ ଗୃହୀତ ହେବାକୁ ଥିବା କାର୍ଯ୍ୟସୂଚୀରେ ଅଜାଡ଼ି ହୋଇ ପଡ଼ିଥିଲା ।''

ମୋତିଲାଲ ଅନୁଭବ କରିଥିବା ଅସନ୍ତୋଷର ଅନ୍ତତଃ ଦୁଇଟି ମୁଖ୍ୟ କାରଣ ଥିଲା । ପ୍ରଥମତଃ, ସେତେବେଳେ ସ୍ୱାୟତ୍ତ ଶାସନ କଂଗ୍ରେସର ସ୍ୱୀକୃତ ଲକ୍ଷ୍ୟ ନଥିଲା, ଥିଲା ''ଭାରତର କ୍ଷତିକାରକ ହେବାଭଳି ଯେଉଁ ସର୍ତ୍ତାବଳୀ ରହିଛି ସେସବୁର ପରିବର୍ତ୍ତନ କରାଯାଇ ଇଂଲଣ୍ଡ ଓ ଭାରତ ମଧ୍ୟରେ ଐକ୍ୟ ସ୍ଥାପନ କରି'' ଶାସନର ଦୃଢ଼ୀକରଣ କରିବା । କଂଗ୍ରେସର ପ୍ରାଥମିକ ଅବସ୍ଥାରେ ନେତୃବୃନ୍ଦ ଏକେତ ବ୍ରିଟିଶ ଉଦାରପନ୍ଥୀ ନୀତିରେ ଅତିମାତ୍ରାରେ ଅନୁପ୍ରାଣିତ ହୋଇଥିଲେ କିମ୍ବା ସ୍ୱାୟତ୍ତ ଶାସନ ଦାବୀ କରିବା ଉଦ୍ଦେଶ୍ୟରେ ଭାରତର ଶାସନ କ୍ଷେତ୍ରରେ ବ୍ରିଟିଶମାନଙ୍କ ସହିତ ସମାନ ଭାବରେ ଅଂଶୀଦାର ହେବା ପାଇଁ ଅତିମାତ୍ରାରେ ଉତ୍‌କଣ୍ଠିତ ଥିଲେ । ମୁଖ୍ୟତଃ ସେତେବେଳେ କଂଗ୍ରେସର ନେତୃତ୍ୱ ନେଇଥିଲେ ଭାରତୀୟ ଉଚ୍ଚଶ୍ରେଣୀୟ କର୍ମଜୀବୀ, ବଡ଼ବଡ଼ ଜମିଦାର, ଇଉରୋପୀୟ ବ୍ୟବସାୟୀ ତଥା ରାଜକର୍ମଚାରୀଗଣ । କିନ୍ତୁ ତଥାପି ବଙ୍ଗାଳୀ ଜନମତ ମୁଖ୍ୟତଃ ଗଠିତ ହୋଇଥିଲା ସ୍ୱଳ୍ପସଂଖ୍ୟକ ଜମି ମାଲିକ, ଭାରତୀୟ ବ୍ୟବସାୟୀ, କିରାଣୀ, ଶିକ୍ଷକ, ଡାକ୍ତର, ନିମ୍ନଶ୍ରେଣୀୟ କର୍ମଜୀବୀ ତଥା ଆଇନଜୀବୀମାନଙ୍କଦ୍ୱାରା । ସେମାନେ ବାଧ୍ୟବାଧକତାରୂପେ ଶିକ୍ଷାଲାଭ କରିଥିବା ଇଂରେଜୀ ଇତିହାସରୁ ଅଧ୍ୟୟନ କରିଥିଲେ ଯେ ମାନବିକ ଅଧିକାର ସବୁଠାରୁ ଅଧିକ ମୂଲ୍ୟବାନ ଏବଂ ଆପଣାର ଶକ୍ତି ପ୍ରଦର୍ଶନ କରି ସେଗୁଡ଼ିକୁ ଲାଭ କରିବାକୁ ହେବ । ସେହି ବିଷୟକୁ ସେମାନେ ଆନ୍ତରିକତାର ସହିତ ସ୍ୱୀକାର କରିଥିଲେ । ଏକ ବିଦେଶୀ ସରକାର ପକ୍ଷପାତ ନୀତି ଗ୍ରହଣ କରି ନିରଙ୍କୁଶଭାବେ ଶାସନ ପରିଚାଳନା କରୁଥିବା ନେଇ ସେମାନଙ୍କ ସମାଲୋଚନାର ଧାରା ଅବିରତ ଥିଲା । ଲୋହିତ ଭାରତୀୟମାନଙ୍କୁ ସମର୍ଥନ କରିବା ପାଇଁ ସେମାନେ ନିଜେ ପ୍ରଣୟନ କରିଥିବା ଆଇନକୁ ସବୁବେଳେ ଆପଣାଛାଏଁ ଭଙ୍ଗ କରୁଥିଲେ ବୋଲି ଆକ୍ଷେପ କରାଯାଇଥିଲା । ସେଗୁଡ଼ିକ ବ୍ରିଟିଶ ରାଜକର୍ମଚାରୀ ତଥା ବ୍ରିଟିଶ ବ୍ୟବସାୟୀଙ୍କ ମନରେ ତିକ୍ତତା ସୃଷ୍ଟି କରୁଥିଲା । ନୂତନଭାବେ ଉଦ୍‌ବୁଦ୍ଧ ହୋଇଥିବା ଏହି ଚିନ୍ତାଧାରାର ନେତୃତ୍ୱ ନେଉଥିବା 'ପତ୍ରିକା' ତଥା ମଧ୍ୟବିତ୍ତ ବଙ୍ଗାଳୀ ଗୋଷ୍ଠୀଙ୍କୁ ସେମାନେ ସେଥିଲାଗି ଘୃଣା କରୁଥିବା କ୍ରମଶଃ ସ୍ପଷ୍ଟ ହୋଇ ଉଠୁଥିଲା ।

ଇତି ମଧ୍ୟରେ ରାଜକୀୟ କୃତ୍ରିମ ଡିମ୍ବ ଫୁଟାଇବା ଯନ୍ତ୍ର ମଧ୍ୟରୁ ମୁସଲିମ୍ ବିଚ୍ଛିନ୍ନତାବାଦୀ ମନୋବୃତ୍ତି ଜନ୍ମ ନେଇ ସାରିଥିଲା । ମୁସଲମାନ ସମ୍ପ୍ରଦାୟର କେତେକ ସୁନିର୍ବାଚିତ ବ୍ୟକ୍ତି ସିପାହୀ ବିଦ୍ରୋହ ପରଠାରୁ ରାଜନୈତିକ ମରୁମୟ ପ୍ରଦେଶରେ ଘୁରି ବୁଲିବାରେ ଲାଗିଥିଲେ । ଟୋରି ଦଳ ସମର୍ଥିତ ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଏହି ଆନୁଗତ୍ୟକାରୀ ଗୋଷ୍ଠୀ ସଂଗୃହିତ ହୋଇ ଏକତ୍ର କରା ଯାଇଥିଲା ଏବଂ ସାର୍ ସୟଦ୍ ଅହମ୍ମଦ ଖାନ୍‌ଙ୍କ ନେତୃତ୍ୱରେ ଏମାନଙ୍କୁ ଏକ ସମାନ୍ତରାଳ ରାଜନୈତିକ ଦଳ ରୂପେ ସରକାରୀ ସମର୍ଥନ ମିଳିଥିଲା । ସମଗ୍ର ଭାରତକୁ ଗୋଟିଏ ଜାତି ହିସାବରେ ଗ୍ରହଣ କରିଥିବା ଯୋଗୁଁ ସୟଦ୍ ଅହମ୍ମଦ ଖାନ୍ କଂଗ୍ରେସକୁ ବିରୋଧ କରିଥିଲେ । ତାଙ୍କର ନିଶ୍ଚିତ ମତ ଥିଲା ଯେ ମୁସଲମାନ ଓ ହିନ୍ଦୁ ଦୁଇଟି ସ୍ୱତନ୍ତ୍ର ଜାତି । ସେ ଆଶଙ୍କା ପ୍ରକାଶ କରିଥିଲେ ଯେ ଭାରତରେ କୌଣସି ପ୍ରତିନିଧିମୂଳକ ସରକାର ଗଠିତ ହେଲେ ତାହା ହିନ୍ଦୁ ମଧ୍ୟବିତ୍ତ, ଅନ୍ୟ ଭାଷାରେ କହିବାକୁ ଗଲେ ବଙ୍ଗାଳୀ ବାବୁମାନଙ୍କଦ୍ୱାରା ପ୍ରଭାବିତ କଂଗ୍ରେସ ଦେଶକୁ ଶାସନ କରିବା ହିଁ ହେବ ପରିଣାମ । ତାଙ୍କର ମତ ଥିଲା ଯେ ଶ୍ରେଷ୍ଠ ପରିବାରର ଲୋକମାନେ କଦାପି କାଳେ ସେମାନଙ୍କ ଜୀବନ ଓ ଧନ

ସମ୍ପତ୍ତି ନିମ୍ନ ଶ୍ରେଣୀର ଲୋକ - ଯେଉଁମାନଙ୍କ ବିନମ୍ର ଉଦ୍ଭବ ସହିତ ସେମାନେ ଘନିଷ୍ଠ ଭାବେ ପରିଚିତ, ସେମାନଙ୍କ ହାତରେ ବିଶ୍ୱାସର ସହିତ ଅର୍ପଣ କରିବା ଲାଗି ଇଚ୍ଛା କରିବେ ନାହିଁ । କିନ୍ତୁ ଶିକ୍ଷିତ ମୁସଲମାନମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ କଂଗ୍ରେସରେ ଯୋଗ ଦେଇଥିଲେ । ତେଣୁ ସଯ୍ୟଦ ଅହାମ୍ମଦ ତାଙ୍କର ଇଂରେଜ ଉପଦେଷ୍ଟାମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇ 1888 ମସିହାରେ ୟୁନାଇଟେଡ୍ ଇଣ୍ଡିଆନ୍ ପେଟ୍ରିଅଟିକ୍ ଏସୋସିଏସନ୍ (ବା ଭାରତୀୟ ମିଳିତ ଜାତୀୟବାଦୀ ସଂଘ) ଗଠନ କରିଥିଲେ । ତାହା କଂଗ୍ରେସର ବିରୋଧାତ୍ମକ ଅନୁଷ୍ଠାନରୂପେ କାର୍ଯ୍ୟ କରିବା ଲାଗି ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଉଚ୍ଚ ଶ୍ରେଣୀୟ ସଭ୍ୟମାନଙ୍କ ଲାଗି ପୁନଃ ସମ୍ମେଳନର କ୍ଷେତ୍ର ଥିଲା । ବଙ୍ଗଳାର ଜଣେ ସମ୍ଭ୍ରାନ୍ତ ଶ୍ରେଣୀୟ ମୁସଲମାନ ତଥା ବାରିଷ୍ଟର ଅମୀର ଅଲ୍ଲୀ ତତ୍ ପୂର୍ବରୁ 1878 ମସିହାରେ ସେଣ୍ଟ୍ରାଲ୍ ନେସ୍‌ନାଲ୍ ମହାମ୍ମଦିଆନ୍ ସଂଘ ଗଠନ କରି ସାରିଥିଲେ । ତାହାର ଉଦ୍ଦେଶ୍ୟ ଥିଲା ନିର୍ବାଚନ ତଥା ଆଇନ କାନୁନକୁ ପରିହାର କରାଯାଇ ପୈତୃକତାବାଦୀ ଆବେଦନ ଜରିଆରେ ସରକାରରେ ମୁସଲମାନମାନଙ୍କୁ ଅଧିକତର ରୂପେ ଅଂଶୀଦାର କରାଇବା । ମୁସଲିମ୍ ବିଚ୍ଛିନ୍ନତାବାଦୀ ଚିନ୍ତାଧାରା କେବଳ ଶକ୍ତିଶାଳୀ ସରକାରୀ ପୃଷ୍ଠପୋଷକତା ଲାଭ କରି ନ ଥିଲା । ତାହା ମଧ୍ୟ ପୁଷ୍ଟ ହୋଇଥିଲା ଉତ୍‌ଥାନଶୀଳ ଭାରତୀୟ ଜାତୀୟତାବାଦ କ୍ଷେତ୍ରରେ ହିନ୍ଦୁମାନଙ୍କର ଅଧିକତର ସମର୍ଥନ ଯୋଗୁଁ ।

କଂଗ୍ରେସକୁ ବଙ୍ଗାଳୀମାନେ ଅପ୍ରାଚୁର୍ଯ୍ୟରୂପେ ମୁଲ୍ୟାୟନ କରିବା ଲାଗି ଅନ୍ୟ ଗୋଟିଏ କାରଣ ଥିଲା । ଏହା ଏକ ଅଖିଳ ଭାରତୀୟ ଅନୁଷ୍ଠାନ ରୂପେ ଗୁରୁତ୍ୱପୂର୍ଣ୍ଣ ଆଞ୍ଚଳିକ ତଥା ସ୍ଥାନୀୟ ସମସ୍ୟାଗୁଡ଼ିକର ବିଚାର ଆଲୋଚନା ପାଇଁ ଅସ୍ୱୀକାର କରିବା । ବାରମ୍ବାର କୌଣସି ନା କୌଣସି ଅଞ୍ଚଳରେ ହେଉଥିବା ଦୁର୍ଭିକ୍ଷ ଯୋଗୁଁ ସାଧାରଣ ଜନତାଙ୍କ ଦୁଃଖ ଦୁର୍ଦ୍ଦଶାକୁ ଅଙ୍ଗୀଭୂତ କରିବାପାଇଁ ଏହା ବହୁ ବିଳମ୍ବ ଘଟାଇଥିଲା । ଗୋଟିଏ ସ୍ଥାନୀୟ ଉଲ୍ଲେଖଯୋଗ୍ୟ ଘଟଣା ଥିଲା ବ୍ରିଟିଶ ଉଦ୍ୟୋଗୀମାନଙ୍କ ମାଲିକାନାରେ ଥିବା ଆସାମର ଚାହା ବଗିଚାଗୁଡ଼ିକରେ କୁଲିମାନଙ୍କ ପ୍ରତି ହେଉଥିବା ଅମାନୁଷିକ ଅତ୍ୟାଚାର । ଏହା ବଙ୍ଗଳାରେ ଅତି ମାତ୍ରାରେ ଘୃଣା ମିଶ୍ରିତ କ୍ରୋଧର ବିଷୟବସ୍ତୁ ହୋଇ ପଡ଼ିଥିଲା । ପୁଣି ଏହି ବିଷୟକ ଆଲୋଚନା କଂଗ୍ରେସରେ ଅସ୍ୱୀକୃତ ହୋଇଥିବା ଯୋଗୁଁ 1887 ମସିହାରେ ବଙ୍ଗ ପ୍ରାଦେଶିକ ସମ୍ମିଳନୀର ଆୟୋଜନ ହୋଇଥିଲା । ମୋତିଲାଲ ଏବଂ ତାଙ୍କ ଭଳି ସମଚିନ୍ତକମାନେ ଅନୁଭବ କରିଥିଲେ ଯେ କେବଳ ଦଳିତ ଜାତି ତଥା ଜନସାଧାରଣଙ୍କ ସ୍ୱାର୍ଥଜନିତ ବିଷୟାବଳୀକୁ ଶୃଙ୍ଖଳାବଦ୍ଧ ଭାବରେ ଉପସ୍ଥାପିତ କରାଇ ହିଁ ଶିକ୍ଷିତ ଲୋକେ ଯୋଗ୍ୟ ଜାତୀୟ ନେତା ପଦବାଚ୍ୟ ହୋଇପାରିବେ । ପୂର୍ବରୁ ବଙ୍ଗାଳୀ ମତାମତରେ ମଧ୍ୟ କଂଗ୍ରେସ ଦ୍ୱାରା ହୋଇଥିବା ପ୍ରତିନିଧିମୂଳକ ଶାସନ ଦାବୀ ପ୍ରକାଶ ପାଇ ସାରିଥିଲା । ଏହି ଦୃଷ୍ଟିରୁ ବିଚାର କଲେ ବଙ୍ଗଳାର ଜିଲ୍ଲାଗୁଡ଼ିକ ପ୍ରଧାନ ପ୍ରଧାନ ନଗରୀଗୁଡ଼ିକ ତୁଳନାରେ କମ୍ ଉନ୍ନତ ନଥିଲା । ସେଗୁଡ଼ିକର କାର୍ଯ୍ୟକଳାପ ଅନ୍ୟମାନଙ୍କ ତୁଳନାରେ ମୋତିଲାଲଙ୍କ ଖବରକାଗଜରେ ବିସ୍ତୃତ ଭାବରେ ପ୍ରକାଶ ପାଉଥିଲା ।

•

ପ୍ରାସଙ୍ଗିକ ଭାବେ, ମୋତିଲାଲ ଓ ଶିଶିର କୁମାର ଟିପପଣୀ ଦେବା ପାଇଁ ବ୍ୟବହାର କରୁଥିବା ଇଂରାଜୀ ଭାଷାର ସ୍ୱତନ୍ତ୍ର ଶୈଳୀକୁ ପରିବର୍ତ୍ତନ କରାଯାଇ ମଧ୍ୟବିତ୍ତ ଶ୍ରେଣୀୟ ଲୋକଙ୍କ ନିକଟରେ

ପହଞ୍ଚାଇବା ଅତି ଆବଶ୍ୟକ ଥିଲା । ଇଂରାଜୀରେ ସ୍ୱଳ୍ପ ଜ୍ଞାନ ଥିବା ପାଠକମାନେ ବିଶୁଦ୍ଧ ତଥା ଶବ୍ଦାଡ଼ମ୍ବରପୂର୍ଣ୍ଣ ଇଂରାଜୀରେ ଲିଖିତ ବିଷୟଗୁଡ଼ିକର ଅଭିପ୍ରାୟ ସହଜରେ ବୁଝିବା ପାଇଁ ସମର୍ଥ ହୋଇ ପାରୁ ନ ଥିଲେ । ସେହି କାରଣରୁ ଘୋଷ ଭାଇମାନେ ସରଳ, ଭାରତୀୟ ଶୈଳୀ ଅନୁକରଣ କରି ଘରୋଇ ବ୍ୟବହୃତ ଭାଷା ସମେତ ବିଭିନ୍ନ ଆଖ୍ୟାୟିକାସବୁ ବ୍ୟବହାର କରିଥିଲେ ସେମାନେ ଉପସ୍ଥାପିତ କରୁଥିବା ଯୁକ୍ତିସମୂହକୁ ଲକ୍ଷ୍ୟସ୍ଥଳରେ ପହଞ୍ଚାଇବା ପାଇଁ । ଭାରତୀୟ ପାଠକମାନଙ୍କଦ୍ୱାରା ତତ୍‌କ୍ଷଣାତ୍ ଏହା ପ୍ରଶଂସିତ ହେବାର ଏକ କାରଣ ହୋଇ ଯାଇଥିଲା । "ବାବୁ ଇଂରାଜୀ" ବ୍ୟବହାର କରାଯାଉଛି ବୋଲି ଇଂରେଜମାନେ ତାହା ପ୍ରତି ଅବଜ୍ଞା ପ୍ରକାଶ କରି ଖବରକାଗଜରେ ବ୍ୟବହୃତ ଭାଷାକୁ ଅନୁମୋଦନ କରି ନଥିଲେ ।

৭

# ଛଅ : ସାଧାରଣ ଜୀବନରେ

ସାଧାରଣ ସାମାଜିକ ସେବା କ୍ଷେତ୍ରରେ ମୋତିଲାଲଙ୍କ ପ୍ରଥମ ଆବିର୍ଭାବ ଥିଲା 1887 ମସିହାରେ ମହାମାନ୍ୟ ସରକାରଙ୍କଦ୍ୱାରା ସାଧାରଣ ସେବାର ଉନ୍ନତି ପାଇଁ ଗଠିତ ରୟେଲ୍ସ କମିଶନ୍‌ଙ୍କ ନିକଟରେ ସାକ୍ଷ୍ୟ ପ୍ରଦାନ କରିବା । ସେତେବେଳକୁ ଭାରତରେ ବ୍ରିଟିଶ ସାମ୍ରାଜ୍ୟର "ଷ୍ଟିଲ୍ ଫ୍ରେମ୍" ବା ଇସ୍ପାତର ଚୌକାଠ ପ୍ରାୟ 900 ସରକାରୀ କର୍ମଚାରୀଙ୍କ ଦ୍ୱାରା ଗଠିତ ହୋଇଥିଲା ଯେଉଁମାନଙ୍କ ମଧ୍ୟରେ ପ୍ରାୟତଃ ବ୍ରିଟିଶମାନେ ହିଁ ଥିଲେ । ସେମାନେ "ବ୍ରିଟିଶ ବିଶ୍ୱବିଦ୍ୟାଳୟଗୁଡ଼ିକର ପୁଷ୍ପ" ରୂପେ ବର୍ଣ୍ଣିତ ହେଉଥିଲେ । ଉଦାରପନ୍ଥୀ ଦଳର ସମସ୍ତ ବିରୋଧ ସତ୍ତ୍ୱେ ବ୍ରିଟେନ୍ ସରକାର ଯେପରି ଅଙ୍ଗୀକାରବଦ୍ଧ ଥିଲେ ଭାରତୀୟମାନଙ୍କ ହାତ ପାହାନ୍ତାରୁ ଏହି ପଦପଦବୀଗୁଡ଼ିକୁ ଦୂରେଇ ରଖିବା ପାଇଁ । ଅତ୍ୟନ୍ତ ଶକ୍ତିଶାଳୀ ବ୍ରିଟିଶ ବେସରକାରୀ ଗୋଷ୍ଠୀ, ଯେଉଁମାନେ ଭାରତୀୟମାନଙ୍କୁ ସବୁବେଳେ ହୀନ ଚକ୍ଷୁରେ ଦେଖୁଥିଲେ ଏବଂ ବିଶେଷ କରି ଆନ୍ଦୋଳନାତ୍ମକ ବଙ୍ଗାଳୀମାନଙ୍କୁ ଘୃଣା କରୁଥିଲେ ସେମାନେ ଏଥିରେ ସମ୍ପୂର୍ଣ୍ଣ ହାର୍ଦ୍ଦିକତାର ସହିତ ଏକମତ ଥିଲେ । ସେମାନଙ୍କ ସମର୍ଥିତ ମତ ଥିଲା ଯେ ଜିଲ୍ଲା କଲେକ୍ଟର ଓ ସେମାନଙ୍କ ମୁଖ୍ୟ ସହାୟକମାନେ ସର୍ବତୋଭାବେ ଇଂରେଜ ବ୍ୟକ୍ତି ହେବା ବାଞ୍ଛନୀୟ । ଭାରତୀୟମାନେ ବିଶେଷ କରି ଘୃଣ୍ୟ ବଙ୍ଗାଳୀମାନେ, ଐତିହାସିକ କାରଣରୁ ପ୍ରବଳ ପ୍ରତିବନ୍ଧକ ସତ୍ତ୍ୱେ ସାଧାରଣ ସେବା ଲାଗି ଅନୁଷ୍ଠିତ ହେଉଥିବା ବଛାବଛି ପରୀକ୍ଷାଗୁଡ଼ିକରେ ଉଦ୍ଧମ କରିବା ଆରମ୍ଭ କରି ଦେଇଥିଲେ । ଏବଂ ପୁଣି ଖୋଲା ପ୍ରତିଯୋଗିତାମୂଳକ ପରୀକ୍ଷା ମାଧ୍ୟମରେ ଅଧିକ ସଂଖ୍ୟକ ଭାରତୀୟଙ୍କୁ ସାଧାରଣ ସେବା କ୍ଷେତ୍ରରେ ପ୍ରତିନିଧିତ୍ୱ କରିବାକୁ ଦେବା ପାଇଁ ହେଉଥିବା ଭାରତୀୟ ଦାବୀକୁ ପୂରାପୂରି ଭାବେ ଉପେକ୍ଷା କରାଯାଇ ପାରି ନଥିଲା । ଭାରତୀୟ ଜନମନ ବିଜୟ ହାସଲ କରିବା ଲାଗି ରୟେଲ କମିଶନ୍ ଥିଲା ଏକ ପାବଚ୍ଛ ।

ପତ୍ରିକାର ସହଯୋଗୀ ସମ୍ପାଦକ ରୂପେ ମୋତିଲାଲଙ୍କୁ କମିଶନ୍ ଆଗରେ ସାକ୍ଷ୍ୟ ଦେବାଲାଗି କୁହାଯାଇଥିଲା । ସେ ଡାକ ବିଭାଗ ସମ୍ପର୍କରେ କହିବା ପାଇଁ ସ୍ଥିର କରିଥିଲେ । କାରଣ ଏହା ଏପରି ଗୋଟିଏ ବିଭାଗ ଥିଲା ଯାହାର କାର୍ଯ୍ୟ ଭାରତୀୟ କର୍ମଚାରୀମାନଙ୍କ ବିନା ନିଯୁକ୍ତିରେ ପରିଚାଳିତ ହେବା ଅସମ୍ଭବ ଥିଲା । କିନ୍ତୁ ତଥାପି ତାହାର ଉଚ୍ଚସ୍ତରରେ ଲୋହିତ ଭାରତୀୟମାନେହିଁ କାର୍ଯ୍ୟ ପରିଚାଳିତ କରୁଥିଲେ, ଯଦିଚ ଭାରତୀୟ ଡାକ ନିୟମରେ ଘୋଷିତ ଥିଲା ଯେ "ଭାରତୀୟ ଦେଶୀୟ ଲୋକଙ୍କ

ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ଡାକ ଓ ତାର ବିଭାଗର କୌଣସି ପଦରେ ନିଯୁକ୍ତି ପାଇ ପାରିବେ ନାହିଁ ।'' ପ୍ରାୟଶଃ ସବୁ ରାଜ୍ୟଗୁଡ଼ିକରେ ପୋଷ୍ଟମାଷ୍ଟର ଜେନେରାଲ ଏବଂ ସେମାନଙ୍କ ନିକଟତମ ଅଧସ୍ତନ କର୍ମଚାରୀମାନେ ଇଉରୋପୀୟ ଥିଲେ । ଏପରିକି ବଙ୍ଗଳାର ପନ୍ଦର ଜଣ ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟଙ୍କ ମଧ୍ୟରୁ ଆଠଜଣ ଇଉରୋପୀୟ ଥିଲେ ଏବଂ ସେହି ଭଳି ରେଳ ଡାକ ସେବାରେ ଥିବା ଚଉଦ ଜଣ ଅଫିସରଙ୍କ ମଧ୍ୟରେ ଦଶ ଜଣ ଇଉରୋପୀୟ ଅଫିସର ଥିଲେ । ମୋତିଲାଲ ଏହା ମଧ୍ୟ ପ୍ରକାଶ କରିଥିଲେ ଯେ ଏମାନଙ୍କ ମଧ୍ୟରୁ ଚଉଦ ଜଣ ଇଉରୋପୀୟ କର୍ମଚାରୀ ଥିଲେ ଅଠରରୁ କୋଡ଼ିଏ ବର୍ଷ ବୟସ୍କ । ସେ ସେହି ବିଭାଗରେ ପୁରି ରହିଥିବା ଅନ୍ୟାୟ ତଥା ନିଜର ସ୍ୱାର୍ଥ ସାଧନ ପାଇଁ ଅବଲମ୍ବନ କରାଯାଉଥିବା ଅନ୍ୟାୟଗୁଡ଼ିକର ଉଦ୍‌ଘାଟନ କରିଥିଲେ । ତାଙ୍କର ଦୃଢ଼ ସାକ୍ଷ୍ୟ ପ୍ରମାଣର ପରିଣାମ ଡାକ ସେବାକୁ ଅଧିକତର ଭାବେ ଭାରତୀୟ କରାଇ ପାରିଥିବା ସଙ୍ଗେସଙ୍ଗେ ସେହି ନିନ୍ଦା-ଜନକ ଘଟଣା ଖବରକାଗଜଗୁଡ଼ିକରେ ପ୍ରକାଶିତ ହୋଇଥିଲା । ପରିଣାମସ୍ୱରୂପ ବ୍ରିଟିଶ ପାର୍ଲାମେଣ୍ଟରେ ଚାର୍ଲସ ବ୍ରାଡ୍‌ଲଫ୍ ସେହି ବିଷୟ ଆଲୋଚନା ପାଇଁ ଉତ୍‌ଥାପିତ କରିଥିଲେ ଏବଂ ସେହି ବିଭାଗର ଡାଇରେକ୍ଟର ଜେନେରାଲ ମି. ହଗ୍‌ଙ୍କୁ ଇସ୍ତଫା ଦେବାକୁ ହୋଇଥିଲା ।

ମୋତିଲାଲଙ୍କ ସାକ୍ଷ୍ୟ ଏବଂ ତାଙ୍କର ସବୁ ଟିପ୍‌ପଣୀ, ଇଉରୋପୀୟ ତଥା ସେମାନଙ୍କ କାରବାରରେ ପ୍ରଚ୍ଛନ୍ନ ହାତ ରଖି ଲାଭବାନ ହେଉଥିବା ଇଉରେସିଆନ୍‌ଙ୍କଦ୍ୱାରା ବିରାଗଭାଜନ ହୋଇଥିଲା । ସେହି ନାବାଳକ ନିଯୁକ୍ତି ସମ୍ପର୍କରେ ସେ ଟିପ୍‌ପଣୀ ଦେଇଥିଲେ :

''କିପରି ଏହି ଯୁବକମାନେ - ସେମାନଙ୍କ ମଧ୍ୟରୁ କେତେକଙ୍କୁ ବାଳକ ବି କୁହାଯାଇପାରେ - ସୁପରିଣ୍ଟେଣ୍ଡେଣ୍ଟ କାର୍ଯ୍ୟ ନିର୍ବାହ କରିବା ପାଇଁ ନିଜ ନିଜକୁ ଉପଯୁକ୍ତ କରାଇ ପାରିଛନ୍ତି ତାହା କଳ୍ପନା କରିବା କଷ୍ଟକର ହୋଇ ପଡୁଛି । ଆମ୍ଭମାନଙ୍କୁ ଏହି ସମ୍ଭାବନାକୁ ଗ୍ରହଣ ନକଲେ ଚଳିବ ନାହିଁ ଯେ, ସେମାନେ ସେମାନଙ୍କ ମାତାଙ୍କ ଗର୍ଭରୁ ଆତ୍ମପ୍ରକାଶ କରିବା ବେଳକୁ ଅଷ୍ଟାବକ୍ରଙ୍କ ଭଳି ପୃଥିବୀକୁ ଶିକ୍ଷା ଦେବାଲାଗି ସମ୍ପୂର୍ଣ୍ଣ ଉପଯୁକ୍ତ ହେବା ସଙ୍ଗେ ସଙ୍ଗେ ଯାହା କିଛି ଏବଂ ସବୁକିଛି କରିବା ପାଇଁ ସମର୍ଥ ହୋଇ ସାରିଥିଲେ । ଅଷ୍ଟାବକ୍ର ତାଙ୍କ ମାତାଙ୍କ ଗର୍ଭରେ ବାର ବର୍ଷ କାଳ ରହିଥିଲେ ଏବଂ ସେଠାରେ ରହି ତାଙ୍କର ପିତା ନିଜର ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିବା ବେଳେ ସେହି ସମସ୍ତ ବିଦ୍ୟା ଶିକ୍ଷା ଲାଭ କରିପାରି ଥିଲେ ।''

ଦୃଢ଼ ଭାବରେ ମୋତିଲାଲ ତାଙ୍କର ସାକ୍ଷ୍ୟ ଉପସ୍ଥାପିତ କରିପାରିଥିବା ଯୋଗୁଁ କେତେକ ଉତ୍ତେଜନାପୂର୍ଣ୍ଣ ପତ୍ର ଡାକ ଯୋଗେ ପାଇଥିଲେ । ସେଥିରୁ ଗୋଟିଏ ବେନାମୀ ପତ୍ର ହୁଏତ ଜଣେ ଇଉରୋପୀୟ କିମ୍ବା ଇଉରେସୀୟଙ୍କ ନିକଟରୁ ଆସିଥିଲା । ସେଥିରେ କୁହା ଯାଇଥିଲା :

''ମୋତିଲାଲ ଘୋଷ ସେଦିନ କମିଶନ୍ ସାମନାରେ ଯେଉଁ ମୂର୍ଖାମି ପ୍ରଦର୍ଶନ କରିଥିଲେ ତାହାସବୁ ପାଠକମାନଙ୍କୁ ଅତି ଉତ୍ତମରୂପେ ଦର୍ଶାଇ ଦିଏ· ଯେ ତୁମେ, ଦେଶୀୟ ଲୋକେ କିଭଳି ଭାବରେ

କୁଭାଷୀ ଏବଂ ତୁମ ଭଳି ଲୋକମାନେ କେଉଁଭଳି କଥା କହିବା ପାଇଁ ତଥା କେଉଁଭଳି କାର୍ଯ୍ୟ କରିବା ପାଇଁ ସମର୍ଥ । ସେଠାରେ ଉପସ୍ଥିତ ଥିବା ଇଉରୋପୀୟ ଭଦ୍ରଲୋକମାନେ ତୁମ ପିଠିରେ କାହିଁକି ଜୋତା ପ୍ରହାର କରି ନାହାନ୍ତି ତାହାହିଁ ଆଶ୍ଚର୍ଯ୍ୟର କଥା । ତୁମେ ତୁମର ବଙ୍ଗାଳୀ ଆଚାର ବ୍ୟବହାର ପ୍ରଦର୍ଶନ କରିଥିବାରୁ ସେମାନେ ତୁମକୁ ସେଭଳି କରିବାର ଥିଲା । ତୁମେ ବଙ୍ଗାଳୀମାନେ ପୃଥିବୀରେ ସର୍ବ ନିମ୍ନସ୍ତରର ଜାତି ଏବଂ ତୁମ୍ଭେମାନେ ମେକାଲେଙ୍କୁ ପାଠ କରିବା ଉଚିତ । କେବଳ ଏହି ଇଂରେଜ ସରକାର ତୁମ୍ଭମାନଙ୍କୁ ସଭ୍ୟ କରି ଆସିଛି । . . . . . (ଏକ ଅପ୍ରକାଶ୍ୟ ଶବ୍ଦ)ର ସନ୍ତାନଗଣ . . . . । ପ୍ରାୟ ପ୍ରତିଦିନ ଖବରକାଗଜଗୁଡ଼ିକରେ ଆମେ ପାଠ କରୁଥିବା ଅନ୍ୟସବୁ ବଙ୍ଗାଳୀ ଜାଲକାରୀ, ଚୋର ଏବଂ ବଦମାସମାନଙ୍କ ଅପେକ୍ଷା ତୁମେ ତୁମ ନିଜର ଅଧିକ କ୍ଷତି କରିବା ପାଇଁ ଅନେକ କିଛି କରି ଯାଇଅଛ ।

ତୁମର ପତ୍ନୀଙ୍କୁ . . . . (ଏକ ଅପ୍ରକାଶ୍ୟ ଶବ୍ଦ)<br>
ତୁମର ଗୋଷ୍ଠୀଙ୍କୁ . . . .(ଏକ ଅପ୍ରକାଶ୍ୟ ଶବ୍ଦ)''

'ପତ୍ରିକା' ସେହି ପତ୍ରଟିକୁ ଅବିକଳ ପ୍ରକାଶ କରିଥିଲା ଏବଂ ତତ୍ ସଙ୍ଗେସଙ୍ଗେ ସେଥିରେ ନିମ୍ନ-ଲିଖିତ ଟିପ୍ପଣୀ ଦିଆ ଯାଇଥିଲା ।

''ଉପରଲିଖିତ ପତ୍ରଟି ଯେ ଜଣେ ଡାକ ବିଭାଗୀୟ ଅଫିସରଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ଜଣେ ଇଉରୋପୀୟଙ୍କ ଦ୍ୱାରା ପ୍ରେରିତ ଏଥିରେ ଆମର ଅତି କମ୍ ସନ୍ଦେହ । ଯଦି ତାହା ହୋଇଥାଏ ତା'ହେଲେ ଯଥାର୍ଥଭାବେ ସେହି ପଦଟି (ଉପରଲିଖିତ) ତାଙ୍କୁ ଏଠାରେ ଚାକିରୀ ଦେଇଥିବା ପୃଷ୍ଠପୋଷକମାନଙ୍କର ଅଧିକାରଭୁକ୍ତ ଏବଂ ଆମ୍ଭେ ଏହା ଉପହାର ସ୍ୱରୂପ ତାହାଙ୍କୁ ଅର୍ପଣ କରୁଛୁ ।''

ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ଭାରତୀୟ ଜାତୀୟ କଂଗ୍ରେସର ଅନ୍ତର୍ନିହିତ ଶକ୍ତିରେ ଆକୃଷ୍ଟ ହୋଇ ମୋତିଲାଲ ଏହାରି ଆଡ଼କୁ ଟାଣି ହୋଇ ଯାଇଥିଲେ । ନଚେତ୍, ସେତେବେଳକାର କୋଟ୍ ପରିହିତ ତଥା ଟୋପି ଦ୍ୱାରା ଆବୃତ୍ତ କଂଗ୍ରେସ ନେତା ଗୋଷ୍ଠୀଙ୍କ ସହିତ ତାଙ୍କ ମତର ଅମେଳ ରହୁଥିବା ଯୋଗୁଁ ସେ ଦୂରେଇ ରହୁଥିଲେ । 1889ର ବାର୍ଷିକ ଅଧିବେଶନରେ ସାର୍. ୱିଲିୟମ୍ ୱେଡରବର୍ଣ୍ଣ ସଭାପତିତ୍ୱ କରିଥିଲେ । ସେଠାରେ ଅନ୍ୟାନ୍ୟ ବିଷୟମାନଙ୍କ ମଧ୍ୟରେ ବିଧାନ ସଭାଗୁଡ଼ିକରେ ଭାରତୀୟମାନଙ୍କୁ ଉତ୍ତମରୂପେ ପ୍ରତିନିଧିତ୍ୱ କରିବା ସୁଯୋଗ ଦିଆଯାଇ ସେଗୁଡ଼ିକର ସଂସ୍କାର କରାଯିବା ଲାଗି ବିତର୍କ ହୋଇଥିଲା । ଜଣେ ପ୍ରତିନିଧି ରୂପେ ଯୋଗ ଦେଇଥିବା ମୋତିଲାଲ ସେଗୁଡ଼ିକରେ ସିଧାସଳଖ ଭାବେ ନିର୍ବାଚିତ ପ୍ରତିନିଧିତ୍ୱ ଲାଗି ଏକ ଯୋଜନା ପ୍ରସ୍ତୁତ କରିଥିଲେ । ଭାରତର ଜଣେ ଶୁଭାକାଂକ୍ଷୀ ବନ୍ଧୁ ତଥା ଭାରତୀୟ ଆଶା ଆକାଂକ୍ଷାର ଜଣେ ସମର୍ଥକ ବ୍ରାଡ୍‌ଲାଫ୍ ମଧ୍ୟ ସେହି ଅଧିବେଶନରେ ଯୋଗ ଦେଇଥିଲେ । ବ୍ରିଟିଶ ପାର୍ଲାମେଣ୍ଟରେ ସେ ''ଭାରତର ସଭ୍ୟ'' ଡାକନାମରେ ବେଶ ପରିଚିତ ଥିଲେ । ସେହି ଅଧିବେଶନରେ ଯେଉଁ ପ୍ରସ୍ତାବ ଆଲୋଚିତ ହୋଇଥିଲା ତା' ମଧ୍ୟରେ

ପତ୍ରିକାର ପ୍ରସ୍ତାବକୁ ଶ୍ରେଷ୍ଠ ବୋଲି ସେ ବିବେଚନା କରିଥିଲେ । ତେବେ ସେ ଅନୁଭବ କରିଥିଲେ ଯେ ପାର୍ଲିଆମେଣ୍ଟରେ ସଂଖ୍ୟାଗରିଷ୍ଠତା ହାସଲ କରିଥିବା ଟୋରି ଦଳ ସିଧାସଳଖ ପ୍ରତିନିଧିତ୍ୱ ପ୍ରସ୍ତାବକୁ ହୁଏତ ଗ୍ରହଣ କରିବ ନାହିଁ । କାରଣ ଏହା ସାମ୍ରାଜ୍ୟବାଦୀ ଅଭିଳାଷକୁ ସଙ୍କଟାପନ୍ନ କରିଦେଇ ପାରେ । ପରିଶେଷରେ ପରୋକ୍ଷ ପ୍ରତିନିଧିତ୍ୱ ପାଇଁ ବ୍ୟବସ୍ଥା ସମ୍ବଳିତ ଏକ ଯୋଜନା କରାଯାଇ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହା ଫଳରେ 1892 ମସିହାରେ ରାଜ୍ୟ କାଉନସିଲଗୁଡ଼ିକରେ ଭାରତୀୟମାନଙ୍କ ସ୍ଥିତି ନିମ୍ନପ୍ରକାରେ ଥିଲା - ସରକାରୀ ଭାବେ କାର୍ଯ୍ୟ ନିର୍ବାହକ ଥିଲେ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର; ସରକାରୀ କର୍ମଚାରୀମାନଙ୍କ ମଧ୍ୟରୁ ନିଯୁକ୍ତିପ୍ରାପ୍ତ ସଭ୍ୟ - 10; ବେସରକାରୀ ବ୍ୟକ୍ତି - 3; କଲିକତା କର୍ପୋରେସନ୍‌ର ସୁପାରିଶପ୍ରାପ୍ତ ସଭ୍ୟ - 1; ମ୍ୟୁନିସିପାଲିଟିଗୁଡ଼ିକ ମଧ୍ୟରୁ ମନୋନିତ ସଭ୍ୟ - 2; ଜିଲ୍ଲା ବୋର୍ଡଗୁଡ଼ିକରୁ - 2; ଇଉରୋପୀୟ ବ୍ୟବସାୟୀମାନଙ୍କ ମଧ୍ୟରୁ 1; ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ - 1 । ନାମକୁ ମାତ୍ର ସମତା ରକ୍ଷା କରିବା କଥା କୁହାଯାଉଥିଲେ ମଧ୍ୟ ସରକାରଙ୍କ ସପକ୍ଷରେ ସ୍ୱଷ୍ଟ ସଂଖ୍ୟାଗରିଷ୍ଠତା ନିଃସନ୍ଦେହ ଥିଲା ।

କଂଗ୍ରେସର ଏହି ଅଧିବେଶନରେ ନିଆଯାଇଥିବା ଆଉ ଏକ ପଦକ୍ଷେପ ଥିଲା ଭାରତୀୟ ଜାତୀୟ କଂଗ୍ରେସରେ ଥିବା ବ୍ରିଟିଶ କମିଟିର ଉନ୍ନତି ସାଧନ । କଂଗ୍ରେସର ଲକ୍ଷ୍ୟ ସାଧନ ପାଇଁ ବ୍ରିଟେନ୍‌ରେ କାର୍ଯ୍ୟ କରିବା ତାହାର ଉଦ୍ଦେଶ୍ୟ ଥିଲା । ଅବସରପ୍ରାପ୍ତ ସରକାରୀ କର୍ମଚାରୀ ଯଥା ୱେଡରବର୍ଣ୍ଣ ଏବଂ କଟନ୍; ଉଦାରପନ୍ଥୀ ଯଥା କେଇର ହାର୍ଡି, ଏ. କେ. ରାଟକ୍ଲିଫ, ରାମସେ ମେକାଡ଼ୋନାଲଡ୍ (ଲେବର ଦଳ ପକ୍ଷରୁ ପରକାଳରେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ନିର୍ବାଚିତ), ଚାର୍ଲସ ବ୍ରାଡ୍‌ଲାଫ, ଡ. ଜି. ରୁଥର ଫୋର୍ଡ ; ତଥା ଅନ୍ୟମାନଙ୍କ ମଧ୍ୟରେ ଏଚ୍. ଡବଲ୍ୟୁ. ବେଭିନ୍‌ସନ୍, ୱିଲିୟମ୍ ଦିଗବୀ ଏବଂ ୱିଲଫ୍ରେଡ୍ ସ୍କାୱେନ୍ ବ୍ଲାଣ୍ଟ ପ୍ରମୁଖଙ୍କୁ ନେଇ ତାହା ଗଠିତ ହୋଇଥିଲା । ଏହି କମିଟିର ପରିଚାଳନାଗତ ଖର୍ଚ୍ଚ ପାଇଁ କଂଗ୍ରେସ ବାର୍ଷିକ 50 ହଜାର ଟଙ୍କାର ଅନୁଦାନ ମଞ୍ଜୁର କରିଥିଲେ । ଦିଗ୍‌ବୀଙ୍କ ସମ୍ପାଦକତ୍ୱରେ ବ୍ରିଟେନ୍‌ରୁ "ଇଣ୍ଡିଆ" ନାମକ ଏକ ସମ୍ବାଦପତ୍ର ପ୍ରକାଶ ପାଇଥିଲା । ଯେଉଁ ଗୋଟିଏ କାର୍ଯ୍ୟ ଏହି କମିଟିଦ୍ୱାରା ସଫଳତା ହାସଲ କରିଥିଲା ତାହାଥିଲା, 1892 ମସିହାରେ ଉଦାରପନ୍ଥୀ ଦଳୀୟ ଟିକଟ ମାଧ୍ୟମରେ କଂଗ୍ରେସନେତା ଦାଦାଭାଇ ନାରୋଜୀଙ୍କୁ ବ୍ରିଟିଶ ପାର୍ଲିଆମେଣ୍ଟ ପାଇଁ ସଭ୍ୟ ନିର୍ବାଚନ କରାଇବା । ତତ୍ ବ୍ୟତୀତ ଶେଷ ପର୍ଯ୍ୟନ୍ତ ପ୍ରତିରୋଧ କରି ଆସୁଥିବା ଜାତିବାଦୀ ଓ ସାମ୍ରାଜ୍ୟବାଦୀ ନୀତିର ପୃଷ୍ଠପୋଷକ ଟୋରି ସରକାରଙ୍କ ଅଧିକ ଦୃଷ୍ଟି ଆକର୍ଷଣ କରି ପାରିବା ଦିଗରେ ଏହା ଅସମର୍ଥ ଥିଲା । ଯେଉଁ ସରକାର ନିଜ ଦେଶରେ ଗଣତନ୍ତ୍ରର ପରିଣାମଗୁଡ଼ିକ ପ୍ରତି ଅତିମାତ୍ରାରେ ଭୟଭୀତ ଥିଲେ ସେହି ସରକାର ଠିକ୍ ସେହିଭଳି ଥିଲେ ମଧ୍ୟ ଭାରତୀୟ ସାମ୍ରାଜ୍ୟ ପାଇଁ ତଥା ଗୋଟିଏ ସମ୍ପୂର୍ଣ୍ଣ ଅଣଇଂରେଜ ଏକଛତ୍ରବାଦୀ ଭାରତୀୟ ସରକାର ପାଇଁ । ସେହି ଗଣତନ୍ତ୍ରରେ "ଭାରତୀୟ ପ୍ରଶ୍ନ ସବୁ ହାତ ପାହାନ୍ତାରେ ଥିଲା" ଏବଂ ଏପରିକି କମନସ୍ ସଭାର ସଭ୍ୟମାନେ ଭାରତୀୟ ସମସ୍ୟାବଳୀ ଉପରେ ଆଲୋଚନା କରିବାପାଇଁ ଶଙ୍କିତ ଥିଲେ । କାରଣ ସେହିଭଳି ଭାରତ ବିଷୟକ ଆଲୋଚନା ବେଳେ ପାର୍ଲିଆମେଣ୍ଟ ଭବନରେ ହୁଏତ ପରାଜୟ ବରଣ କରିବାକୁ ପଡ଼ିପାରେ (ବି. ଏନ୍. ପାଣ୍ଡେ- ଦି ବ୍ରେକଅପ ଅଫ୍ ବ୍ରିଟିଶ ଇଣ୍ଡିଆ-1969) । ଶାସକମାନଙ୍କର ବିବେକରୁ ଅଧିକ କିଛି ନିର୍ଗତ ହୋଇ ପାରିବ ନାହିଁ ବୋଲି ମୋତିଲାଲଙ୍କ ଅନୁମାନ ସାବ୍ୟସ୍ତ ହୋଇଥିଲା ।

ଏହି ଅଧିବେଶନ ବେଳେ ମୋତିଲାଲ ଏବଂ ଚାର୍ଲସ ବ୍ରଡ୍‌ଲାଙ୍କ ମଧ୍ୟରେ ଦେଖା ସାକ୍ଷାତ ହୋଇଥିଲା । ଭାରତୀୟମାନଙ୍କ ସପକ୍ଷରେ ବ୍ରଡଲାଙ୍କ ମତ ପରିବର୍ତ୍ତନ ପାଇଁ ମୋତିଲାଲଙ୍କୁ କୃତିତ୍ୱ ଦିଆ ଯାଇଥାଏ । କାରଣ ତାଙ୍କରି ପ୍ରବର୍ତ୍ତନା, ବ୍ରଡ୍‌ଲାଙ୍କ ଉପରେ ପ୍ରାଧାନ୍ୟ ଲାଭ କରିଥିଲା । କୁହାଯାଇଥାଏ ଯେ ଭାରତ ବିଷୟରେ ଅନେକ ତଥ୍ୟ ସମ୍ପର୍କରେ ତାଙ୍କର ଅଜ୍ଞତା ଯୋଗୁଁ ପ୍ରଥମେ ପ୍ରଥମେ ସେ ଭାରତ ବିଷୟରେ ଶୁଣିବା ଲାଗି ଅସମ୍ମତ ଥିଲେ । ତାଙ୍କୁ ମୋତିଲାଲ କହିଥିଲେ ଯେ ଲଣ୍ଡନରେ ତାଙ୍କର ଜଣେ ବନ୍ଧୁ ଉଇଲିୟମ୍ ଡିଗ୍‌ବୀ ଯିଏ ତାଙ୍କର ପୁସ୍ତକ "ପ୍ରସପରସ ବ୍ରିଟିଶ ଇଣ୍ଡିଆ " ପାଇଁ ତଥ୍ୟସବୁ ସଂଗ୍ରହ କରୁଛନ୍ତି ତାଙ୍କରି ନିକଟରୁ ସେଗୁଡ଼ିକ ବିଷୟରେ ଯଥାର୍ଥ ତଥ୍ୟ ପାଇ ପାରିବେ । ବ୍ରଡ୍‌ଲାଫ ସେଥିରେ ସମ୍ମତ ହୋଇଥିଲେ ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ଭାରତର ଜଣେ ପରମ ସମର୍ଥକ ରହିଥିଲେ । ଏବଂ ସେ ଥିଲେ ତାଙ୍କ ସମୟର କ୍ୱଚିତ୍ ଶ୍ରେଷ୍ଠ ସଭ୍ୟମାନଙ୍କ ମଧ୍ୟରୁ ଏପରି ଜଣେ ପାର୍ଲାମେଣ୍ଟ ସଦସ୍ୟ ଯିଏ କମନସ ସଭାରେ ବ୍ରିଟିଶ ସରକାରଙ୍କୁ ପ୍ରଶ୍ନ ପଚାରି ଅତ୍ୟନ୍ତ ବିଚଳିତ କରେଇ ପାରିବା ଦିଗରେ ସମର୍ଥ ଥିଲେ ।

ପୂର୍ବେ ଆଲୋଚନା କରାଯାଇଥିବା କାଶ୍ମୀର ପ୍ରଶ୍ନ ନେଇ ବ୍ରଡ୍‌ଲାଫଙ୍କୁ ଆଗ୍ରହୀ କରିବା ଦିଗରେ ମଧ୍ୟ ମୋତିଲାଲ ବିଜୟୀ ହୋଇଥିଲେ । ଯଦିଚ ଏଥିପାଇଁ ପ୍ରବଳ ପ୍ରବର୍ତ୍ତନା ଆବଶ୍ୟକ ହୋଇଥିଲା । ତା'ର କାରଣ ଥିଲା ଜଣେ ସାମ୍ୟ ମତବାଦୀ ହିସାବରେ ପାର୍ଲାମେଣ୍ଟ ସଭ୍ୟଜଣକ ଗୋଟିଏ ରାଜତନ୍ତ୍ର ପ୍ରତି ସମର୍ଥନ କରିବା ଲାଗି ସଦୟଭାବେ ଇଚ୍ଛୁକ ନଥିଲେ । ପ୍ରଥମେ ସେ ସେହି ସମସ୍ୟା ବିଷୟରେ ହସ୍ତକ୍ଷେପ କରିବା ପାଇଁ ଅସ୍ୱୀକାର କରି ଦେଇଥିଲେ । କାରଣ, ଗାଦିଚ୍ୟୁତ ହୋଇଥିବା ମହାରାଜା ତାଙ୍କର ନଥିପତ୍ର ସିଧାସଳଖଭାବେ ତାଙ୍କୁ ଦେଇ ନଥିଲେ । ତେବେ ମୋତିଲାଲ ତାଙ୍କର ହୃଦବୋଧ କରାଇ ଦେଇଥିଲେ ଯେ, ଉକ୍ତ ରାଜ୍ୟର ଜନସାଧାରଣ ସେମାନଙ୍କ ରାଜ୍ୟର ଅଖଣ୍ଡତା ସଂରକ୍ଷଣ ଦିଗରେ ଆଗ୍ରହୀ ଥିବାରୁ ମହାରାଜାଙ୍କ ପରିବର୍ତ୍ତେ ସେମାନେହିଁ ସାହାଯ୍ୟ କରିବା ପାଇଁ ଆଗ୍ରହ ଜଣାଉଛନ୍ତି ବୋଲି ମନେ କରିବାକୁ ହେବ । ଏହି ଶେଷ ଯୁକ୍ତିଟି ତାଙ୍କୁ ପ୍ରଭାବିତ କରାଇଥିଲା ଏବଂ ଯଦିଚ ତାଙ୍କ ପଦକ୍ଷେପ ଟୋରିମାନଙ୍କ ସଂଖ୍ୟା ଗରିଷ୍ଠତା ଯୋଗୁଁ କମନ୍‌ସ ସଭାରେ ପରାଜୟ ଲାଭ କରିଥିଲା, ତଥାପି ତାହାର ପରିଣାମ ସ୍ୱରୂପ ମହାରାଜ ପୁଣିଥରେ ଆପଣାର ସିଂହାସନ-ପ୍ରାପ୍ତ ହୋଇଥିଲେ ।

# ସାତ : ଅନ୍ୟ ଏକ ରୂପାନ୍ତର

ବିବାହିତ କନ୍ୟାମାନଙ୍କର ବୈବାହିକ ଜୀବନ ଗ୍ରହଣ କରିବାର ବୟସ 10 ରୁ 12 କୁ ବୃଦ୍ଧି କରିବା ପାଇଁ 1891 ମସିହାରେ ସରକାରଙ୍କ ପ୍ରସ୍ତାବ ବିତର୍କର ପ୍ରବଳ ଝଞ୍ଜା ସୃଷ୍ଟି କରିଥିଲା । ଗୋଟିଏ ବାଳିକା-ସ୍ତ୍ରୀର ରକ୍ତସ୍ରାବଜନିତ ମୃତ୍ୟୁ ଯୋଗୁଁ ତା'ର ସ୍ୱାମୀ ବିଚାରାଳୟରେ ଦୋଷୀ ସାବ୍ୟସ୍ତ ହୋଇ ଥିବାରୁ ସେହି ପ୍ରସ୍ତାବ ଆଗତ କରା ଯାଇଥିଲା ଏବଂ ତାହା ଉତ୍ତେଜନା ସୃଷ୍ଟି କରିଥିଲା । ଅମୃତ ବଜାର ପତ୍ରିକା ସେହି ବିଲ୍‌କୁ ବିରୋଧ କରୁଥିବା ରକ୍ଷଣଶୀଳ ଗୋଷ୍ଠୀଙ୍କ ସପକ୍ଷରେ ଯୋଗ ଦେଇଥିଲା । ତା'ର ଅର୍ଥ ନ ଥିଲା ଯେ ଘୋଷଭାଇମାନେ ଏହିଭଳି ସମାଜ ସଂସ୍କାରମୂଳକ ପଦକ୍ଷେପଗୁଡ଼ିକୁ ଆଇନତଃ ବିରୋଧ କରୁଥିଲେ; କିନ୍ତୁ ସେମାନଙ୍କ ଚିନ୍ତାଧାରା ଏହିଭଳି ଥିଲା : ପ୍ରଥମତଃ, ଯଦି ଇଉରୋପୀୟ-ମାନଙ୍କର ସ୍ୱତନ୍ତ୍ର ସୁବିଧା ସୁଯୋଗଗୁଡ଼ିକରେ ବ୍ୟତିକ୍ରମ ହୋଇ ପାରିବ ନାହିଁ (ଯଥା-ଇଲ୍‌ବର୍ଟ ବିଲ୍‌ର ଅସଫଳତା) ତେବେ ସରକାରୀ କାର୍ଯ୍ୟକଳାପ ଯୋଗୁଁ ଭାରତୀୟମାନଙ୍କର ସୁବିଧା ସୁଯୋଗସବୁକୁ କାହିଁକି ସଂକ୍ଷିପ୍ତ କରାଯିବ ? ସେଭଳି କୌଣସି ପଦକ୍ଷେପ ସ୍ୱୀକୃତ ହେବା ଉଚିତ ନୁହେଁ ଯେଉଁଗୁଡ଼ିକ ପାଇଁ ସାଧାରଣ ସମର୍ଥନ ମିଳୁନାହିଁ କିମ୍ବା ଜନସାଧାରଣଙ୍କ ମଧ୍ୟରୁ ସେଗୁଡ଼ିକର ଉଦ୍‌ଭବ ହୋଇନାହିଁ । ଦ୍ୱିତୀୟତଃ - ସେମାନେ ଆଶଙ୍କା କରିଥିଲେ ଯେ ପୁଲିସ୍ ବିଭାଗ ଲାଗି ହେଉଥିବା କେତେକ ଦୂଷଣୀୟ ସଂସ୍କାରମୂଳକ ପ୍ରସ୍ତାବଠାରୁ ଜନସାଧାରଣଙ୍କ ଦୃଷ୍ଟି ଭିନ୍ନମୁଖୀ କରାଇବା ପାଇଁ ସେହି ବିଲ୍‌ଟି ଗୋଟିଏ ପଦକ୍ଷେପ ଥିଲା । ତୃତୀୟତଃ - ଯେହେତୁ ବିଲ୍ ବିରୁଦ୍ଧରେ ସାଧାରଣ ଜନମତ ଅତି ପ୍ରବଳ ଥିଲା ଏହି ମତାମତର ଗଠନମୂଳକ ସଂଗଠନଗୁଡ଼ିକ ସାଧାରଣ ସଭା, ସମ୍ମିଳନୀ ତଥା ଧାରଣା ମାଧ୍ୟମରେ ଜାତୀୟ ରାଜନୈତିକ ଆନ୍ଦୋଳନକୁ ଉତ୍ସାହିତ କରି ପାରିବେ, ଯାହା ବାସ୍ତବିକ ଠିକ୍ ସେତିକି ବେଳେହିଁ ଆରମ୍ଭ ହୋଇଥିଲା । 'ପତ୍ରିକା' ଦେଇଥିବା ଆହ୍ୱାନ କ୍ରମେ ବିଶାଳ ଜନସଭାମାନ ଅନୁଷ୍ଠିତ ହୋଇଥିଲା ଏବଂ ଦେଶ ଉତ୍ତମରୂପେ ବର୍ଣ୍ଣନା କରାଯାଇ ସ୍ମାରକ ପତ୍ରମାନ ସରକାରଙ୍କ ନିକଟରେ ଦାଖଲ କରାଯାଇ ଥିଲା । ତଥାପି ସେହି ବିଲ୍ ଆଇନରେ ପରିଣତ ହୋଇ ଯାଇଥିଲା ।

ଜନସାଧାରଣଙ୍କ ସମର୍ଥନଯୁକ୍ତ ତତ୍‌କାଳୀନ ମତାମତସବୁକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ପ୍ରଚାର ପାଇଁ ଏକ ଦୈନିକ ସମ୍ବାଦପତ୍ରର ଆବଶ୍ୟକତା ଥିବା ସମ୍ପର୍କରେ 'ହିନ୍ଦୁ ପେଟ୍ରିଅଟ୍' ଦେଇଥିବା ଗୋଟିଏ ପରାମର୍ଶକୁ ବଙ୍ଗଳାର ନେତୃବର୍ଗ ସାନନ୍ଦରେ ଗ୍ରହଣ କରିଥିଲେ ।

ସାପ୍ତାହିକ 'ପତ୍ରିକା'କୁ ଦୈନିକରେ ପରିଣତ କରିବା ପାଇଁ ଘୋଷ ଭାଇମାନଙ୍କ ଉପରେ ପ୍ରବଳ ଚାପ ପଡ଼ିଥିଲା କିନ୍ତୁ ଏହି ସମୟରେ ଘୋଷ ଭାଇମାନଙ୍କର ଅବସ୍ଥା କୌଣସି ଦୃଷ୍ଟିରୁ ଉତ୍ତମ ନଥିଲା । ଚଳିବା ପାଇଁ ଯେତିକି ମାତ୍ର ଆବଶ୍ୟକ ପ୍ରାୟ ସେତିକିରେ ହିଁ ସେମାନେ ଚଳୁଥିଲେ ବୋଲି କୁହାଯାଇପାରେ । ସେହି କାରଣରୁ, ବହୁଗୁଣରେ ଅଧିକ ଆବଶ୍ୟକ ଥିବା ଖର୍ଚ୍ଚର ବୋଝ ବହନ କରିବା ପାଇଁ ସେମାନେ କୁଣ୍ଠା ପ୍ରକାଶ କରିଥିଲେ । କିନ୍ତୁ "ବନ୍ଧୁବର୍ଗ ତଥା ଜନଗଣଙ୍କ ମଧ୍ୟରୁ ଅନେକ ପ୍ରତିନିଧିମଣ୍ଡଳ ତଥା ତାଙ୍କର ଅନୁରାଗୀମାନେ ତାହାଙ୍କୁ ଚାହିଁ ବସିଥିଲେ ଏବଂ ଏପରିକି ସେମାନଙ୍କ ଖବରକାଗଜଟିକୁ ଦୈନିକରେ ପରିଣତ ନକଲେ ସେମାନଙ୍କ ଜୀବନକୁ ଆହୁରି ଅଧିକ କଷ୍ଟଦାୟକ କରାଇଦେବା ପାଇଁ ଧମକ ମଧ୍ୟ ଦେଇଥିଲେ । ତେଣୁ କୌଣସି ମତେ ସେମାନଙ୍କୁ ବାଧ୍ୟ ହୋଇ ସମ୍ମତ ହେବାକୁ ପଡ଼ିଲା ଏବଂ ଯଦିଚ ସେମାନଙ୍କ ନିକଟରେ ଯଥେଷ୍ଟ ପରିମାଣରେ ଛାପା ସାମଗ୍ରୀ ନଥିଲା, ତଥାପି ଅନ୍ଧକାର ଭିତରେ ହିଁ ଆଲୋକ ରେଖାର ସନ୍ଧାନ ପାଇଁ ସେମାନେ ଉଙ୍କି ମାରିଥିଲେ" (ପି. ଦତ୍ତଙ୍କ ପୁସ୍ତକରୁ ଗୃହୀତ) । ତେଣୁ 1891 ମସିହା ଫେବୃୟାରୀ 19 ତାରିଖ ଦିନ 'ପତ୍ରିକା' ଗୋଟିଏ ଇଂରାଜୀ ଦୈନିକରୂପେ ଆତ୍ମପ୍ରକାଶ କରିଥିଲା । ଜନସାଧାରଣ ସମସ୍ତ ପ୍ରକାର ସମର୍ଥନ ପାଇଁ ପ୍ରତିଜ୍ଞାବଦ୍ଧ ଥିଲେ ମଧ୍ୟ ଘୋଷ ଭାଇମାନଙ୍କୁ ସେମାନଙ୍କ କମରପଟିକୁ ଆହୁରି ଅଧିକ ଶକ୍ତଭାବେ ଭିଡ଼ିବା ପାଇଁ ହୋଇଥିଲା ।

ପତ୍ରିକାକୁ ଦୈନିକ ରୂପେ ରୂପାନ୍ତରିତ କରିବା ବ୍ୟତୀତ ସେହି ସଂଗ୍ରାମ ଆଉ ଗୋଟିଏ ଦୃଷ୍ଟିରୁ ମୋତିଲାଲଙ୍କ ଅନ୍ତରର ନିକଟତର ହୋଇ ପାରିଥିଲା । ତାହାଥିଲା ସାମାଜିକ ସଂସ୍କାରଗୁଡ଼ିକୁ ରାଜନୈତିକ ଆନ୍ଦୋଳନ ସହିତ ଏକୀକରଣ କରାଇବା । ତାହା ଏକ ଦଶନ୍ଧି ଭିତରେ ଶ୍ରୀ ଅରବିନ୍ଦ ଓ ବାଲ ଗଙ୍ଗାଧର ତିଳକଙ୍କ ଦ୍ୱାରା ଅଧିକ ବିସ୍ତାରିତ ହୋଇଥିଲା ଏବଂ ପୁଣି ଆହୁରି ଅଧିକତର ଭାବେ 1920 ମସିହା ବେଳକୁ ମହାତ୍ମା ଗାନ୍ଧୀଙ୍କଦ୍ୱାରା ଉନ୍ନତ ହୋଇଥିଲା ।

ସ୍ମରଣ କରାଯାଇ ପାରେ ଯେ କେବଳ ମ୍ୟୁନିସିପାଲିଟିଗୁଡ଼ିକ ପାଇଁ ନିର୍ବାଚନ ପଦ୍ଧତି ଅନୁମୋଦିତ ହୋଇଥିଲା । କଲିକତା ମ୍ୟୁନିସିପାଲିଟି ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲା ଯାହା 1892 ଆଇନ ଅନୁଯାୟୀ ବଙ୍ଗ ବିଧାନସଭାକୁ ଜଣେ ପ୍ରତିନିଧି ପ୍ରେରଣ କରିବାର ଅଧିକାର ପ୍ରାପ୍ତ ହୋଇଥିଲା । ସେହିବର୍ଷ ମୋତିଲାଲ କଲିକତା ମ୍ୟୁନିସିପାଲିଟି ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ପାଇଁ ସ୍ଥିର କରିଥିଲେ । ଅମୃତ ବଜାର ପତ୍ରିକାର ସଂପାଦକଙ୍କ ପ୍ରାର୍ଥିତ୍ୱକୁ ଜନସାଧାରଣଙ୍କ ମଧ୍ୟରୁ ଅନେକ ଗୋଷ୍ଠୀ ତଥା ପ୍ରାୟ ସମସ୍ତ ପତ୍ରପତ୍ରିକା ସମ୍ବର୍ଦ୍ଧିତ କରିଥିଲେ । ସେ ନିର୍ବାଚନ ଲଢୁଥିବା ଏକ ନମ୍ବର ୱାର୍ଡ ସହରର ଦକ୍ଷିଣାଞ୍ଚଳରେ ଥିଲା ଯେଉଁଠି କେବଳ ଭାରତୀୟମାନେ ବାସ କରୁଥିଲେ ଏବଂ ସେହି ଅଞ୍ଚଳ ମଧ୍ୟ କାୟସ୍ଥ ସମ୍ପ୍ରଦାୟର ଅନେକ ସଂଭ୍ରାନ୍ତ ଶ୍ରେଣୀୟ ପରିବାରର ବାସସ୍ଥଳୀ ଥିଲା । ସେମାନେ ସେଠିକାର ସୀମିତ ବିତ୍ତଶାଳୀ ଲୋକଙ୍କୁ ନେଇ ଗଠିତ ହୋଇଥିବା ନିର୍ବାଚନ ମଣ୍ଡଳୀରେ ପ୍ରବଳ ପ୍ରଭାବ ବିସ୍ତାର କରିଥିଲେ । ମୋତିଲାଲଙ୍କ ପ୍ରାର୍ଥିତ୍ୱ ସେଠିକାର ସ୍ଥାନୀୟ ସମ୍ବାଦପତ୍ରମାନଙ୍କ ପ୍ରବଳ ସମର୍ଥନ ଲାଭ କରିଥିବା ବେଳେ ଆଉ ଦୁଇ ଜଣ ପ୍ରାର୍ଥୀ ଥିଲେ ସେହି ସମ୍ଭ୍ରାନ୍ତ ଗୋଷ୍ଠୀର - ଜଣେ ଜମିଦାର

ପଶୁପତିନାଥ ବସୁ ଏବଂ ଆଉଜଣେ, ପରକାଳର ଇମ୍ପେରିଏଲର ସଭ୍ୟଭାବେ ବିଶେଷ ଖ୍ୟାତି ଅର୍ଜନ କରିଥିବା ଭୂପେନ୍ଦ୍ରନାଥ ବସୁ । ସେହି ଅଞ୍ଚଳରେ ଜଣେ ନୂତନ ବାସିନ୍ଦା ରୂପେ ପରିଚିତ ଥିବା ବ୍ୟତୀତ ମୋତିଲାଲ ସେଠି ଗୋଟିଏ ସ୍ଥାୟୀ ବାସଗୃହର ମାଲିକ ମଧ୍ୟ ହୋଇ ପାରି ନଥିଲେ । ତାଙ୍କର ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀଙ୍କ ମଧ୍ୟରେ ପ୍ରଥମୋକ୍ତ ଜଣକ ଥିଲେ ବ୍ରିଟିଶ୍ ଇଣ୍ଡିଆନ୍ ଏସୋସିଏସନ୍‌ର ପଥପ୍ରଦର୍ଶକ ଏବଂ ଶେଷୋକ୍ତ ଜଣକ ଥିଲେ ଜଣେ ପ୍ରଖ୍ୟାତ ରାଜନୈତିକ ଉଦାରପନ୍ଥୀ । ତେବେ ଆପାତତଃ କେବଳ ସମ୍ମାନଜନକ ସ୍ଥିତିକୁ ନେଇ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା ଏବଂ ପ୍ରାର୍ଥୀମାନଙ୍କର ପାରିବାରିକ ଭିତ୍ତିଭୂମି ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଇଥିଲା । ପ୍ରତିଦ୍ୱନ୍ଦ୍ୱୀମାନେ ଭୋଟଦାତାମାନଙ୍କୁ ପାର୍ଥିବ ଲାଭ ନେଇ ପ୍ରତିଶ୍ରୁତି ଦେବା ପାଇଁ ସମର୍ଥ ଥିଲେ ଏବଂ ସେମାନେ ସ୍ଥାନୀୟ ସମ୍ମାନନୀୟ ବାସିନ୍ଦାମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ସେମାନଙ୍କ ନିକଟରୁ ସହାୟତା କାମନା କରିଥିଲେ । କିନ୍ତୁ ମୋତିଲାଲ କେବଳ ସେମାନଙ୍କର ସେବା କରିବା ପାଇଁ ଆପଣାର ସମ୍ମତି ପ୍ରଦାନ କରିବା ବ୍ୟତୀତ ଅନ୍ୟ କିଛି କରିପାରୁ ନଥିଲେ । ତେଣୁ ମୋତିଲାଲ ସେହି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱୀଙ୍କ ନିକଟରୁ ପରାଜିତ ହୋଇଥିଲେ । ଛାତ୍ର ସମ୍ମିଳନୀ ତରଫରୁ ହୋଇଥିବା ଗୋଟିଏ ସଭାରେ ଜଣେ ବକ୍ତାଙ୍କ କହିବା ଭଳି, ତାର କାରଣ ଥିଲା, "ସେ ଭୋଟଦାତାମାନଙ୍କୁ ଭୂରିଭୋଜନ ଦେବା ପାଇଁ ପ୍ରତିଶ୍ରୁତି ଦେଇ ପାରିଲେ ନାହିଁ, କାରଣ ସେ ଭୋଟସବୁ କିଣିବା ଭଳି ନିମ୍ନତର ମାନର କାର୍ଯ୍ୟ କରି ପାରିଲେ ନାହିଁ ; କାରଣ 'ପତ୍ରିକା'ର ଦକ୍ଷତାପୂର୍ଣ୍ଣ ଓକିଲାତି ଯୋଗୁଁ ବଙ୍ଗଳାର ଜନସାଧାରଣ ଆପଣାର ଲୋକଙ୍କୁ କମିଶନର ରୂପେ ନିର୍ବାଚିତ କରାଇବାର ଅଧିକାର ଲାଭ କରିପାରି ଥିଲେ ।"

ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାର ସେହି ଅଭିଜ୍ଞତା ମୋତିଲାଲଙ୍କୁ ପୁଣିଥରେ କୌଣସି ନିର୍ବାଚିତ ପଦପଦବୀ ପାଇଁ ଲଢ଼ିବା ଆକାଂକ୍ଷାରୁ ମୁକ୍ତ କରିଥିଲା ; ଯଦିଚ ସେ କଲିକତାର ବିଶିଷ୍ଟ ଲୋକଙ୍କ ମଧ୍ୟରେ ଥିବା ତିକ୍ତତାର ପରିହାର ପାଇଁ ମଧ୍ୟସ୍ଥତା କରିବା ଲାଗି ଅନେକବାର ଆହୂତ ହେଉଥିଲେ । ଏହା ସ୍ମରଣ କରାଯାଇ ପାରେ ଯେ ସଂସ୍କାରବାଦୀମାନଙ୍କ ମଧ୍ୟରେ ବିବାହ ବୟସ ନେଇ ସ୍ୱୀକୃତି ଦେବା ଆଇନ ସମ୍ପର୍କରେ ଥିବା ମତଦ୍ୱନ୍ଦ୍ୱ ମୁଖ୍ୟତଃ ବ୍ରାହ୍ମବାଦୀ ଏବଂ ରକ୍ଷଣଶୀଳ ଗୋଷ୍ଠୀଙ୍କ ମଧ୍ୟରେ ଅତି ତିକ୍ତ ହୋଇଥିଲା । ତେଣୁ ବ୍ରାହ୍ମବାଦ ତଥା ବ୍ରାହ୍ମବାଦୀମାନଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗମାନ ଦୀର୍ଘକାଳ ପାଇଁ ପ୍ରଚାରିତ ହୋଇଥିଲା । ଏପରିକି ମଧ୍ୟମପନ୍ଥାଧାରୀ ପତ୍ରିକା "ହିତବାଦୀ" ବ୍ରାହ୍ମମାନଙ୍କୁ ବ୍ୟଙ୍ଗାତ୍ମକ ଭାବରେ ନିନ୍ଦା କରିବା ଦିଗରେ ଅଭ୍ୟସ୍ତ ହୋଇ ଯାଇଥିଲା । ଏଭଳି ହୋଇଥିଲା ଯେ ସେଥିରେ ଥରେ ଜଣେ ବ୍ରାହ୍ମ ସମ୍ମାନନୀୟ ପ୍ରଫେସରଙ୍କ ସ୍ତ୍ରୀଙ୍କ ପ୍ରତି ଏଭଳି ଭାବରେ ଅଶ୍ଳୀଳ ଲେଖା ପ୍ରକାଶ କରାଯାଇଥିଲା ଯେ ପତ୍ରିକା ବିରୁଦ୍ଧରେ ମାନହାନିମୂଳକ ନାଲିସ କରାଯାଇ ଥିଲା । ଏହି ସମୟରେ ରାଜ୍ୟର ବିଧାନ ସଭାରେ ସଭ୍ୟଥିବା ମୋତିଲାଲ ଏବଂ ସୁରେନ୍ଦ୍ରନାଥ 'ଡ୍ରେନେଜ୍ ବିଲ୍'ରେ ଥିବା କେତେକ ପ୍ରସ୍ତାବିତ କର ବିବାଦରେ ଲିପ୍ତ ରହିଥିଲେ । ଯେତେବେଳେ ମୋତିଲାଲ ନିନ୍ଦିତ ମହିଳାଙ୍କ ସପକ୍ଷରେ ଯାଇଥିଲେ, ସୁରେନ୍ଦ୍ରନାଥ ତାଙ୍କଦ୍ୱାରା ଆଶ୍ରିତ ସମ୍ପାଦକ କାଳୀପ୍ରସନ୍ନ କାବ୍ୟ ବିଶାରଦଙ୍କୁ ସମର୍ଥନ କରିବା ପାଇଁ ନିଜକୁ ପ୍ରଭାବିତ କରିଥିଲେ । କଚେରୀରେ ବିଚାର ଚାଲିଥିବା ଯୋଗୁଁ ମୋତିଲାଲ ଯଦିଚ କେଶ ସପକ୍ଷରେ ଯାଇ ନଥିଲେ, ସମାଧାନର ଏକ ସୂତ୍ରରୂପେ ପତ୍ରିକାର

ସମ୍ପାଦକ ସ୍ପଷ୍ଟରୂପେ କ୍ଷମା ଯାଚନା କରିବା ପାଇଁ ସେ ପରାମର୍ଶ ଦେଇଥିଲେ । କିନ୍ତୁ ସମ୍ପାଦକ ତାହାକୁ ସ୍ୱୀକାର କରି ନଥିଲେ । କେସ୍ ବିଚାର ହୋଇଥିଲା । ଶେଷରେ କାବ୍ୟ ବିଶାରଦ ଦୋଷୀ ସାବ୍ୟସ୍ତ ହୋଇଥିଲେ ।

ମୋତିଲାଲଙ୍କ ବିରୁଦ୍ଧରେ କାବ୍ୟ ବିଶାରଦ ଦୀର୍ଘକାଳରୁ ଆକ୍ରୋଶ ପୋଷଣ କରି ଆସିଥିଲେ । କାରାମୁକ୍ତ ହେବା ପରେ ପରେ ତାଙ୍କ ବିରୁଦ୍ଧରେ ଏକ ଅଭିଯାନ ସେ ନିଜ ପତ୍ରିକା 'ହିତବାଦୀ' ମାଧ୍ୟମରେ ଆରମ୍ଭ କରିଥିଲେ । ତାଙ୍କର କଲମ ବେଶ୍ ପ୍ରଭାବଶାଳୀ ଥିଲା । କିନ୍ତୁ ସେ ପ୍ରଦାନ କରୁଥିବା ତଥ୍ୟାବଳୀ କିମ୍ବା ବ୍ୟକ୍ତିବିଶେଷଙ୍କ ବିଷୟରେ କରୁଥିବା ସମାଲୋଚନାର ବୈଧାନିକ ସୀମା ବିଷୟରେ ସେ ବିଶେଷ ଯତ୍ନଶୀଳ ନଥିଲେ । ପରିଶେଷରେ 1889 ମସିହାରେ ଘୋଷ ଭାଇମାନେ ତାଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା କରିବା ପାଇଁ ସ୍ଥିର କରିଥିଲେ । ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ସେ ମଧ୍ୟ ଘୋଷ ଭାଇମାନଙ୍କ ବିରୁଦ୍ଧରେ ମାନହାନି ମୂଳକ ମକଦ୍ଦମା କରିଥିଲେ । କାବ୍ୟ ବିଶାରଦ ହାଇକୋର୍ଟର ଆଶ୍ରୟ ନେଇଥିଲେ ମଧ୍ୟ ପରିଶେଷରେ କ୍ଷମା ପ୍ରାର୍ଥନା କରିବା ପାଇଁ ବାଧ୍ୟ ହୋଇଥିଲେ । ମୋତିଲାଲ ତାଙ୍କର ଜଣେ ବ୍ୟକ୍ତିଗତ ତଥା ଅତି ଘନିଷ୍ଠ ବନ୍ଧୁ ଭୂପେନ୍ଦ୍ର ନାଥ ବସୁଙ୍କ ପ୍ରରୋଚନା କ୍ରମେ ନିଜର ଅନିଚ୍ଛା ସତ୍ତ୍ୱେ ତାହା ଗ୍ରହଣ କରିଥିଲେ ।

ଯେତେବେଳେ ପତ୍ରିକାର ସମ୍ପାଦକ ହିସାବରେ ମୋତିଲାଲ 1901 ମସିହାରେ କୁଲି ଔପନିବେଶିକ ଅଫିସର ମିଷ୍ଟର ହଫ୍ (Mr. Hoff) ନାମକ ଜଣେ ଇଉରୋପୀୟ ବ୍ୟକ୍ତିଙ୍କ ନାମରେ କାନପୁରଠାରେ ଗୋଟିଏ 'କଳଙ୍କପୂର୍ଣ୍ଣ ତଥା ମାନହାନିସୂଚକ' ମକଦ୍ଦମା ଦାଏର କରିଥିଲେ, କାବ୍ୟ ବିଶାରଦ ହଫ୍‌ଙ୍କ ପକ୍ଷ ନେଇ ପୁଣିଥରେ ସକ୍ରିୟ ହୋଇ ଉଠିଥିଲେ । ସେ କଲିକତାଠାରୁ କାନପୁର ପର୍ଯ୍ୟନ୍ତ ଦୀର୍ଘପଥ ଅତିକ୍ରମ କରି ସ୍ୱେଚ୍ଛାମୂଳକ ଭାବେ ଯାଇଥିଲେ ମୋତିଲାଲଙ୍କୁ ପ୍ରତିବାଦିତ ପତ୍ରିକାର ସମ୍ପାଦକ ରୂପେ ପ୍ରମାଣିତ କରିବା ପାଇଁ । କିନ୍ତୁ ତାଙ୍କର ସାକ୍ଷ୍ୟ ଗୃହୀତ ହୋଇ ନଥିଲା । ସେହି ଖବରକାଗଜରେ ପ୍ରକାଶିତ ସମ୍ପାଦକୀୟ ବିବରଣୀଗୁଡ଼ିକ ପାଇଁ ଦାୟିତ୍ୱ ମୋତିଲାଲ ଆପଣାଛାଏଁ ସ୍ୱୀକାର କରି ନେଇ ଥିବାରୁ ତାହାର ଆବଶ୍ୟକତା ହିଁ ନଥିଲା । ଆହ୍ଲାବାଦରେ ହୋଇଥିବା ଗୋଟିଏ ମକଦ୍ଦମାରେ ହଫ୍ ନିର୍ଦ୍ଦୋଷରେ ଖଲାସ ହୋଇଯାଇଥିବା ଯୋଗୁଁ ସେହି ମକଦ୍ଦମାଟି ହୋଇଥିଲା । ସେଥିରେ ଜଣେ ମାରୱାଡ଼ି ମହିଳାଙ୍କୁ ଗୋଟିଏ କୁଲି ନିଯୁକ୍ତି କେନ୍ଦ୍ରରେ ବେନିୟମ ଭାବରେ ଅଟକ ରଖାଯାଇ ତାଙ୍କଠାରୁ ସମସ୍ତ ଅଳଙ୍କାରପତ୍ର ଛଡ଼ାଇ ନିଆଯିବା ଅଭିଯୋଗ କରାଯାଇ ଥିଲା । କୋର୍ଟରେ ଥିବା ନଅ ଜଣ ବିଚାରପତିଙ୍କ ମଧ୍ୟରୁ ଛଅ ଜଣ ତାଙ୍କୁ ନିର୍ଦ୍ଦୋଷରେ ଖଲାସ କରାଇବା ସପକ୍ଷରେ ଥିଲେ । ନିଜେ ବିଚାରପତି ଥିଲେ ଜଣେ ଇଉରୋପୀୟ ଏବଂ ସେ ସଂଖ୍ୟାନ୍ୟୁନ ବିଚାରପତିମାନଙ୍କ ସପକ୍ଷରେ ମତ୍ତ୍ୱେଦେଇ ହଫ୍‌ଙ୍କୁ ଦୋଷୀ ବୋଲି ବିଚାର କରିଥିଲେ ମଧ୍ୟ ମକଦ୍ଦମାର ପୁନଃ ବିଚାର ପାଇଁ ଆଦେଶ ଦେଇ ନଥିଲେ । କାରଣ ସେ ଲକ୍ଷ୍ୟ କରିଥିଲେ, ଅନ୍ୟ ବିଚାରପତିମାନଙ୍କୁ ନେଇ (ଏପରିକି ସେଇ ଇଉରୋପୀୟ ବ୍ୟକ୍ତିଙ୍କୁ ନେଇ) ସେହି ମକଦ୍ଦମାର ବିଚାର କଲେ ମଧ୍ୟ କୌଣସି ଭିନ୍ନ ପରିଣାମ ହୋଇପାରିବ ନାହିଁ । "ଅନ୍ୟ ଭାଷାରେ, ବିଚାରପତି ମହୋଦୟଙ୍କ ମତରେ ଗୋଟିଏ ଇଉରୋପୀୟ

ବିଚାରକମଣ୍ଡଳୀ ଜଣେ ଇଉରୋପୀୟ ଅପରାଧୀକୁ କଦାପି ଦୋଷୀ ସାବ୍ୟସ୍ତ କରିବେ ନାହିଁ । ତେଣୁ ପୁଣି ଥରେ ବିଚାର କରିବା ପାଇଁ ଆଦେଶ ଦେବା ଅନାବଶ୍ୟକ'' ବୋଲି 'ପତ୍ରିକା' ମନ୍ତବ୍ୟ ପ୍ରକାଶ କରିଥିଲା ।

ତେବେ ପତ୍ରିକାର ଜଣେ ସାମ୍ବାଦିକ ମନ୍ତବ୍ୟ ଦେଇଥିଲେ ଯେ ଯଦିଓ ହ୍ୱାଫଙ୍କ ବିରୁଦ୍ଧରେ ବଳାତ୍କାର କରିବା ଭଳି ଅପରାଧମୂଳକ ଅଭିଯୋଗ ହୋଇଥିଲା ତଥାପି ବିଚାର ବେଳେ ସେହି ଅଭିଯୋଗ ଦାଖଲ ହୋଇ ପାରି ନଥିଲା । ତେଣୁ 'ପତ୍ରିକା' ଆପଣାର ଦୁଃଖ ପ୍ରକାଶ କରିଥିଲା ଯେ ସେହି ବିବରଣୀ ପ୍ରକାଶ ପାଇବା ପରେ ମଧ୍ୟ ଅଜ୍ଞତା ବଶତଃ ତାଙ୍କର କୌଣସି କ୍ଷତି ହୋଇ ପାରି ନଥିଲା । ହ୍ୱାଫ କିନ୍ତୁ ସେଥିରେ ସନ୍ତୁଷ୍ଟ ନଥିଲେ । ତେଣୁ ସେ ମୋତିଲାଲ ଏବଂ 'ପତ୍ରିକା'ର ମୁଦ୍ରକ ବିରୁଦ୍ଧରେ ମାନହାନି ଅଭିଯୋଗ କରି ମକଦ୍ଦମା ଦାଏର କରିଥିଲେ । ମୋତିଲାଲ ଯୁକ୍ତି ଦାଖଲ କରିଥିଲେ ଯେଉଁଥିରେ ସେ ପ୍ରମାଣ ଯୋଗାଇ ଦେଇଥିଲେ ଯେ ସେହି ରିପୋର୍ଟଟି ପ୍ରକାଶ ପାଇବା ଦିନ ସେ ସେହି ସହର ବାହାରେ ଥିଲେ । 'ଦି ବେଙ୍ଗଲୀ'ର ସମ୍ପାଦକ ସୁରେନ୍ଦ୍ରନାଥ ବାନାର୍ଜୀ ସେହିଭଳି ଅନ୍ୟ ଏକ ଆକ୍ଷେପରେ ଅଭିଯୁକ୍ତ ହୋଇଥିଲେ ଏବଂ ସେ ମଧ୍ୟ ଠିକ୍ ସେହିଭଳି ଏକ ଯୁକ୍ତି ଉପସ୍ଥାପିତ କରି ଓକିଲାତି କରିଥିଲେ । ତାଙ୍କର ସେହି ଯୁକ୍ତି ଗୃହୀତ ହୋଇଥିଲା କିନ୍ତୁ ମୋତିଲାଲଙ୍କ କ୍ଷେତ୍ରରେ ତାହା ଅଗ୍ରାହ୍ୟ ହୋଇ ଯାଇଥିଲା ଏବଂ ଏକହଜାର ଟଙ୍କା ଜୋରିମାନା ହୋଇଥିଲା । ସେଥିପାଇଁ ମୋତିଲାଲ ସେସନସ୍ କୋର୍ଟରେ ଅପିଲ କରିଥିଲେ ଏବଂ ସେଠାରେ ନିର୍ଦ୍ଦୋଷ ପ୍ରମାଣିତ ହୋଇଥିଲେ । ତଳ କଚେରୀର ରାୟ ତଥା ଅଭିଯୁକ୍ତ ପ୍ରତି କୁ-ବ୍ୟବହାର ନେଇ ସମସ୍ତ ସମ୍ବାଦପତ୍ର ମର୍ମଭେଦୀ ଟିପ୍ପଣୀ ପ୍ରଦାନ କରିଥିଲେ । 'ଦି ଷ୍ଟେଟସ୍‌ମ୍ୟାନ୍' ଲେଖିଥିଲା : ''ଜଏଣ୍ଟ ମାଜିଷ୍ଟ୍ରେଟ୍‌ଙ୍କ ଯୁକ୍ତିସମୂହର ଅପ୍ରାସଙ୍ଗିକତା ବିଷୟରେ ନକହିବା ଭଲ । ବାସ୍ତବିକ ତାଙ୍କର ବିଚାର ଦକ୍ଷତା ପ୍ରତି ପ୍ରବଳ ସନ୍ଦେହ ସୃଷ୍ଟିହୁଏ ।''

ବିଚାରକମଣ୍ଡଳୀଙ୍କ ଦ୍ୱାରା ବିଚାର ପଦ୍ଧତିର ଦୃଢ଼ ସମର୍ଥକ ଥିଲେ ମୋତିଲାଲ । କିନ୍ତୁ ସେହିଭଳି ବିଚାରକମଣ୍ଡଳୀର ଜାତିଗତ ସାଙ୍ଗଠନିକତାର ସମର୍ଥକ ନଥିଲେ ଯାହା ଜଣେ ଇଉରୋପୀୟ ଅପରାଧୀର ବିଚାର ସହ ସମ୍ପୃକ୍ତ ହେବାବେଳେ ସମ୍ପୂର୍ଣ୍ଣ ପୃଥକ୍ ହୋଇ ଯାଉଥିଲା । ସେହି ଦୃଷ୍ଟିରୁ ଦେଖିଲେ ସେଇ ହ୍ୱାଫ ମକଦ୍ଦମା ଥିଲା ଚଡ଼ାରେ ଅଟକି ଯାଇଥିବା ଅସଂଖ୍ୟ ଘଟଣା ମଧ୍ୟରୁ ମାତ୍ର ଗୋଟିଏ । ତାହା ସେହି ଶତାବ୍ଦୀର ପରିବର୍ତ୍ତନ ସହିତ ଉଦ୍‌ଭବ ହୋଇଥିବା ଭାରତୀୟ ଜାତୀୟତାବାଦ ଗଠନ କରିବା ଦିଗରେ ସହାୟକ ହୋଇଥିଲା ।

## ଆଠ : ରାଜନୀତିର ସଂଗଠନ

କଂଗ୍ରେସରେ ଯୋଗଦେବା ପାଇଁ ଯାହା ମୋତିଲାଲଙ୍କୁ ଉଦ୍‌ବୁଦ୍ଧ କରିଥିଲା ସେ ବିଷୟରେ ପୂର୍ବରୁ ବର୍ଣ୍ଣନା କରାଯାଇ ଅଛି । ସେ ଏବଂ ସୁରେନ୍ଦ୍ରନାଥ ବାନାର୍ଜୀ, ଯିଏ ପରକାଳରେ ଶିକ୍ଷିତ ବ୍ୟକ୍ତିବୃନ୍ଦଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିପାରି ଥିଲେ, ଉଭୟେ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ନେଇ ଜାତୀୟ ଜାଗରଣ ପାଇଁ କାର୍ଯ୍ୟ କରିଥିଲେ । ଦୀର୍ଘ ଅତୀତରୁ, 1888 ମସିହାରୁ ଆରମ୍ଭ ହୋଇଥିବା ସେହି ବିଭିନ୍ନତା ଆନ୍ଦୋଳନର କ୍ରମ ବିକାଶ ସହିତ ପ୍ରଖର ହୋଇ ଉଠିଥିଲା ଏବଂ 1906 ମସିହା ବେଳକୁ ତାହା ଚୂଡ଼ାନ୍ତ ସ୍ତରରେ ପହଞ୍ଚିଥିଲା । ଦେଶୀୟ ସରକାରରେ ଇଂରେଜମାନଙ୍କ ସହିତ ସମାନ ସୁବିଧା ସୁଯୋଗର ଅଂଶୀଦାର ହେବାଲାଗି ଶିକ୍ଷିତ ଜନଗଣଙ୍କ ତତ୍ତ୍ୱାବଧାନରେ ଜନଗଣଙ୍କ ସଂଗଠିତ ଉଦ୍ୟମ ହେବା ଆବଶ୍ୟକ ବୋଲି ଉଦାରପନ୍ଥୀମାନେ ବିଶ୍ୱାସ ପୋଷଣ କରୁଥିଲେ । କିନ୍ତୁ ତାହା ନୂତନଭାବେ ଉଦ୍‌ବୃଦ୍ଧ ହେଉଥିବା ଚରମପନ୍ଥୀ ଗୋଷ୍ଠୀଙ୍କ ଠାରୁ ମୌଳିକଭାବେ ଭିନ୍ନ ଥିଲା । ସେମାନେ ବିଦେଶୀ-ମାନଙ୍କୁ ବାଦ ଦେଇ ଏକ ନିର୍ବାଚିତ ପାର୍ଲାମେଣ୍ଟ ଦ୍ୱାରା ଗଠିତ ସରକାରରେ ବିଶ୍ୱାସ କରୁଥିଲେ । ଅନ୍ୟ ଭାଷାରେ କୁହାଯାଇପାରେ ଯେ ପ୍ରଥମଟି ଆପଣାର ଧନ ସମ୍ପତ୍ତି ଓ ପ୍ରଜ୍ଞାଜନିତ ସ୍ୱାର୍ଥରକ୍ଷାର ପ୍ରତିନିଧିତ୍ୱ କରୁଥିବା ବେଳେ ଶେଷୋକ୍ତଟି ଜନସାଧାରଣଙ୍କ ପ୍ରତିନିଧିତ୍ୱ କରୁଥିଲା । କୌଣସିଟିର କର୍ତ୍ତବ୍ୟନିଷ୍ଠା ଉପରେ ସନ୍ଦେହ କରା ଯାଇ ନପାରେ । ବଙ୍ଗଳାରେ ସୁରେନ୍ଦ୍ରନାଥ ଉଦାରପନ୍ଥୀ ଦଳର ନେତୃତ୍ୱ ନେଉଥିଲେ । ସାଂପ୍ରତିକ ସମସ୍ୟାବଳୀ ଉପରେ ବିଚାରଧାରା ନେଇ ସେମାନଙ୍କ ମଧ୍ୟରେ ଉପୁଜୁଥିବା ମତପାର୍ଥକ୍ୟ ସବୁବେଳେ ସେମାନେ ଅନୁଭବ ମଧ୍ୟ କରି ପାରୁଥିଲେ ।

ମହାରାଷ୍ଟ୍ରରେ ମଧ୍ୟ ସେହିଭଳି ପାରସ୍ପରିକ ବିଚ୍ଛିନ୍ନତା ବୋଧ ସୃଷ୍ଟି ହୋଇଥିଲା । ଶିଶିର କୁମାର ଘୋଷଙ୍କ ଶିଷ୍ୟରୂପେ ଆପଣାଛାଏଁ ପରିଚିତ ବାଳ ଗଙ୍ଗାଧର ତିଳକ ଚରମପନ୍ଥୀ ମତବାଦର ନେତୃତ୍ୱ ନେଉଥିଲା ବେଳେ ଉଦାରପନ୍ଥୀମାନଙ୍କ ନେତା ଥିଲେ ବିଶିଷ୍ଟ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତି ଗୋପାଳ କୃଷ୍ଣ ଗୋଖଲେ । ସାମଗ୍ରିକ ଭାବେ ଦେଖିଲେ ତାଙ୍କର ପ୍ରଚଣ୍ଡ ବିଚକ୍ଷଣତା ଥିଲା କିନ୍ତୁ ସେତିକି ମାତ୍ରାରେ ଉତ୍ସାହ ନଥିଲା । ଚରମପନ୍ଥୀମାନେ ଆଦର୍ଶଗତ ଉତ୍ସୁକତାର ପ୍ରାଚୁର୍ଯ୍ୟ ଭିତରୁ ଗଠିତ ହୋଇଥିବାରୁ ସେତିକି ମାତ୍ରାରେ ବିଚକ୍ଷଣ ନଥିଲେ । ଖୁବ୍ ଶୀଘ୍ର ସେମାନଙ୍କ ସହିତ ଶ୍ରୀ ଅରବିନ୍ଦ, ବିପିନ ଚନ୍ଦ୍ର ପାଲ୍, ଲାଲା ଲାଜପତ ରାୟ, ସର୍ଦ୍ଦାର ଅଜିତ୍ ସିଂହ ଏବଂ ଅନ୍ୟମାନେ ଯୋଗ ଦେଇଥିଲେ ।

ବଙ୍ଗଳାରେ ପ୍ରାଦେଶିକ ରାଜନୈତିକ ସମ୍ମିଳନୀ ଆୟୋଜନ କରାଯିବା ଲାଗି ସ୍ଥିର କରାଯିବାର କାରଣଗୁଡ଼ିକ ପୂର୍ବରୁ ବର୍ଣ୍ଣନା କରାଯାଇଛି । ସେହିଭଳି ପ୍ରଥମ ସମ୍ମିଳନୀ 1888 ମସିହାରେ ଇଣ୍ଡିଆନ୍ ଏସୋସିଏସନ୍ ଆନୁକୁଲ୍ୟରେ କଲିକତାରେ ଅନୁଷ୍ଠିତ ହୋଇଥିଲା । ତାହାର ଅବିବାଦିତ ନେତା ଥିଲେ ସୁରେନ୍ଦ୍ରନାଥ ଏବଂ ତାହା କଂଗ୍ରେସର ବଙ୍ଗଳା ଶାଖା ରୂପେ କାର୍ଯ୍ୟ କରୁଥିଲା । ବୃହତ୍ତରଭାବେ ସାଧାରଣ ଜନମତର ପ୍ରତିନିଧିତ୍ୱ କରିବାଲାଗି ଚାହିଦା ପୂରଣ ଦିଗରେ ମଫସଲ ସହରଗୁଡ଼ିକରେ ସେହି ସମ୍ମିଳନୀର ବାର୍ଷିକ ଅଧିବେଶନଗୁଡ଼ିକ ଅନୁଷ୍ଠିତ କରାଇବା ପାଇଁ ସେହି ସମ୍ମିଳନୀରେ ଦାବୀ କରାଯାଇ ଥିଲା । 1895 ମସିହା ପରଠାରୁ ସେଗୁଡ଼ିକ ବିଭିନ୍ନ ସହରରେ ଅନୁଷ୍ଠିତ ହୋଇଥିଲା । 1897 ମସିହାରେ ତାହା ନାଟୋର ସହରରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଗୋଟିଏ ମଞ୍ଚ ସ୍ୱତନ୍ତ୍ର ଭାବରେ ନିର୍ମିତ ହୋଇଥିଲା । ସମ୍ମିଳନୀର ଶେଷଦିନ ଛଅ ମିନିଟ୍ ପାଇଁ ଭୂମିକମ୍ପ ହୋଇଥିଲା ଯାହା ବଙ୍ଗଳାରେ ଆତଙ୍କ ସୃଷ୍ଟି କରିଥିଲା । ତାହା ସେହି ସହରରେ ମଧ୍ୟ ପ୍ରଭୂତ କ୍ଷତି ସାଧନ କରିଥିଲା । ତେବେ ମୋତିଲାଲ ଲେଖିଥିଲେ : "ତାହା ଘଟିବାର ଅଧ ଘଣ୍ଟାକ ପରେ ତଥାପି ସେହିଭଳି ସଂଗ୍ରାମୀ ମନୋଭାବ ପୋଷଣ କରିଥିବା ପ୍ରତିନିଧିଗଣ ପୁଣି ଥରେ ଏକତ୍ର ହୋଇଥିଲେ ସମ୍ମିଳନୀର ପରିସମାପ୍ତି ହୋଇ ନଥିବା ଦୃଷ୍ଟିରୁ ଅବଶିଷ୍ଟ କାର୍ଯ୍ୟକ୍ରମସବୁକୁ ଶେଷ କରିବା ପାଇଁ ।"

1896 ମସିହାରେ ପୂର୍ବ ଭାରତରେ ଏକ କରାଳ ଦୁର୍ଭିକ୍ଷ ଦେଖା ଦେଇଥିଲା ଏବଂ ତା ପରେ ପରେ ସଂକ୍ରାମକ ରୋଗ ପ୍ଲେଗ ଆକ୍ରମଣ କରିଥିଲା । ତିଳକ, ଗ୍ରୋକନ୍ ଭଳି ଅବିରତ ଭାବରେ କାର୍ଯ୍ୟ କରିଥିଲେ ଏବଂ ଦୁର୍ଭିକ୍ଷ ତଥା ଡାକ୍ତରୀ ସହାୟତା କ୍ଷେତ୍ରରେ ସରକାରୀ ପଦକ୍ଷେପଗୁଡ଼ିକୁ ସାହାଯ୍ୟ ଓ ସମର୍ଥନ ଯୋଗାଇ ଦେଇଥିଲେ । ଏସବୁଗୁଡ଼ିକ ମଧ୍ୟରେ ସେ ବାର୍ଷିକ ଶିବାଜୀ ଉତ୍ସବର ଆୟୋଜନ କରିଥିଲେ । ପ୍ଲେଗ ନିରାକରଣ ପାଇଁ ସରକାରୀ ପଦକ୍ଷେପଗୁଡ଼ିକ ସୈନ୍ୟବାହିନୀଦ୍ୱାରା ପରିଚାଳିତ ହେଉଥିଲା । ସେଗୁଡ଼ିକ ଅତି କଠୋର ଭାବରେ କାର୍ଯ୍ୟକାରୀ କରାଯାଉଥିଲା । 1897 ମସିହାରେ ଦୁଇଜଣ ମରାଠୀ ଯୁବକ - ଚାପେକାର ଭାଇମାନେ କ୍ୟାପଟେନ୍ ରାଣ୍ଡ ଏବଂ ଲେଫଟାଣ୍ଟ ଆୟେଷ୍ଟ (Capt. Rand and Lieutnant Ayerst) ନାମକ ଦୁଇଜଣ ସୈନ୍ୟ ବାହିନୀର ଅଫିସରଙ୍କୁ ହତ୍ୟା କରିଥିଲେ । ସେହି ଅଭିଯୁକ୍ତମାନଙ୍କର ଅବିଳମ୍ବ ବିଚାର କରାଯାଇ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯାଇଥିଲା । ସରକାରଙ୍କ ସେହି ପଦକ୍ଷେପ ଭାରତୀୟ ଜନମତକୁ ଶଙ୍କିତ କରାଇବା ସଙ୍ଗେ ସଙ୍ଗେ ମନରେ କ୍ରୋଧ ମଧ୍ୟ ସଞ୍ଚାର କରାଇ ଦେଇଥିଲା । 'କେଶରୀ' ପତ୍ରିକାରେ ତିଳକ ସେହି ଯୁବକ ଦୁଇଜଣଙ୍କ (ଦୁଇଭାଇ) ଉତ୍ସାହର ପ୍ରଶଂସା କରି କ୍ରମାନ୍ୱୟରେ କେତେଗୁଡ଼ିଏ ଲେଖା ଲେଖିଥିଲେ । ହିଂସାତ୍ମକ କାର୍ଯ୍ୟକଳାପକୁ ଉତ୍ସାହିତ କରିବା ଅଭିଯୋଗରେ ବମ୍ବେ ସରକାର ତାଙ୍କ ବିରୁଦ୍ଧରେ ମକଦ୍ଦମା ଦାଏର କରିଥିଲେ । ତାଙ୍କ ସପକ୍ଷରେ ଲଢ଼ିବା ପାଇଁ ଆରଥର ପୁଗ୍ (Arthur Pugh)ଙ୍କ ଭଳି ବାରିଷ୍ଟର ଯୋଗାଇ ଦେଇଥିଲେ । ବମ୍ବେର ବିଶିଷ୍ଟ ଓକିଲ ଡାଭେର (Davey) ତାଙ୍କୁ ସହାୟତା କରିଥିଲେ । ନଅ ଜଣ ବିଶିଷ୍ଟ ବିଚାରକମଣ୍ଡଳୀ ମଧ୍ୟରୁ ଛଅଜଣ ଇଉରୋପୀୟ ଜଜ୍ ସର୍ବସମ୍ମତି କ୍ରମେ ତାହାଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ ଏବଂ ତାହାଙ୍କର ଅପିଲ୍ ଅଧିକାର ବାତିଲ୍ କରାଯାଇ 18 ମାସ କାରାଦଣ୍ଡରେ ଦଣ୍ଡିତ କରାଯାଇ ଥିଲା । ତିଳକଙ୍କ କେତେଜଣ ବନ୍ଧୁ ତାହାଙ୍କୁ ପରାମର୍ଶ ଦେଇଥିଲେ

ଯେ ସେ କ୍ଷମା ପ୍ରାର୍ଥନା କରି ଜେଲ୍ ଦଣ୍ଡରୁ ମୁକ୍ତିଲାଭ କରନ୍ତୁ । କିନ୍ତୁ 'ପତ୍ରିକା' ସେଥିରେ ସମ୍ମତ ନଥିଲା । କୌଣସି ପ୍ରକାର କ୍ଷମାପ୍ରାର୍ଥନା ନକରିବା ଉଚିତ ବୋଲି ମତ ଦେଇଥିଲା ;

"ପ୍ରଥମତଃ ସେଥିରେ କୌଣସି ପ୍ରକାର ଉତ୍ତେଜନାମୂଳକ କାର୍ଯ୍ୟ କରାଯାଇ ନଥିଲା ଏବଂ ଦ୍ୱିତୀୟତଃ, ଯେଉଁମାନେ ରାଜନୀତିରେ ଜଳକ୍ରୀଡ଼ା କରିବାକୁ ଚାହାନ୍ତି ସେମାନଙ୍କୁ ସମସ୍ତ ସମ୍ଭାବନା ଭିତରେ ହିଁ ଗତି କରିବାକୁ ହୋଇଥାଏ । . . . ସଂକ୍ଷେପରେ କହିବାକୁ ଗଲେ, ତିଳକ ମହାରାଷ୍ଟ୍ରରେ ରହି ନିଜକୁ ନିଜେ ଅବନମିତ କରାଇବା ଅପେକ୍ଷା ସେ ବରଂ ଆଣ୍ଡାମାନ୍‌ରେ ରହିବା ଉଚିତ ହେବ.."

ଯେତେବେଳେ ସମାଧାନ ଲାଗି ଗୋଟିଏ ପ୍ରସ୍ତାବ ତିଳକଙ୍କ ନିକଟକୁ ପ୍ରେରଣ କରାଯାଇଥିଲା, ସେ ଗଭୀର ଭାବରେ କଷ୍ଟ ଅନୁଭବ କରିଥିଲେ । କାରଣ ଆପଣାର ସ୍ୱାର୍ଥ ଦୃଷ୍ଟିରୁ ସେଭଳି ଅପଯଶ ସୃଷ୍ଟିକରି ତାହା ନିଜ ଉପରକୁ ଟାଣିଆଣିବା ପାଇଁ (ଲୋକପ୍ରିୟତା ଲାଗି) ସେ ଇଚ୍ଛୁକ ନଥିଲେ ।

ମୋତିଲାଲଙ୍କୁ ଦେଇଥିବା ତିଳକଙ୍କ ଗୋଟିଏ ପତ୍ରରୁ ସେହି ସମସ୍ୟାର ଅର୍ନ୍ତଦୃଷ୍ଟି ସମ୍ପର୍କରେ ବିଚାର କରାଯାଇପାରେ :

"ଅପରାଧ ଯୁକ୍ତି ସମ୍ବଳିତ କାର୍ଯ୍ୟ କରିବା ପାଇଁ ଅନ୍ୟପକ୍ଷ ମୋ ଠାରୁ ଆଶା କରୁଛନ୍ତି । ମୁଁ ତାହା କରିବା ପାଇଁ ପ୍ରସ୍ତୁତ ନୁହେଁ । ଜନସମାଜ ମଧ୍ୟରେ ମୋର ସ୍ଥିତି ମୋ ନିଜ ଚରିତ୍ର ଉପରେ ହିଁ ନିର୍ଭର କରେ । ମୁଁ ଆନ୍ତରିକତାର ସହିତ ଜାଣେ ଯେ ଏଭଳି ଏକ ଅତି ତୁଚ୍ଛ ମକଦ୍ଦମା କୌଣସି କାଳେ ବିଚାରକମଣ୍ଡଳୀ ଆଗରେ ଉପସ୍ଥାପିତ ହୋଇ ନଥିବ । ମୁଁ ଯଦି ଏହି ମକଦ୍ଦମା ଯୋଗୁଁ ଭଗ୍ନୋତ୍ସାହ ହୋଇପଡ଼େ ତାହା ହେଲେ ମୋ ମତରେ ମହାରାଷ୍ଟ୍ରରେ ବାସ କରିବା ଆଣ୍ଡାମାନ୍‌ରେ ବାସ କରିବା ଠାରୁ କୌଣସି ଗୁଣରେ ଅଧିକ ନୁହେଁ ।

ସେମାନଙ୍କର ଉଦ୍ଦେଶ୍ୟ ଥିଲା ପୁନାର ନେତୃମଣ୍ଡଳୀଙ୍କୁ ଅବନମିତ କରାଇବା . . . ଆପଣ ନିଶ୍ଚୟ ମନେ ରଖିଥିବେ ଆମ୍ଭେମାନେ ସମସ୍ତେ ଜନସାଧାରଣଙ୍କର ସେବକ । ସଙ୍କଟଜନକ ସମୟରେ ଯଦି ଆପଣ ସେମାନଙ୍କୁ ଶୋଚନୀୟ ଭାବେ ସାହସର ଅଭାବ ପ୍ରଦର୍ଶନ କରନ୍ତି, ତା'ହେଲେ ଆପଣ ସେମାନଙ୍କୁ ପ୍ରତାରିତ କରିବା ସଙ୍ଗେ ସଙ୍ଗେ ହତୋତ୍ସାହିତ ମଧ୍ୟ କରିବେ । କିନ୍ତୁ ସର୍ବୋପରି ଜଣେ ସତ୍ୟନିଷ୍ଠ ଓ ସମ୍ମାନଜନକ ବ୍ୟକ୍ତି ହିସାବରେ ପ୍ରକୃତରେ ମୁଁ କରିଥିବା ତଥା ମୋ ବିରୁଦ୍ଧରେ ହୋଇଥିବା ଉତ୍ତେଜନାସୃଷ୍ଟି ମୂଳକ ଅଭିଯୋଗ ବିରୁଦ୍ଧରେ ମୁଁ କିପରି ଯୁକ୍ତି କରି ପାରିବି ? ମୁଁ ଯଦି ଦଣ୍ଡିତ ହୁଏ, ମୋର ଦୁର୍ଦ୍ଦଶାବେଳେ ଜନସାଧାରଣଙ୍କର ସହାନୁଭୂତି ମୋତେ ସାହସ ଯୋଗାଇ ଦେବ।"

ଓ

କିନ୍ତୁ ତିଳକଙ୍କ କେତେକ ଉତ୍ତମ ତଥା କ୍ଷମତାଶାଳୀ ବନ୍ଧୁ ବିଦେଶରେ ଥିଲେ । ପ୍ରଫେସର ମାକ୍ସ ମୁଲାର ଏବଂ ସାର୍ ଓ୍ୱିଲିୟମ୍ ହଣ୍ଟରଙ୍କଦ୍ୱାରା ଗୋଟିଏ ଦରଖାସ୍ତରେ ତାହାଙ୍କୁ ମୁକ୍ତ କରାଯିବା ପାଇଁ

ହ୍ୱିଟାଲ୍(Whitchall)କୁ ପ୍ରାର୍ଥନା କରାଯାଇଥିଲା । ପ୍ରାୟ ବର୍ଷକ ପରେ ସେ ଜେଲ୍ ମୁକ୍ତ ହୋଇଥିଲେ । ତେବେ ତାହାଙ୍କ ଆଶଙ୍କା ସତ୍ୟରେ ପରିଣତ ହୋଇଥିଲା । ଜଣେ ମହନ୍ତଙ୍କ ନ୍ୟାସପତ୍ରକୁ କାର୍ଯ୍ୟକାରୀ କରାଇବା ପରିପ୍ରେକ୍ଷୀରେ ସେ ଅସାଧୁତା, ମିଥ୍ୟା ଶପଥ ତଥା ଜାଲିଆତି କରିବା ଅଭିଯୋଗରେ ପୁଣି ଥରେ ଅଦାଲତକୁ ବଳାତ୍କାରରେ ଟଣା ହୋଇ ଯାଇଥିଲେ । ତଥାପି ଦୀର୍ଘକାଳ ଧରି ମକଦ୍ଦମାଟି ଚାଲିବା ପରେ ବିଫଳ ହୋଇ ଯାଇଥିଲା ।

ତିଲକଙ୍କ ମକଦ୍ଦମାର ଏକ ସୁଦୂରପ୍ରସାରୀ ପ୍ରଭାବ ପଡ଼ିଥିଲା । ତାହା ଫଳରେ 1897ରେ ରାଜଦ୍ରୋହାତ୍ମକ କାର୍ଯ୍ୟକଳାପଜନିତ ଆଇନର 124(କ) ଧାରାକୁ ପୁନଃ ସଂକ୍ଷିପ୍ତକରଣ ତଥା ସାରବାନ୍ କରାଯିବା ସଙ୍ଗେ ସଙ୍ଗେ 153(କ) ଧାରାରେ ଆଉ ଅନ୍ୟ ଧାରା ଯୋଗ କରାଯାଇ ସେଗୁଡ଼ିକୁ ଆହୁରି ଅଧିକ କଡ଼ାକଡ଼ିଭାବରେ ପ୍ରୟୋଗ କରାଯାଇଥିଲା । ପୁଣି ଜନସାଧାରଣଙ୍କ ପ୍ରବଳ ପ୍ରତିରୋଧ ସତ୍ତ୍ୱେ 505 ଧାରାକୁ ସଂଶୋଧନ କରା ଯାଇଥିଲା । ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ମେକେନ୍‌ଜି (Mackenzie) ଖୋଲାଖୋଲି ଭାବେ ସ୍ୱୀକାର କରିଥିଲେ ଯେ "ଆତ୍ମରକ୍ଷା" ପାଇଁ ସେଭଳି ପଦକ୍ଷେପସବୁର ଆବଶ୍ୟକତା ଥିଲା, ଯାହା "ପ୍ରତ୍ୟେକ ସରକାର - ବିଶେଷ କରି ଗୋଟିଏ ବିଦେଶୀ ସରକାର ପାଇଁ ପ୍ରଥମ କର୍ତ୍ତବ୍ୟ ।" ଲଣ୍ଡନରୁ ପ୍ରକାଶ ପାଉଥିବା ଦୈନିକ 'କ୍ରନିକାଲ୍' ପତ୍ରିକାରେ ରାଜଦ୍ରୋହାତ୍ମକ ଆନ୍ଦୋଳନର ଉପଯୋଗିତା ବିଷୟ ନେଇ ଉଦାରପନ୍ଥୀମାନଙ୍କ ଟିପ୍ପଣୀ ପ୍ରକାଶ ପାଇଥିଲା ଯେଉଁଥିରେ ଚମତ୍କାର ଭାବେ ସରକାରୀ ନୀତିର ସଂକ୍ଷିପ୍ତକରଣ କରାଯାଇଥିଲା :

"ଭାରତରେ ରାଜଦ୍ରୋହମୂଳକ ଅପରାଧଗୁଡ଼ିକର ବିଚାରର ଗୋଟିଏ ଦିଗରୁ କୌଣସି ମତେ ଦୃଷ୍ଟି ଫେରାଇ ନିଆଯାଇ ପାରିବ ନାହିଁ । ତାହା ହେଉଛି ବିଚାରପତି ମି. ଷ୍ଟ୍ରେଚି (Mr. Strachy) ଙ୍କଦ୍ୱାରା ନିର୍ଦ୍ଦେଶିତ ଭକ୍ତିହୀନତାର ନୂତନ ବ୍ୟାଖ୍ୟା । ତାଙ୍କ ମତରେ କେବଳ ସରକାରଙ୍କ ସାମାନ୍ୟ ଅବହେଳାକୁ ଦୃଢ଼ତାର ସହିତ ଅସ୍ୱୀକାର କରାଯିବା ଜନିତ ଭକ୍ତିହୀନତା ମଧ୍ୟ ରାଜଦ୍ରୋହ ହୋଇପାରେ । ଆମେ ଦୃଢ଼ତାର ସହିତ ଅନୁଭବ କରିପାରୁଛୁ ଯେ ଆଇନରେ ସେଭଳି ତର୍ଜମା ଇଂଲଣ୍ଡରେ ସହ୍ୟ କରାଯାଇ ପାରିବ ନାହିଁ ଏବଂ ଯଦି ଅତିଶୀଘ୍ର ତାହା ଭାରତରେ ରଦ୍ଦ କରା ନଯାଏ, ତେବେ ତାହା ସେଠାରେ ମଧ୍ୟ ଗଭୀର କ୍ଷତି ସାଧନ କରିପାରେ ।"

ଏପରିକି ସେହି କଠୋର ଆଇନ ମଧ୍ୟ ଶାସକମାନଙ୍କ ପାଇଁ ଯେଭଳି ଯଥେଷ୍ଟ ନଥିଲା । 1918 ମସିହାରେ ଲାଗୁ ହୋଇଥିବା ସେହି ଅର୍ଡିନାନ୍‌ସର ତୃତୀୟ ରେଗୁଲେସନ୍ ଅନୁଯାୟୀ ଆନ୍ଦୋଳନକାରୀ ଦେଶୀୟ ରାଜାମାନଙ୍କୁ କାରାରୁଦ୍ଧ କରିବାଲାଗି ତାହା ଉଦ୍ଦିଷ୍ଟ ଥିଲା । ସରକାରୀ ଅସ୍ତ୍ରାଗାରରୁ ତାହା ନିଃସୃତ ହୋଇଥିଲା ରାଜଦ୍ରୋହମୂଳକ ପଦକ୍ଷେପଗୁଡ଼ିକୁ ତରଳାଇ ଦେବା ପାଇଁ । 1897 ମସିହା ଜୁଲାଇ 20 ତାରିଖ ଦିନ ଦୁଇ ଜଣ ଚୋପକାର ବ୍ରାହ୍ମଣ - ନାଟୁ ଭାଇମାନଙ୍କୁ ଗିରଫ କରାଯାଇ ସେହି ଆଇନ ଅନୁସାରେ ବିନା ବିଚାରରେ କାରାରୁଦ୍ଧ କରାଯାଇ ଥିଲା । କାରଣ ପାର୍ଲାମେଣ୍ଟରେ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ରାଜ୍ୟ ବିଭାଗର ସେକ୍ରେଟାରୀ ପ୍ରକାଶ କରିଥିଲେ, ସେମାନଙ୍କ ବିରୁଦ୍ଧରେ କୌଣସି ଫୌଜଦାରୀ ଅପରାଧ ପ୍ରତିପାଦିତ କରିବା ପାଇଁ ପ୍ରମାଣ ନଥିଲା । ମୋତିଲାଲ୍ ଲେଖିଥିଲେ;

"ନାଟୁମାନେ ପ୍ରଥମେ ମି. ରାଣ୍ଡଙ୍କ ହତ୍ୟା ସହିତ ଜଡ଼ିତ ଥିଲେ ବୋଲି ଆକ୍ଷେପ କରାଯାଇଥିଲା । ଯେତେବେଳେ ଦାମୋଦର ଚୋପକାର ସେମାନଙ୍କୁ ସେହି ସଙ୍କଟରୁ ଉଦ୍ଧାର କରିଦେଇ ଥିଲେ ସେହି ଆକ୍ଷେପସବୁ ତାଙ୍କ ଉପରୁ ଉଠାଇ ନିଆଯାଇଥିଲା । ତା'ପରେ ସେମାନଙ୍କ ମଧ୍ୟରୁ ଜଣେ ଭାଇଙ୍କ ଉପରେ ଶଠତା ଅଭିଯୋଗରେ ସେମାନଙ୍କ ବନ୍ଦୀକରଣକୁ ଯଥାର୍ଥରୂପେ ପ୍ରତିପାଦିତ କରାଯାଇଥିଲା । ବର୍ତ୍ତମାନ ଅମ୍ଭେମାନେ ନିଶ୍ଚିତ ଯେ ସେମାନେ ଏଭଳି ଏକ ଅପରାଧ କରିଛନ୍ତି, ଯଦିଚ ଏହାର ପ୍ରକୃତି ଲର୍ଡ ଜର୍ଜ ହାମିଲଟନ୍ ମଧ୍ୟ ଜାଣନ୍ତି ନାହିଁ ।"

ଏହି ବେନିୟମମୂଳକ ନିୟମସବୁ ଜନନେତାମାନଙ୍କୁ ଗିରଫ କରି ଜେଲଦଣ୍ଡ ଦେବା ପାଇଁ ସବୁବେଳେ ଅସ୍ତ୍ରରୂପେ ବ୍ୟବହୃତ ହେଉଥିଲା । ଠିକ୍ ସେହିଭଳି ପରବର୍ତ୍ତୀ ଅର୍ଦ୍ଧ ଶତାବ୍ଦୀ କାଳରେ ତାହା ଆନ୍ଦୋଳନକାରୀ ନେତାମାନଙ୍କ ପାଇଁ ମଧ୍ୟ ବ୍ୟବହାର କରାଯାଇ ଥିଲା ।

ପାଶ୍ଚାତ୍ୟ ଦୃଷ୍ଟିରୁ ଦେଖିଲେ ଏହା ମନେହୁଏ ଯେ ହୁଏତ ସରକାର ଆଶଙ୍କା କରିଥିଲେ ବିପ୍ଳବାତ୍ମକ ଭାବରେ ବ୍ରିଟିଶ ଶାସନକୁ ଗାଦିଚ୍ୟୁତ କରାଇବା ପାଇଁ ମହାରାଷ୍ଟ୍ରରେ ଗୋପନ ଆନ୍ଦୋଳନ ଚାଲିଥିଲା । କିନ୍ତୁ ଏହାର ସ୍ଥିତି ସମ୍ପର୍କରେ କିମ୍ବା କାର୍ଯ୍ୟକଳାପ ସମ୍ପର୍କରେ କୌଣସି ବୈଧାନିକ ସାକ୍ଷ୍ୟ ପ୍ରମାଣ ମିଳି ନଥିଲା । ତେଣୁ ଏହା ଅନୁଭବ କରାଯାଇ ଥିଲା ଯେ ଗୋଟିଏ ଗୁଜବକୁ କଚେରୀରେ ଗ୍ରହଣ କରାଯାଇ କେବଳ ତାରି ସହାୟତା କ୍ରମେ ରାଜଦ୍ରୋହମୂଳକ ଅଭିଯୋଗକୁ ପ୍ରମାଣିତ କରାଯାଇପାରିବ । ବସ୍ତୁତଃ, ବଙ୍କିମଚନ୍ଦ୍ର ଓ ତିଳକଙ୍କ ଦ୍ୱାରା ଆଧୁନିକୀକରଣ କରାଯାଇ ଥିବା ଗୀତାର ନୈତିକତା ଓ କର୍ମତତ୍ପରତାରେ ଅନୁପ୍ରାଣିତ ହୋଇ ସେହିଭଳି ଏକ ବିଦ୍ରୋହାତ୍ମକ ଗୋଷ୍ଠୀ ମହାରାଷ୍ଟ୍ରରେ ଗଠିତ ହୋଇ ସାରିଥିଲା । ଦେଶାତ୍ମବୋଧକ ଦୃଷ୍ଟିକୋଣରୁ ବିଚାର କଲେ ସେଥିରେ ହତ୍ୟା ପାଇଁ ମଧ୍ୟ ଜୟଗାନ କରାଯାଇଥିଲା । ଏକ ପକ୍ଷରେ ସେତେବେଳେ ବରୋଦାରେ ଥିବା ପ୍ରଫେସର ଶ୍ରୀ ଅରବିନ୍ଦଙ୍କ ସହିତ ତିଳକଙ୍କ ସଂଯୋଗ ଏବଂ ଅନ୍ୟ ପକ୍ଷରେ ସେହି ଗୋଷ୍ଠୀର ସଂଗଠକମାନଙ୍କ ସହିତ ତାଙ୍କର ସମ୍ପର୍କ ପ୍ରମାଣିତ ହୋଇ ସାରିଥିଲା । 1902 ମସିହା ବେଳକୁ ବଙ୍ଗଳାର ସନ୍ତ୍ରାସବାଦୀ ଦଳଗୁଡ଼ିକ ପରିଚାଳିତ ହେବା ଦିଗରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ବେଶ ପ୍ରଚାର ହୋଇ ଯାଇଥିଲା । ସେହି କାରଣରୁ ନାଟୁଭାଇମାନଙ୍କୁ ଅଟକ ରଖିବା ଉଭୟ ଦୃଷ୍ଟିରୁ କାଳକର ତୀକ୍ଷଣ ଅଂଶ ଭଳି । ସରକାରଙ୍କ କଠୋର ଦମନ ଭିତରେ ମ ଚରମପନ୍ଥୀ ଜାତୀୟତାବାଦ ବୃଦ୍ଧି ପାଇଥିଲା ।

ଏହା ସମ୍ଭବପର ଯେ, ମୋତିଲାଲ ଏହି ନୂତନ ଉଦ୍‌ଭବଗୁଡ଼ିକ ସମ୍ପର୍କରେ ତିଳକଙ୍କ ମାଧ୍ୟମରେ ତଥା ତାଙ୍କର ବନ୍ଧୁମାନଙ୍କ ମାଧ୍ୟମରେ ଜାଣି ପାରୁଥିଲେ । ପୁଣି ବଙ୍ଗଳାରେ ମୁଣ୍ଡଟେକି ଉଠୁଥିବା ବିକାଶଶୀଳ ଭାବପ୍ରବଣତା ସହିତ ଘନିଷ୍ଠଭାବେ ସମ୍ପୃକ୍ତ ଥିବା ଯୋଗୁଁ ମଧ୍ୟ ତାହା ହୁଏତ ସମ୍ଭବ ଥିଲା । ସେଇଠି ଭାରତୀୟ ତଥା ଆୟାର୍ଲାଣ୍ଡର ବିପ୍ଳବାତ୍ମକ କାର୍ଯ୍ୟକଳାପଗୁଡ଼ିକର ଆଲୋଚନା

ଆଗ୍ରହର ସହିତ ଏହି ସମୟରେ ଅନୁଷ୍ଠିତ ହେଉଥିଲା । ପୁଣି ତାଙ୍କର ଭାବଧାରାଗୁଡ଼ିକ ତାଙ୍କ ଭାଇ ଶିଶିର କୁମାରଙ୍କ ଦ୍ୱାରା ଗଠିତ ହୋଇଥିଲା ଯିଏ ହୃଦବୋଧ କରିସାରି ଥିଲେ ଯେ "ଉତ୍ପୀଡ଼ନ ବୋଲି ସେଭଳି କିଛି ନାହିଁ" ଏବଂ ତା'ର ଗୋଟିଏ ପୂର୍ବ ଦୃଷ୍ଟାନ୍ତ ଉଦ୍ଧାର କରିଥିଲେ "ସେହିଭଳି ଉତ୍ପୀଡ଼ନହିଁ ଇଂଲଣ୍ଡର ଗୌରବୋଜ୍ଜ୍ୱଳ ବିପ୍ଳବ ସଂଘଟିତ କରାଇଥିଲା . . . . "

ଇତିମଧ୍ୟରେ ମୋତିଲାଲ କଲିକତା ମ୍ୟୁନିସିପାଲିଟି ବିଲ୍ - 1898 ବିଷୟରେ ଆରମ୍ଭ ହୋଇ ଯାଇଥିବା ତୁମୁଳ ଆନ୍ଦୋଳନାତ୍ମକ ଘୂର୍ଣ୍ଣିବାୟୁ ମଧ୍ୟକୁ ଟାଣି ହୋଇ ଯାଇଥିଲେ । 1877 ପରଠାରୁ ନିର୍ବାଚିତ କମିଶନରମାନେ କାର୍ଯ୍ୟ ନିର୍ବାହକରୂପେ ବିସ୍ତାର କରି ଆସିଥିବା ସେମାନଙ୍କର କ୍ଷମତା ସବୁକୁ ପ୍ରତ୍ୟାହାର କରି ନିଆଯାଇ, ଗୋଟିଏ 13 ଜଣିଆ କାର୍ଯ୍ୟକାରୀ କମିଟି ହାତରେ ସେସବୁ କୁ ଅର୍ପଣ କରିଦେବା ପାଇଁ ସେହି ବିଲ୍‌ରେ ପ୍ରସ୍ତାବ କରାଯାଇ ଥିଲା । ତାହା, କାର୍ଯ୍ୟକାରୀ ଚେୟାରମ୍ୟାନ୍‌ଙ୍କ ସମେତ କଲିକତାର ତିନୋଟି ମୁଖ୍ୟ ସ୍ୱାର୍ଥକୁ ପ୍ରତିନିଧିତ୍ୱ କଲାଭଳି 12ଜଣ ନିର୍ବାଚିତ ତଥା ମନୋନୀତ ସଭ୍ୟଙ୍କୁ ନେଇ ଗଠିତ ହେବାର ଥିଲା । ସେହି ତିନୋଟି ସ୍ୱାର୍ଥ ଥିଲା - ସରକାର, ବ୍ୟବସାୟୀ ଗୋଷ୍ଠୀ ଏବଂ ସ୍ଥାନୀୟ ଜନସାଧାରଣ । ସେହିଭଳି ପଦକ୍ଷେପ ପାଇଁ ଯେ ସରକାରୀ କର୍ମଚାରୀମାନଙ୍କ ସହାୟତା କ୍ରମେ ଇଉରୋପୀୟ ବ୍ୟବସାୟୀମାନଙ୍କର ଶକ୍ତିମନ୍ତ ହାତ କାର୍ଯ୍ୟ କରୁଥିଲା ସେଥିରେ ସନ୍ଦେହ କରାଯାଇ ନପାରେ । ସେମାନେ "ଦେଶୀୟ" ଜନସାଧାରଣଙ୍କ ସେଭଳି ସାମାନ୍ୟ ସ୍ୱାୟତ୍ତ ଶାସନ ଦାବୀର ସଫଳତା ନେଇ ଚିନ୍ତିତ ହୋଇ ପଡିଥିଲେ ଏବଂ ରାଜନୈତିକ ଅନୁଷ୍ଠାନଗୁଡ଼ିକରେ ଅଧିକରୁ ଅଧିକତର ଅଂଶ ଗ୍ରହଣ କରିବା ପାଇଁ ଉଭୟଙ୍କର ଦାବୀ ହେବାର ସମ୍ଭାବନା ସେମାନେ ସେଇଥିରୁ ହିଁ ଲକ୍ଷ୍ୟ କରି ପାରିଥିଲେ । ସେହିବର୍ଷ ଭାଇସରୟ ରୂପେ ଲର୍ଡ କର୍ଜନଙ୍କ ଭାରତରେ ପଦାର୍ପଣ, ବ୍ରିଟିଶର ମୂଳଭିତ୍ତିକୁ ଆହୁରି ଅଧିକ ଦୃଢ଼ କରିଥିଲା । ତାଙ୍କରି ପରିଚାଳନାରେ ସେହି ବିଲ୍‌ଟି ମ୍ୟୁନିସିପାଲିଟିଗୁଡ଼ିକ ପାଇଁ ନିର୍ବାଚନ ଉପାଦାନକୁ କ୍ଷୁଦ୍ରାବୟାବ କରି ଦେଇଥିଲା ଏବଂ ଅଧିକାଂଶ ବ୍ରିଟିଶ ବ୍ୟକ୍ତି ଥିବା ଗୋଟିଏ କମିଟି ହାତରେ ତାହାର କାର୍ଯ୍ୟକାରୀ କ୍ଷମତାଗୁଡ଼ିକୁ ଅର୍ପଣ କରାଯାଇ ଥିଲା । ସେଗୁଡ଼ିକୁ ଉତ୍ତମ ସ୍ୱାୟତ୍ତ ଶାସନ ସରକାର ଲାଗି 'ଉତ୍ତମ' ବୋଲି ଅଭିହିତ କରାଯାଇଥିଲା ।

ଏ ଘଟଣା କଲିକତାରେ ତୁମୁଳ କୋଳାହଳ ସୃଷ୍ଟି କରିଥିଲା । ବହୁସଂଖ୍ୟକ ଜନ ସମାଗମରେ ସାଧାରଣ ସଭାମାନ ଆୟୋଜିତ ହୋଇଥିଲା । ସେଭଳି ସଭାଗୁଡ଼ିକର ଆୟୋଜନକାରୀମାନଙ୍କ ମଧ୍ୟରେ ମୋତିଲାଲ ଥିଲେ ଅନ୍ୟତମ । ତେବେ ସର୍ବସାଧାରଣରେ ଉପସ୍ଥିତ ନହେବା ଦିଗରେ ସେ ବେଶ ସତର୍କ ଥିଲେ ଏବଂ ପ୍ରଚ୍ଛଦପଟରେ ରହି କାର୍ଯ୍ୟ କରିବା ପାଇଁ ଇଚ୍ଛା କରିଥିଲେ । କିନ୍ତୁ 1899 ଜାନୁୟାରୀରେ ଅନୁଷ୍ଠିତ ହୋଇଥିବା ସେହିଭଳି ଏକ ସଭାରେ ସଭାପତିତ୍ୱ କରିବା ପାଇଁ ସେ ପ୍ରବର୍ତ୍ତିତ ହୋଇଥିଲେ । ସେଠାରେ ସେହି ବିଲ୍‌ର ପ୍ରଚ୍ଛନ୍ନ ଉଦ୍ଦେଶ୍ୟଗୁଡ଼ିକ ସମ୍ପର୍କରେ ସେ ରେଖାପାତ କରିଥିଲେ । ତାଙ୍କ ଖବରକାଗଜରେ ମଧ୍ୟ ସେ କଲିକତାର ବିଚାରଧାରାଗୁଡ଼ିକ ସମ୍ପର୍କରେ ଲେଖିବା ପାଇଁ ପ୍ରବର୍ତ୍ତିତ ହୋଇଥିଲେ ଯେ ;

"ଯଦି ବିଲ୍‌ଟିକୁ ପ୍ରତ୍ୟାହାର କରିନେବାଦ୍ୱାରା ସେମାନେ ପଶ୍ଚାତ୍‌ଗାମୀ ହେବେ ବୋଲି ମନେ କରୁଥାନ୍ତି ତା'ହେଲେ ଆମ୍ଭେମାନେ ହୃଦୟଙ୍ଗମ କରିପାରୁନାହୁଁ ଯେ ଏହା ଅନ୍ୟମାନଙ୍କଦ୍ୱାରା କିପରି ଗୃହୀତ ହୋଇ ପାରିବ । ସେମାନେ ସେହି କାର୍ଯ୍ୟ କରିବା ପାଇଁ ଦୃଢ଼ ଭାବରେ ଆଗେଇ ଆସିବା ଆବଶ୍ୟକ । ସେମାନେ ଦୃଢ଼ ଭାବରେ ସେମାନଙ୍କ ସରକାରଙ୍କୁ ଜଣାଇଦେବା ଆବଶ୍ୟକ ଯେ ସେଭଳି ପଦକ୍ଷେପ ନେବାଲାଗି ସେମାନେ ଇଚ୍ଛୁକ ନୁହନ୍ତି । ଯଦି ଉପରିସ୍ଥ ସରକାର ସେମାନଙ୍କୁ କୌଣସି ଗୁରୁତ୍ୱ ଦିଅନ୍ତି ନାହିଁ, ତାହେଲେ ନିର୍ବାଚନ ପଦ୍ଧତି ଭଳି ନାଟକକୁ ସମ୍ପୂର୍ଣ୍ଣ ପରିହାର କରାଯିବା ପାଇଁ ଏବଂ କଲିକତା ମ୍ୟୁନିସିପାଲିଟି ଶାସନକୁ ଏକ ସରକାରୀ ବିଭାଗରେ ପରିଣତ କରିବା ପାଇଁ ଶାସକମାନଙ୍କୁ ପରାମର୍ଶ ଦିଆଯିବା ଆବଶ୍ୟକ ।"

ଜନସାଧାରଣଙ୍କ ବିରୋଧ ସତ୍ତ୍ୱେ ସେହି ବିଲ୍‌ଟି ୧୮୨୨ ମସିହାରେ ଆଇନରେ ପରିଣତ ହୋଇଥିଲା । ଗୋଟିଏ ସ୍ୱାୟତ୍ତ ଶାସିତ କର୍ପୋରେସନ୍‌ରେ ପରିଣତ ହେବା ପାଇଁ ସେହି ମହାନଗରୀକୁ 24 ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା ।

ବଙ୍ଗଳାର ଦ୍ୱିତୀୟ ବୃହତ୍ତମ ସହର ଢାକା ମ୍ୟୁନିସିପାଲିଟିର ଲୋକଙ୍କ ନିକଟରୁ ମଧ୍ୟ ନିର୍ବାଚନ ଅଧିକାର ପରିହାର କରି ନିଆଯାଇ ଥିଲା । ପ୍ରାଦେଶିକ ବିଧାନ ସଭାର ଜଣେ ମତଦାତା ହିସାବରେ ସେହି ସମ୍ପର୍କିତ ଗୋଟିଏ ମତପାର୍ଥକ୍ୟ ମୋତିଲାଲ ଓ ସୁରେନ୍ଦ୍ର ନାଥଙ୍କ ମଧ୍ୟରେ ହୋଇଥିଲା । ପୁନଃ-ପୌନିକ ଭାବେ ସେମାନଙ୍କ ମଧ୍ୟରେ ବିବାଦ ଲାଗି ରହୁଥିଲା । ମୋତିଲାଲ ସରକାରଙ୍କ ସେଭଳି ପଦକ୍ଷେପକୁ ବିରୋଧ କରୁଥିବା ବେଳେ ସୁରେନ୍ଦ୍ରନାଥ ତାହାକୁ ସମର୍ଥନ କରୁଥିଲେ । ଦୁର୍ଭାଗ୍ୟବଶତଃ ସେହି ବିବାଦ ବ୍ୟକ୍ତିଗତ ସ୍ତରକୁ ପରିବର୍ତ୍ତିତ ହୋଇଥିଲା । ବିଧାନ ପରିଷଦକୁ ନିର୍ବାଚିତ ହୋଇ ଆସିବା ଉଦ୍ଦେଶ୍ୟ ରଖି ମୋତିଲାଲ ଢାକା ସପକ୍ଷରେ ଯୁକ୍ତି କରୁଛନ୍ତି ବୋଲି ଆକ୍ଷେପ କରାଯାଇଥିଲା । ଉଭୟ ଗୋଷ୍ଠୀର ସମର୍ଥକଙ୍କ ମଧ୍ୟରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ପ୍ରତି ଆକ୍ଷେପ କରା ହୋଇଥିଲା ଏବଂ ବଙ୍ଗଳା ଭାଷାଭାଷୀ ସମ୍ବାଦପତ୍ରଗୁଡ଼ିକରେ ବିଶେଷ ଭାବେ କାମଲ ସାମ୍ବାଦିକତା ପରିଲକ୍ଷିତ ହୋଇଥିଲା । ପରିଶେଷରେ ସୁରେନ୍ଦ୍ରନାଥ ମାନହାନିମୂଳକ ଅଭିଯୋଗ କରି ଏକ ଓକିଲ ନୋଟିସ୍ ପଠାଇ ଥିଲେ । କ୍ଷମା ପ୍ରାର୍ଥନା ପରିବର୍ତ୍ତେ ମୋତିଲାଲ ଗୋଟିଏ ସମ୍ପାଦକୀୟରେ ଲେଖିଥିଲେ ;

"ବର୍ଷସାରା ପ୍ରାୟ ପ୍ରତି ସପ୍ତାହରେ ଆମ୍ଭେମାନେ ଗୋଟିଏ ଦେଶୀୟ ଭାଷାର ଖବରକାଗଜଦ୍ୱାରା ମାରାତ୍ମକ ଭାବରେ ଆକ୍ରମଣର ଶିକାର ହେଉଛୁ । ତାହାର ସମ୍ପାଦକ ହେଉଛନ୍ତି ବାବୁ ସୁରେନ୍ଦ୍ରନାଥଙ୍କ ଘନିଷ୍ଠ ସମର୍ଥକ (ଅର୍ଥାତ୍ କାବ୍ୟ ବିଶାରଦ . . . . ) ଏବଂ ସେହି ଖବରକାଗଜଟି ତାହାଙ୍କ ଦ୍ୱାରା ସମ୍ପାଦିତ । ଇଂରାଜୀରେ ଗୋଟିଏ ପ୍ରବାଦ ଅଛି "କାଚ ଘରେ ରହିବା ଲୋକ ଅନ୍ୟକୁ ଢେଲା ଫୋପାଡ଼ିବା ଅନୁଚିତ ।" ଅବଶ୍ୟ ତାହାକୁ ଉତ୍ତମ ଭାବରେ ପ୍ରକାଶ କରିବା ଲାଗି ଆମର ଆଉ ଗୋଟିଏ ପ୍ରବାଦ ଅଛି ; ଜଣେ "ନିଜେ ଖୋଳିଥିବା ଖାଲରେ ନିଜେହିଁ ପଡ଼ି ମରିଥାଏ" ।"

ଅବଶ୍ୟ ଉଭୟ ଗୋଷ୍ଠୀର ଉତ୍ତମ ବନ୍ଧୁମାନେ ସକ୍ରିୟ ଥିଲେ । ତେବେ 'ଦି ବେଙ୍ଗଲୀ' ପତ୍ରିକାରେ, ମୋତିଲାଲ ଓ ସୁରେନ୍ଦ୍ରନାଥଙ୍କ ମଧ୍ୟରେ ଉପୁଜିଥିବା ସମସ୍ତ ବିବାଦର ଅବସାନ ହୋଇଥିଲା ବୋଲି ଏକ ଘୋଷଣାନାମା ପ୍ରକାଶ ପାଇବା ପରେ ପରେ ସେହି ଜଘନ୍ୟ କାର୍ଯ୍ୟକଳାପର ପରିସମାପ୍ତି ଘଟିଥିଲା । ତାହା ଯେ ଏକ ସ୍ୱଳ୍ପମିଆଦୀ ଶାନ୍ତି ଥିଲା, ତାହା ସମସ୍ତେ ଅନୁଭବ କରିଥିଲେ । କାରଣ ସୁରେନ୍ଦ୍ରନାଥଙ୍କ ସମର୍ଥକମାନେ ମୋତିଲାଲଙ୍କୁ ତଥା ତାହାଙ୍କ ପତ୍ରିକାକୁ ଅପଯଶ କରାଇବା ପାଇଁ ରୀତିମତ କର୍ମ ଯୋଜନାମାନ ପ୍ରସ୍ତୁତ କରି ରଖିବା ସଙ୍ଗେ ସଙ୍ଗେ ଈର୍ଷାପର ଭାବେ କୁତ୍ସା ପ୍ରଚାର ମଧ୍ୟ ଚଳାଉଥିଲେ । ଏହିଭଳି ବେଳେ ବେଳେ ସେଭଳି ପ୍ରଚାରଗୁଡ଼ିକୁ ସେମାନଙ୍କ ନେତା ମଧ୍ୟ ନିଜେ ଅସ୍ୱୀକାର କରୁଥିଲେ । ତଥାପି ସେହି କ୍ଷଣିକ ନିବୃତ୍ତି, ଲର୍ଡ କର୍ଜନଙ୍କ ନୀତି ତଥା କାର୍ଯ୍ୟକଳାପକୁ ମିଳିତ ଭାବେ.ବିରୋଧ କରିବାର ଆବଶ୍ୟକ ଥିଲା ।

# ନଅ : ଜାଗ୍ରତକାରୀ କର୍ଜନ୍

ଲର୍ଡ କର୍ଜନ୍ ଭାରତର ଭାଇସରୟ୍ ଏବଂ ଗଭର୍ଣ୍ଣର ଜେନେରାଲ୍ ରୂପେ 1899 ମସିହାରେ ଆସିବା ବେଳକୁ ବ୍ରିଟେନ୍‌ର ଭାରତୀୟ ସାମ୍ରାଜ୍ୟ ଏହାର ଶୀର୍ଷସ୍ଥାନରେ ପହଞ୍ଚିଥିଲା । ସେ 1905ରେ ଏଠାରୁ ଚାଲିଯିବା ବେଳକୁ ତାହାର ପତନୋନ୍ମୁଖତା ଆରମ୍ଭ ହୋଇ ସାରିଥିଲା । କର୍ଜନ୍ ତାଙ୍କ ହୃଦୟର ସହିତ ଏବଂ ଆତ୍ମୀୟଭାବେ ଜଣେ ସାମ୍ରାଜ୍ୟବାଦୀ ଥିଲେ ଏବଂ ବ୍ରିଟିଶ ଜାତିର ନୈତିକ ତଥା ବାହ୍ୟ ଉତ୍କର୍ଷ ନେଇ ସ୍ୱାଭାବିକଭାବେ ବିଶ୍ୱାସ କରିବା ସଙ୍ଗେ ସଙ୍ଗେ ଭାରତକୁ ଦୃଢ଼ ଭାବରେ କବଳିତ କରି ରଖିବାର ଅବଶ୍ୟକତା ଉପରେ ଆସ୍ଥା ସ୍ଥାପନ କରିଥିଲେ । କାରଣ "ଯଦି ଆମେ ତାହାକୁ ହରାଇ ବସୁ ତାହେଲେ ସିଧାସଳଖଭାବେ ଆମେ ଗୋଟିଏ ତୃତୀୟ ଶ୍ରେଣୀ କ୍ଷମତାଶାଳୀ ଦେଶକୁ ଓହ୍ଲାଇ ଆସିବୁ" - ଏହା ଯଦିଚ ଅତି କଷ୍ଟଦାୟକ ଏବଂ ନିର୍ଦ୍ଦୟ ଥିଲା, ଥିଲା ମଧ୍ୟ ସମ୍ପୂର୍ଣ୍ଣରୂପେ ଆକ୍ରୋଶମୂଳକ ତଥା ଶିକ୍ଷିତ ବଙ୍ଗାଳୀମାନଙ୍କ ପାଇଁ ଅବମାନନାସୂଚକ ଏବଂ ଭାରତୀୟ ମତାମତକୁ ସମ୍ମାନ ଦେବା ଦିଗରେ ବେଖାତିର ଯୁକ୍ତ । ବ୍ରିଟିଶ ସାମ୍ରାଜ୍ୟବାଦୀ ସ୍ୱାର୍ଥଗୁଡ଼ିକୁ ଭୟଭୀତ କରାଉଥିବା ଦେଶୀୟ ଉପାଦାନଗୁଡ଼ିକର ଶାସନଗତ ଶୃଙ୍ଖଳା ଆଣିବା ପାଇଁ ସେ ବଦ୍ଧପରିକର ହୋଇ ଆସିଥିଲେ । 1905ରେ ଭାରତୀୟ ଦୃଶ୍ୟପଟରୁ ତାଙ୍କର ପ୍ରସ୍ଥାନ ହେବାପରେ ମୋତିଲାଲ ଟିପ୍ପଣୀ ଦେଇଥିଲେ : "କୌଣସି ପୂର୍ବ ପ୍ରଶିକ୍ଷଣ ନଥାଇ ମଧ୍ୟ ଅଖଣ୍ଡ କ୍ଷମତାମଣ୍ଡିତ ହୋଇଥିବା ବାହ୍ୟଆଡ଼ମ୍ବରଯୁକ୍ତ ଯୁବକ ଲର୍ଡ କର୍ଜନ୍ ଥିଲେ ଉନ୍ନତ 'ପର୍ଜନ୍' ଏବଂ ସେ ରକେଟ୍ ଭଳି ଉତ୍‌ଥିତ ହୋଇଥିଲେ ମଧ୍ୟ ଦଣ୍ଡଟିଏ ଭଳି ପତିତ ହୋଇଥିଲେ ।"

ଅନାକାଙ୍କ୍ଷିତ ଭାବେ ନୁହେଁ, ପ୍ରଥମ ଦର୍ଶନରେହିଁ କର୍ଜନ୍ ଓ 'ପତ୍ରିକା' ପରସ୍ପର ପ୍ରତି ବିତସ୍ପୃହ ହୋଇ ଉଠିଥିଲେ । କଲିକତା ମ୍ୟୁନିସିପାଲିଟିକୁ ବିଶୁଦ୍ଧ କରିବା ପରେପରେ କଲିକତା ବିଶ୍ୱବିଦ୍ୟାଳୟକୁ ଦୋଷମୁକ୍ତ କରିବା ପାଇଁ ସେ ହସ୍ତକ୍ଷେପ କରିଥିଲେ, ଯାହା ତାଙ୍କ ମତରେ ଥିଲା - ତାହା ଦେଶୀୟ ଓକିଲମାନଙ୍କର ଗୋଟିଏ ଗୋଷ୍ଠୀ କବଳରେ ପଡ଼ି ଯାଇଥିଲା, ଯେଉଁମାନେ ଶିକ୍ଷା ପ୍ରଶ୍ନକୁ ମଧ୍ୟ ରାଜନୈତିକ ଦୃଷ୍ଟିକୋଣରୁ ଦେଖୁଥିଲେ । ବ୍ରିଟିଶମାନେ ଅଧିକ ସଂଖ୍ୟାରେ ସଭ୍ୟଥିବା ଗୋଟିଏ ବିଶ୍ୱ-ବିଦ୍ୟାଳୟ କମିଶନ୍‌ରେ ସେ 1902 ମସିହାରେ ସେ ନିଯୁକ୍ତ କରିଥିଲେ । ସେମାନେ କେଉଁକେଉଁ ପଦକ୍ଷେପ ଗ୍ରହଣ କରି ପାରିବେ ସେହି ସମ୍ପର୍କରେ ସେମାନଙ୍କୁ ସୂଚନା ଦେଇଥିଲେ ଏବଂ କଲିକତା,

ବମ୍ବେ ଏବଂ ମାଦ୍ରାଜର ପ୍ରେସିଡେନ୍ସି ବିଶ୍ୱବିଦ୍ୟାଳୟଗୁଡ଼ିକର ଶାସନଗତ ପରିଚାଳନାକୁ କଠୋର ଭାବେ ଲାଗୁ କରିବା ଯୋଜନା ସରକାରୀ ଭାବେ କାର୍ଯ୍ୟକାରୀ କରାଇଥିଲେ । ସେହିଭଳି ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ଜାତୀୟତାବାଦ ପ୍ରବଣତାକୁ ବିଶୋଧନ କରିବା ଉଦ୍ଦେଶ୍ୟରେ, ସାଧାରଣ ଜନମତ ପ୍ରତି କୌଣସି ଗୁରୁତ୍ୱ ଦିଆ ନଯାଇ, ସେହିଭଳି ନିୟନ୍ତ୍ରଣ ମଧ୍ୟ ଜାରି କରାଯାଇଥିଲା । ସମ୍ବାଦପତ୍ର-ଗୁଡ଼ିକରେ, ବିଶେଷ କରି ମୋତିଲାଲଙ୍କ କାଗଜରେ ପ୍ରକାଶ ପାଉଥିବା ଟିପ୍ପଣୀଗୁଡ଼ିକ ମର୍ମଭେଦୀ ଥିଲା ଏବଂ ବିଶେଷ ସମ୍ମାନଜନକ ନଥିଲା । ସ୍ୱାଭାବିକଭାବେ ସେଗୁଡ଼ିକ ତାହାଙ୍କ ପାଇଁ ବିରକ୍ତିକର ମନେ ହୋଇଥିଲା । ପରସ୍ପର ପ୍ରତି ଅଶ୍ରଦ୍ଧା ସେମାନଙ୍କୁ ଏକ କୌତୁହଳଜନକ ଅବସ୍ଥାରେ ପହଞ୍ଚାଇ ଦେଇଥିଲା । ଯେତେବେଳେ ମୋତିଲାଲ କର୍ଜନଙ୍କୁ ସାକ୍ଷାତ କରିଥିଲେ ବ୍ରିଟିଶ ଆଭିଜାତ୍ୟର ସେହି ପୁଷ୍ପଟି ତା'ର ମୁଖଦର୍ଶନ କରାଇବା ପାଇଁ ଉଚିତ ମନେ କରି ନଥିଲା । ଉଭୟେ ଦୁଇଟି ସ୍ୱତନ୍ତ୍ର କୋଠରୀରେ ବସିଥିଲେ ଏବଂ କର୍ଜନଙ୍କର ବ୍ୟକ୍ତିଗତ ସଚିବ ପ୍ରଶ୍ନ ଓ ଉତ୍ତରଗୁଡ଼ିକ ଲିଖିତ ଭାବରେ ଗୋଟିଏ କୋଠରୀ ଆଉ ଗୋଟିଏ କୋଠରୀକୁ ନିଆଅଣା କରିଥିଲେ । ମୋତିଲାଲ ଟିପ୍ପଣୀ ଦେଇଥିଲେ ସେହି ମହାମାନ୍ୟ ଅତିମାତ୍ରାରେ 'ପର୍ଦ୍ଦାନ' ଥିଲେ ଯେ ତାଙ୍କ ଭଳି (ମୋତିଲାଲ) ଜଣେ ସାଧାରଣ ସ୍ଥାନୀୟ ଲୋକଙ୍କ ସହିତ ସିଧାସଳଖ କଥାବାର୍ତ୍ତା କରି ନଥିଲେ । କେବଳ ନାମକୁ ମାତ୍ର ଆଭିଜାତ୍ୟ ହିଁ ତାହାଙ୍କ ନିକଟକୁ ଅବାଧ ଗମନ କରିପାରୁଥିଲା ।

ମୋତିଲାଲଙ୍କ ସହିତ ବାକ୍ୟଯୁଦ୍ଧ ଚଳାଇ ଭାଇସରାୟ ତାହାଙ୍କ ବିରୋଧୀଙ୍କ ନିକଟରୁ କୌଣସି ଉପକାର ବା ଶ୍ରେଷ୍ଠତ୍ୱ ହାସଲ କରି ପାରି ନଥିଲେ । ଲର୍ଡ କର୍ଜନ୍ କୁଳପତି ହିସାବରେ 1902 ମସିହା ଫେବୃୟାରୀ ମାସରେ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକମାନଙ୍କୁ ଦେଇଥିବା ତାଙ୍କର ଏକ ବିଶିଷ୍ଟ ସମାବର୍ତ୍ତନ ଭାଷଣରେ ଉପଦେଶ ଦେଇଥିଲେ ଯେ ଅନାସ୍ଥାବାନ୍ ତଥା ଅତ୍ୟୁକ୍ତିରେ ପରିପୂର୍ଣ୍ଣ ଦେଶୀୟ ସମ୍ବାଦପତ୍ରଗୁଡ଼ିକ ଦ୍ୱାରା ସ୍ନାତକମାନେ ପରିଚାଳିତ ହେବା ଉଚିତ ନୁହେଁ । ସେମାନଙ୍କ ଉପରେ ସରକାରୀ ବିରୋଧ ଭାବ ଆରୋପ କରାଯିବା ସଙ୍ଗେ ସଙ୍ଗେ ପ୍ରବଳ ଦୋଷାରୋପ କରି ସେଗୁଡ଼ିକୁ ଅତି ବ୍ୟଙ୍ଗ ଭାବରେ ଆକ୍ଷେପ କରିଥିଲେ । ସେଥିରେ ମୋତିଲାଲ ଅତିଶୟ କ୍ଷୁବ୍ଧ ହୋଇ ଲୌହ ଦସ୍ତାନା ଧରିଥିଲେ ଏବଂ ଗୋଟିଏ ସମ୍ପାଦକୀୟ ମାଧ୍ୟମରେ "ଜଣେ ଭାଇସରାୟ କଣ କରିବା ଓ ନକରିବା ଉଚିତ" ସେହି ସମ୍ପର୍କରେ, ସେଇ ମାଧ୍ୟମରେ ଉତ୍ତର ଦେଇଥିଲେ -

"ସମ୍ରାଟ ଏଡ଼ୱାର୍ଡଙ୍କୁ ଭାରତରେ ପ୍ରତିନିଧିତ୍ୱ କରୁଥିବା ଯୋଗୁଁ ସର୍ବ ପ୍ରଥମେ ଭାରତର ଭାଇସରାୟ ଲର୍ଡ କର୍ଜନ ଚାରୋଟି ଆଖିର ଅଧିକାରୀ ହେବା ଉଚିତ - ସାମନାରେ ଦୁଇଟି ଏବଂ ପଛ ପଟରେ ମଧ୍ୟ ଆଉ ଦୁଇଟି । ଆଖି ବିଷୟରେ ଆଲୋଚନା କଲାବେଳେ ଭାଇସରାୟ ହିସାବରେ, ସେ ଯେ କେହି ହୁଅନ୍ତୁ ନା କାହିଁକି, କସ୍ମିନ୍ କାଳେ କୌଣସି ପ୍ରକାର ଚଷମା ବ୍ୟବହାର କରିବା ଉଚିତ ନୁହେଁ । ଯଦି ତାଙ୍କର କାମଳ ରୋଗ ଥାଏ, ତାହେଲେ ସେଥିରୁ ଆରୋଗ୍ୟ ଲାଭ କରିବା ପାଇଁ ସେ ଚେଷ୍ଟିତ ହେବା ଉଚିତ । କାରଣ ଭାଇସରାୟ ସିଂହାସନ ପାଇଁ ରହିଥିବା ପଦବୀଟି କୌଣସି କାମଳ ରୋଗଗ୍ରସ୍ତ ବ୍ୟକ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ ।

ଶତ୍ରୁତାକାରୀ ସମାଲୋଚନାଗୁଡ଼ିକ ଯେତେ ପରିମାଣରେ ତିକ୍ତ, ନିନ୍ଦାମୂଳକ ବ୍ୟଙ୍ଗାତ୍ମକ କିମ୍ବା ମର୍ମଭେଦୀ ପରିହାସମୂଳକ ହେଲେ ମଧ୍ୟ ସେଗୁଡ଼ିକୁ ମୃତ୍ୟୁକୁ ସାଙ୍ଗରେ ନେଇ ଆସି ନଥାଏ । ଜଣେ ବିଦ୍ୱେଷୀ ଶାସକ ହିସାବରେ ନୈତିକତା ଆଳରେ କିମ୍ବା ବଳପ୍ରୟୋଗ କରି ସେଗୁଡ଼ିକୁ ଚପାଇ ଦେବାକୁ ଚେଷ୍ଟା ନକରି ଲର୍ଡ କର୍ଜନ ଏହାକୁ ସ୍ୱାଗତ କରିବାର କଥା । କାରଣ ସରକାରୀ କାର୍ଯ୍ୟକଳାପରେ ମତଦାନ କିମ୍ବା ପ୍ରତିନିଧିତ୍ୱର ସ୍ଥାନ ନାହିଁ ।''

ଲର୍ଡ କର୍ଜନ ମୋତିଲାଲଙ୍କଠାରୁ ନିଷ୍କ୍ରମଣ ପାଇଁ ଚତୁରତାପୂର୍ଣ୍ଣ କାର୍ଯ୍ୟ କରିପାରି ନଥିଲେ । ସେହିଭଳି ଭାବେହିଁ ସମସ୍ତ ସମୟ ରହି ରହିଥିଲେ । ତତ୍ ସଙ୍ଗେ ସଙ୍ଗେ ବୃହତ୍ତର ଦୃଷ୍ଟିକୋଣରୁ ଦେଖିଲେ ସେ ଧ୍ୱଂସାଭିମୁଖୀ କୁସୁମାକୀର୍ଣ୍ଣ ପଥରେ ଯାତ୍ରା ଆରମ୍ଭ କରିଥିବା ଏହି ସାମ୍ରାଜ୍ୟର ରାଜନୈତିକ କାର୍ଯ୍ୟକଳାପଗୁଡ଼ିକରେ ନିମଜ୍ଜିତ ରହିଥିଲେ । ଏହି ବିଷୟରେ ଆଲୋଚନା କରିବା ପୂର୍ବରୁ କର୍ଜନ-ମୋତିଲାଲଙ୍କ ମଲ୍ଲଯୁଦ୍ଧର ଆଉ ଗୋଟିଏ ଉପାଖ୍ୟାନ ଉଲ୍ଲେଖ କରିବା ଉଚିତ ହେବ ।

1905 ମସିହାରେ, କଲିକତା ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଉଦ୍‌ବୋଧନୀ ଅଭିଭାଷଣ ଦେଲାବେଳେ ଲର୍ଡ କର୍ଜନ ଉଲ୍ଲେଖ କରିଥିଲେ :

''ମୋ ମତରେ, ବହୁପରିମାଣରେ ସତ୍ୟର ଉଚ୍ଚତମ ଆଦର୍ଶ ହେଉଛି ପାଶ୍ଚାତ୍ୟର ବିଚାର ଧାରା . . . . ଏହା ନିଃସନ୍ଦେହ ଯେ, ପୂର୍ବାଞ୍ଚଳରେ ଏହା ସେଭଳି ଭାବରେ ସମ୍ମାନଯୁକ୍ତ ହେବା ପୂର୍ବରୁ ପଶ୍ଚିମର ନୈତିକ ଚରିତ୍ରରେ ସତ୍ୟ ଉଚ୍ଚତମ ସ୍ଥାନ ଗ୍ରହଣ କରିସାରିଥିଲା . . . . . । ତୋଷାମଦ ହୁଏତ ସାଧୁତାପୂର୍ଣ୍ଣ ହୋଇପାରେ କିମ୍ବା ହୋଇପାରେ ପ୍ରବଞ୍ଚନା । ଯାହା ହେଲେବି ତୁମ୍ଭେମାନେ ତାହାକୁ ପରିହାର କରିବା ଉଚିତ । ଯଦି ତାହା ପ୍ରଥମୋକ୍ତ ହୋଇଥାଏ ତାହା କେବେ ମିଥ୍ୟା ହୋଇ ନପାରେ କିମ୍ବା ଅନିଷ୍ଟକର ହୋଇ ନପାରେ କିନ୍ତୁ ଯଦି ତାହା ଶେଷୋକ୍ତ ହୋଇଥାଏ ତାହେଲେ ତାହା ଜଘନ୍ୟ ଅଟେ ।''

ପ୍ରାଚ୍ୟର ଅଧିବାସୀମାନେ ମିଥ୍ୟାବାଦୀ ବୋଲି ସେ ଦେଇଥିବା ପରୋକ୍ଷ ଆଭାସ ସମ୍ପର୍କରେ ପାଶ୍ଚାତ୍ୟର ଅଧିବାସୀମାନଙ୍କ ମନରେ ଟିକେ ମାତ୍ର ସନ୍ଦେହ ନଥିଲା । ପୂର୍ବାଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ଥିଲେ ଭାରତର ଜନଗଣ ଏବଂ ପଶ୍ଚିମାଞ୍ଚଳର ଜନଗଣଙ୍କ ମଧ୍ୟରେ ଥିଲେ ବ୍ରିଟେନ୍‌ର ଲୋକେ । ସେମାନେ ଭାରତରେ ପ୍ରବେଶ କରି କେଉଁ ଭଳି ଭାବରେ ସତ୍ୟବାଦୀ ହେବାକୁ ହେବ ତାହା ଶିକ୍ଷା ଦେବାକୁ ଚେଷ୍ଟା କରିବା ଫଳରେ ସମଗ୍ର ଭାରତରେ ଅସନ୍ତୋଷ ସୃଷ୍ଟି ହୋଇଥିଲା । ସେହି ଅସାଧାରଣ ମିଥ୍ୟା ଉପରେ କଶାଘାତ କରିବା ପାଇଁ ମୋତିଲାଲ ଯେପରି ଦୈବନିଯୁକ୍ତ ଥିଲେ । ଲର୍ଡ କର୍ଜନଙ୍କ ଲିଖିତ ପୁସ୍ତକ ''ପ୍ରୋବଲମ୍‌ସ ଅଫ୍ ଦି ଇଷ୍ଟ'' ବା ପୂର୍ବାଞ୍ଚଳର ସମସ୍ୟାରୁ ଗୋଟିଏ ଉକ୍ତି ଉଦ୍ଧାର କରି ସେ ଏହା ସାଧନ କରିପାରି ଥିଲେ । ସେଥିରେ କର୍ଜନ ଅତି ଆହ୍ଲାଦର ସହିତ ସ୍ୱୀକାର କରିଥିଲେ ଯେ କୋରିଆକୁ ବ୍ରିଟିଶର ଜଣେ ରାଜଦୂତ ଭାବରେ ଯାଇ ସେ କେଉଁଭଳି ଭାବରେ ଗୋଟିଏ ମିଥ୍ୟାର ମାଧ୍ୟମ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ :

ମୁଁ ରାଜଦରବାର ସାମନାକୁ ଯିବା ପୂର୍ବରୁ କୋରିଆରେ ଆମ ବୈଦେଶିକ କାର୍ଯ୍ୟାଳୟର ସଭାପତିଙ୍କ ସମେତ ଗୋଟିଏ ଶ୍ରୋତାମଣ୍ଡଳୀଙ୍କୁ ସାମନା କରିଥିଲି । ସେଠାରେ ତାହାଙ୍କର କେତେକ ପ୍ରଶ୍ନ-ଉତ୍ତର ମୋର ମନେ ଅଛି । ମୁଁ ଯେ କେବଳ 33 ବର୍ଷ ବୟସ୍କ ତାହା ସେମାନଙ୍କ ନିକଟରେ ସ୍ୱୀକାର ନକରିବା ପାଇଁ ମୋତେ ବିଶେଷ ରୂପେ ସତର୍କ କରାଇ ଦିଆଯାଇଥିଲା । କୋରିଆରେ ସେତିକି ବୟସକୁ କୌଣସି ସମ୍ମାନ ଦିଆଯାଉ ନଥିଲା । ସେ ଯେତେବେଳେ ମୋତେ ସିଧାସଳଖ ପ୍ରଶ୍ନ ପଚାରିଲେ "ଆପଣଙ୍କ ବୟସ କେତେ ?" (ପ୍ରାଚ୍ୟ ଦେଶବାସୀଙ୍କ ସହିତ କଥାବାର୍ତ୍ତା ବେଳେ ଅପରିବର୍ତ୍ତନୀୟ ଭାବରେ ତାହା ସେମାନଙ୍କ ପ୍ରଥମ ପ୍ରଶ୍ନ ଥିଲା), ବିନା ଦ୍ୱିଧାରେ ମୁଁ ଉତ୍ତର ଦେଇଥିଲି - "ଚାଳିଶ ।" ସେ କହିଲେ, "ତେବେ ତାହା ତୁଳନାରେ ଆପଣତ ବେଶ ଯୁବକ ଦେଖା ଯାଉଛନ୍ତି । କିପରି ଏହାକୁ ଆପଣ ସଫଳ କରିପାରିଛନ୍ତି ?" ମୁଁ ଉତ୍ତର ଦେଇଥିଲି - "ତା'ର କାରଣ ହେଲା ମୁଁ ବିଗତ ଏକ ମାସ ଧରି ସମ୍ରାଟଙ୍କ ସାମ୍ରାଜ୍ୟର ଅତ୍ୟୁତ୍କୃଷ୍ଟ ଜଳବାୟୁରେ ପରିଭ୍ରମଣ କରୁଛି ।" ପରିଶେଷରେ . . . ସେ ମୋତେ କହିଥିଲେ "ମୁଁ ଅନୁମାନ କରୁଛି ଯେ ଆପଣ ଇଂଲଣ୍ଡର ସାମ୍ରାଜ୍ଞୀ, ମହାମାନ୍ୟ ମହାରାଣୀଙ୍କର ଜଣେ ନିକଟତମ ବନ୍ଧୁ ।" ମୁଁ ଉତ୍ତର ଦେଇଥିଲି - "ନା, ମୁଁ ସେଇଆ ନୁହେଁ ।" କିନ୍ତୁ ତାଙ୍କ ମୁଖମଣ୍ଡଳରେ ବିରକ୍ତିକର ଭାବ ସଞ୍ଚାଳିତ ହେବା ଲକ୍ଷ୍ୟ କରି ମୁଁ ସାହସର ସହିତ ଯୋଗ କରିଥିଲି, "ତେବେ ଏପର୍ଯ୍ୟନ୍ତ ମୁଁ ଜଣେ ଅବିବାହିତ ପୁରୁଷ ।" ସେହି ମିଥ୍ୟା ମନ୍ତବ୍ୟ ଦେଇଥିବା ଯୋଗୁଁହିଁ ମୁଁ ସମ୍ପୂର୍ଣ୍ଣରୂପେ ସେହି ବୃଦ୍ଧ ଭଦ୍ରବ୍ୟକ୍ତିଙ୍କର ଅନୁଗ୍ରହ ପୁନଶ୍ଚ ଲାଭ କରିଥିଲି ।"

ତେଣୁ ତାଙ୍କରି ଅର୍ଥରେ ହିଁ କର୍ଜନଙ୍କୁ ତାଙ୍କର ପ୍ରାପ୍ୟ ପୁନଃ ପ୍ରଦାନ କରାଯାଇଥିଲା । ସେତେବେଳେ ବଜାରରେ ଉପଲବ୍ଧ ହେଉଥିବା ସେହି ପୁସ୍ତକର ଦ୍ୱିତୀୟ ସଂସ୍କରଣରୁ ଉପରୋକ୍ତ ପରିଚ୍ଛେଦଟିକୁ ବାଦ ଦେବା ପାଇଁ ସେ ଯତ୍ନ କରିଥିଲେ । ତେବେ ବାଦ ପଡ଼ି ନଥିବା ବହିର ପ୍ରଥମ ସଂସ୍କରଣରୁ ଖଣ୍ଡିଏ କପି ମୋତିଲାଲ ଅକ୍ତିଆର କରିପାରିଥିଲେ । ଭାରତୀୟମାନେ କର୍ଜନଙ୍କ ବ୍ୟର୍ଥତାକୁ ବେଶ ଉପଭୋଗ କଲାବେଳେ ସେ ସେହି ସମ୍ପର୍କରେ କିଛି କରିପାରୁ ନଥିଲେ । ସତ୍ୟର ଦୁହାଇ ଦେଇ ଗୋପନରେ ଅନୁଚିତ କାର୍ଯ୍ୟ କରିବାଭଳି ଦୁଃସାହସିକ କର୍ମତତ୍ପରତା ଥିବା ଗୁମର ବିଷୟରେ ପୂର୍ବରୁ ଖବର ସଂଗ୍ରହ କରି ତାହାକୁ ପ୍ରତିଯୋଗୀ ପତ୍ରିକାମାନଙ୍କ ପୂର୍ବରୁ ପ୍ରକାଶ କରିଥିବା ଯୋଗୁଁ ଇଂଲଣ୍ଡର ସମ୍ବାଦପତ୍ରଗୁଡ଼ିକ 'ପତ୍ରିକା'କୁ ସମ୍ପୂର୍ଣ୍ଣ କୃତିତ୍ୱ ପ୍ରଦାନ କରିଥିଲେ । 'ଦି ୱିକଲି ଟାଇମସ୍' ଲକ୍ଷ୍ୟ କରିଥିଲା ଯେ ଲର୍ଡ କର୍ଜନଙ୍କ "ସତ୍ୟ ପ୍ରତି ଶ୍ରଦ୍ଧା ସମ୍ଭବତଃ ଜୀବନର ପରକାଳରେ; ତାହାଙ୍କର ପତ୍ନୀଙ୍କଦ୍ୱାରା ପରିବାର ପରିଚାଳନା କାଳରେ ସଂଗୃହୀତ ହୋଇଥିଲା । ଏହା ଥିଲା ଏକ ପ୍ରକାର ହଠାତ୍ ବଳ ପ୍ରୟୋଗ କରି ଟାଣି ଆଣିବା ଭଳି ପ୍ରଖ୍ୟାତ ଘଟଣା ।" (ସେ ଜଣେ ଆମେରିକୀୟ ମହିଳାଙ୍କୁ ବିବାହ କରିଥିବାରୁ ସେ ତାଙ୍କର ଉତ୍ତରାଧିକାରିଣୀ ଥିଲେ ।)

ସମ୍ଭ୍ରାନ୍ତଶାଳୀ, ଅତି ଉଚ୍ଚନାସିକା ବିଶିଷ୍ଟ କର୍ଜନ, ଭାରତୀୟ ସମ୍ଭ୍ରାନ୍ତଶାଳୀତାକୁ ନିମ୍ନସ୍ତରର ତଥା ଇଂରେଜମାନଙ୍କ ନିକଟରୁ ଅନୁକରଣ କରାଯାଇଥିବା ବୋଲି ମନେ କରୁଥିଲେ । ସେ ବନ୍ଧୁ ମ୍ୟା...,

1900 ମସିହା ବେଳକୁ ହିଁ ଧାରଣା କରିନେଇଥିଲେ ଯେ, "କଂଗ୍ରେସ ତା'ର ପତନ ଲାଗି କମ୍ପମାନ ହେଉଛି । ମୁଁ ଭାରତରେ ରହିବା ଭିତରେ ଏହା ଶାନ୍ତିପୂର୍ଣ୍ଣଭାବେ ମୃତ୍ୟୁ ବରଣ କରିବା ଦିଗରେ ସହାୟକ ହେବି ବୋଲି ଏକ ବୃହତ୍ ଅଭିଳାଷ ପୋଷଣ କରିଛି ।" କିନ୍ତୁ ସେ ଭୁଲ ବୁଝିଥିଲେ । ପ୍ରକୃତରେ କଂଗ୍ରେସ ମୃତ୍ୟୁ ବରଣ କରୁ ନଥିଲା । ବରଂ ସୁବର୍ଣ୍ଣ ରଙ୍ଗୀୟ ପ୍ରଜାପତିର ପ୍ୟୁପା ଭଳି ଆସ୍ତରଣ ଭିତରୁ ବହିର୍ଗତ ହେଉଥିଲା ;

କଂଗ୍ରେସ ଭିତରେ ଏପରି ଗୋଟିଏ ଗୋଷ୍ଠୀ ଆଗେଇ ଆସୁଥିଲେ ଯେଉଁମାନେ ସମ୍ରାଟଙ୍କ ଅଖଣ୍ଡନୀୟତା ତଥା ଦୁର୍ଭେଦ୍ୟତା କିମ୍ବା ତାହାଙ୍କ ଆଶିର୍ବାଦ ଉପରେ ବିଶ୍ୱାସ କରୁ ନଥିଲେ । କଂଗ୍ରେସର କୌଣସି ଗୋଟିଏ, ଉଦ୍ଦେଶ୍ୟ ସଫଳ ହେବା ଦିଗରେ ଅସାମର୍ଥ୍ୟତା ସେହି ଗୋଷ୍ଠୀର ବ୍ୟକ୍ତିମାନଙ୍କୁ ସାମ୍ବିଧାନିକ ପ୍ରଥାର ନିଷ୍ଫଳତା ପ୍ରତି ଯଥାର୍ଥ ଅନୁଭବ କରାଇ ଦେଇଥିଲା । ସେମାନେ ମନେ କରିଥିଲେ ଯେ ସେମାନଙ୍କ ନିଜର ଫାଇଦା ପାଇଁ ଭାରତକୁ ବ୍ରିଟିଶ ହାତମୁଠାରେ ରଖିଛି । ତେଣୁ ଗଣ ଆନ୍ଦୋଳନ ମାଧ୍ୟମରେ, ସିଧାସଳଖ କାର୍ଯ୍ୟପନ୍ଥା ଦ୍ୱାରା ବିଦ୍ରୋହ, ଏପରିକି ସନ୍ତ୍ରାସବାଦ ମାଧ୍ୟମରେ . . . ବାଧ୍ୟ ନହେଲେ ସେମାନେ କୌଣସି କାର୍ଯ୍ୟଲାଗି ସମ୍ମତ ହେବେନାହିଁ । ସେମାନେ ବର୍ତ୍ତମାନସୁଦ୍ଧା କଂଗ୍ରେସକୁ ଅକ୍ତିଆର କରି ଆସୁଥିବା ଉଦାରପନ୍ଥୀମାନଙ୍କୁ ଭୀରୁ ବୋଲି ଆକ୍ଷେପ କରୁଛନ୍ତି । ସେମାନଙ୍କ ଇଉରୋପୀୟ ଢାଞ୍ଚାକୁ ଏବଂ ଆବେଦନମୂଳକ ମାଧ୍ୟମକୁ ବଦନାମ କରୁଛନ୍ତି । ସେମାନଙ୍କର ହୃଦୟ ମୌଳିକ, ଚରମପନ୍ଥୀମୂଳକ ଜାତୀୟତାବାଦରେ ପୂର୍ଣ୍ଣ ଥିଲା । (ପାଣ୍ଡେ-ଭାରତୀୟ ବିଖଣ୍ଡିକରଣ) ।

1901 ମସିହାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସର ବାର୍ଷିକ ଅଧିବେଶନ ବେଳେ ଏହି ଗୋଷ୍ଠୀର ଉଦ୍‌ଭବ ନେଇ ଆପାତତଃ କୌଣସି ଚିହ୍ନବର୍ଣ୍ଣ ନଥିଲା । ସେତେବେଳେ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟ ଆଗନ୍ତୁକମାନଙ୍କ ସାମାଜିକ ଅଧିକାର ସାବ୍ୟସ୍ତ କରିବା ପାଇଁ ନିଷ୍କ୍ରିୟ ପ୍ରତିରୋଧ ଚଳାଇଥିବା ଗାନ୍ଧିଜୀ, ସ୍ୱଦେଶକୁ ଫେରିଥିବା ଅବସରରେ ସେହି ଅଧିବେଶନରେ ଯୋଗ ଦେଇଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଭାରତୀୟ ନେତାମାନଙ୍କ ମନରେ ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଆଗ୍ରହର ଉଦ୍ରେକ କରାଇବା । ପ୍ରତିନିଧିମାନଙ୍କ ରହିବା ସ୍ଥାନରେ ସେ ପ୍ରଥମ ଥର ପାଇଁ ତିଳକ ଓ ମୋତିଲାଲଙ୍କ ସହ ସାକ୍ଷାତ କରିଥିଲେ । ସେମାନେ ତିଳକଙ୍କ କୋଠରୀରେ ଗପସପ ହୋଇଥିଲେ । "ତାହାଙ୍କ ସହିତ ସାକ୍ଷାତ କରିଥିବା ଅସଂଖ୍ୟ ଲୋକଙ୍କ ମଧ୍ୟରୁ," ତାହାଙ୍କ ଆତ୍ମଜୀବନୀରେ ଗାନ୍ଧିଜୀ କହିଛନ୍ତି- "ମୁଁ ଆଜି କେବଳ ଜଣକ ବିଷୟରେ ସ୍ମରଣ କରି ପାରୁଛି । ସେ ହେଉଛନ୍ତି 'ଅମୃତ ବଜାର ପତ୍ରିକା'ର ସମ୍ପାଦକ ସ୍ୱର୍ଗତ ମୋତିଲାଲ ଘୋଷ । ସେମାନଙ୍କ ସଶବ୍ଦ ହସ ଏବଂ ଶାସକ ଜାତିର ଅପକର୍ମ ବିଷୟକ କଥାବାର୍ତ୍ତା କଦାପି ଭୁଲି ହେବନାହିଁ ।" ଗାନ୍ଧିଜୀଙ୍କ ଦ୍ୱାରା ପ୍ରସ୍ତୁତ ପ୍ରସ୍ତାବ କାର୍ଯ୍ୟସୂଚୀ ଶେଷରେ ଉତ୍‌ଥାପିତ ହୋଇଥିଲା ଏବଂ ବିନା ଆଲୋଚନାରେ ତାହା ଗୃହୀତ ହୋଇଥିଲା । "ଜଣେ ମଧ୍ୟ ତାହାକୁ ବୁଝିବା ଲାଗି ବ୍ୟସ୍ତ ହୋଇ ନଥିଲେ । ସମସ୍ତେ ଯିବାଲାଗି ବ୍ୟଗ୍ରଥିଲେ; କାରଣ ସେହି ପ୍ରସ୍ତାବକୁ ଗୋଖଲେ ପ୍ରଥମରୁ ପରଖି ନେଇଥିଲେ । ତେଣୁ ଅନ୍ୟମାନଙ୍କ ପାଇଁ ତାହା ଦେଖିବା କିମ୍ବା ବୁଝିବାର

ଆବଶ୍ୟକତା ଅନୁଭୂତ ହୋଇ ନଥିଲା ।'' ଏହା ଲେଖିଛନ୍ତି ଗାନ୍ଧିଜୀ । ଏହିଭଳି ଭାବରେ ତାହା ଥିଲା ତିନିଦିନିଆ ବାର୍ଷିକ ମେଳା ।

ସେହିଭଳି ଭାବରେ ମୋତିଲାଲ ଓ ଗାନ୍ଧିଜୀଙ୍କ ମଧ୍ୟରେ ପ୍ରଥମ ସାକ୍ଷାତ ଅପରିଣାମିକ ହୋଇଥିଲା । ଦ୍ୱିତୀୟଥର ଲାଗି ସେମାନଙ୍କ ମଧ୍ୟରେ ସାକ୍ଷାତ 1915 ମସିହାରେ, କଲିକତାଠାରେ ଗାନ୍ଧିଜୀଙ୍କୁ ଦିଆଯାଉଥିବା ସାଧାରଣ ସମ୍ବର୍ଦ୍ଧନା ସଭାରେ ହୋଇଥିଲା । ସେଥିରେ ସଭାପତିତ୍ୱ କରିଥିଲେ ମୋତିଲାଲ । ଦକ୍ଷିଣ ଆଫ୍ରିକାରେ ତାହାଙ୍କର କାର୍ଯ୍ୟକଳାପ ଲାଗି ତଥା ଭାରତରେ ଯୁଦ୍ଧ ସମ୍ପର୍କୀୟ ପଦକ୍ଷେପ ଯୋଗୁଁ ସେ ତାଙ୍କର ପ୍ରଶଂସା କରିଥିଲେ । କିନ୍ତୁ ତଥାପି ସେତେବେଳ ପର୍ଯ୍ୟନ୍ତ ସେମାନଙ୍କ ମନର ମିଳନ ହୋଇ ପାରିନଥିଲା । କାରଣ ମୁଖ୍ୟତଃ ରାଜନୈତିକ ବିଶ୍ୱାସରେ ସେମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଥିଲା । ଗାନ୍ଧିଜୀ ଉଦାର ମନୋଭାବାପନ୍ନ ଥିବାବେଳେ ମୋତିଲାଲ ସାଲିସ୍‌ବିହୀନ ଚରମପନ୍ଥୀ ଥିଲେ । ପରକାଳରେ ସେମାନେ ବହୁବାର ସାକ୍ଷାତ କରିଥିଲେ । କିନ୍ତୁ 1920 ମସିହା ପର୍ଯ୍ୟନ୍ତ - ଯେତେବେଳେ ଗାନ୍ଧିଜୀ ଅହିଂସାତ୍ମକ ଗଣଆନ୍ଦୋଳନର ନେତା ହୋଇଥିଲେ ସେତେବେଳ ପର୍ଯ୍ୟନ୍ତ ସେମାନଙ୍କ ମତର ମିଳନ ହୋଇ ପାରି ନଥିଲା ।

କର୍ଜନଙ୍କ କାର୍ଯ୍ୟକଳାପ ଦିଗରେ ଦୃଷ୍ଟି ନିକ୍ଷେପ କରାଯାଉ । ସେ ରାଜ୍ୟଗୁଡ଼ିକର ପୁର୍ନଗଠନ ଲାଗି ଏକ ପୁରାତନ ତଥା ଅନ୍ତିମ ଯୋଜନାରେ ଚୁଡାନ୍ତ ସ୍ପର୍ଶ ଦେଇ ସାକାର କରିଥିଲେ । ତାହା ଫଳରେ ପୂର୍ବବଙ୍ଗ ସହିତ ଆସାମକୁ ମିଳିତ କରାଯାଇ ଗୋଟିଏ ନୂତନ ପ୍ରଦେଶ ଗଠନ କରାଯିବା ସଙ୍ଗେ ସଙ୍ଗେ ପଶ୍ଚିମ ବଙ୍ଗ, ବିହାର ଓ ଓଡ଼ିଶା ଆଉ ଗୋଟିଏ ପ୍ରଦେଶ ରୂପେ ଗଠିତ ହୋଇଥିଲା । "ନୂତନ ପୂର୍ବାଞ୍ଚଳ ପ୍ରଦେଶର ଅଧିକାଂଶ ଅଞ୍ଚଳ ମୁସଲମାନମାନଙ୍କ ଲାଗି ଉଦ୍ଦିଷ୍ଟ ରଖାଯାଇ ଏବଂ ବିହାରୀ ଓ ଓଡ଼ିଆମାନଙ୍କୁ ସେହିଭଳି ପଶ୍ଚିମାଞ୍ଚଳ ଦିଆଯିବା ସଙ୍ଗେ ସଙ୍ଗେ'' 1904 ମସିହାର ରିସ୍‌ଲେଙ୍କ ନିର୍ଘଣ୍ଟକୁ ଉଦ୍ଧାର କରି ଜେ. ଏଚ୍. ବ୍ରୁମ୍ ଫିଲଡ୍ ଲକ୍ଷ୍ୟ କରିଥିଲେ, "ସାଧାରଣ ଜନମତମୂଳକ ସଂଗଠନଗୁଡ଼ିକୁ ଉତ୍ସାହିତ କରାଯାଇ ପାରିବ ବୋଲି ଆଶା କରାଯାଇଥିଲା । ତତ୍ ସହିତ ମଫସଲର ଜନମତକୁ ପ୍ରଭାବିତ କରୁଥିବା କଲିକତାର ବଙ୍ଗାଳୀ "ଭଦ୍ରଲୋକଙ୍କ'' ଦ୍ୱାରା ଗଠିତ ରାଜନୈତିକ ଗୋଷ୍ଠୀଗୁଡ଼ିକର କାର୍ଯ୍ୟ କ୍ଷମତାକୁ ନଷ୍ଟ କରିଦେବ ବୋଲି ମଧ୍ୟ ଆଶା କରାଯାଉଥିଲା । ନିର୍ଦ୍ଦିଷ୍ଟରୂପେ କହିବାକୁ ଗଲେ ଏହା "ଭଦ୍ରଲୋକ''ଙ୍କ ଜାତୀୟବାଦୀ କାର୍ଯ୍ୟକଳାପକୁ କ୍ଷୁର୍ଣ୍ଣ କରି ଅନ୍ୟାନ୍ୟ ଗୋଷ୍ଠୀ ମଧ୍ୟରେ ଅନୁରୂପ ଉଦ୍ୟମ ଆଶା କରାଯାଇ ଥିଲା ।'' (ବ୍ରୁମ୍ ଫିଲଡ- ଇଲାଇଟ କନ୍‌ଫ୍ଲିକଟ୍ ଇନ୍ ଏ ପ୍ଲୁରାଲ୍ ସୋସାଇଟି) ।

ଯଦିଓ ନିର୍ଦ୍ଦିଷ୍ଟ ରୂପରେଖ ନେଇ ବିଭାଗୀକରଣ ବିଷୟ 1905 ମସିହା ଅକ୍ଟୋବର 16 ତାରିଖ ଦିନ ପ୍ରକାଶ ପାଇଥିଲା, ତଥାପି ସେହି ଆକାଂକ୍ଷିତ ପଦକ୍ଷେପ ବିଷୟରେ ବିବରଣୀମାନ 1903 ମସିହାରୁ ପ୍ରାପ୍ତ ହୋଇ ସାରିଥିଲା । ତାହାର ମୁକାବିଲା କରିବା ପାଇଁ ସାଧାରଣ ସଭାସମିତିର ଆୟୋଜନ କରାଯାଇ ତଥା ସମ୍ବାଦପତ୍ର ମାଧ୍ୟମରେ ସୁରେନ୍ଦ୍ରନାଥଙ୍କ ସେନାପତିତ୍ୱ ଆଦୌ ଫଳପ୍ରଦ ହୋଇ

ନଥିଲା । ନୂତନ କରି ନେତୃତ୍ୱ ଦେବା ପାଇଁ ଚରମପନ୍ଥୀମାନେ ଆଗେଇ ଆସିଥିଲେ । ପ୍ରତିରୋଧ ପାଇଁ ସେମାନଙ୍କର ନୂତନ କର୍ମପନ୍ଥା ଭବିଷ୍ୟତର ଜାତୀୟତାବାଦ କ୍ଷେତ୍ରରେ ସ୍ପଷ୍ଟ ବାରି ହୋଇ ପଡ଼ିଥିଲା । ଜନ୍ମଭୂମିକୁ ଜନ୍ମଦାତ୍ରୀରୂପେ ଭକ୍ତି କରାଯିବା ଉଚିତ ବୋଲି ସର୍ବତୋଭାବେ ବିଶ୍ୱାସ ପୋଷଣ କରୁଥିବା ସେହି ଗୋଷ୍ଠୀଙ୍କ ଭାବଧାରା ମଧ୍ୟରୁ ନୂତନ ଜାତୀୟତାବାଦର ସୃଷ୍ଟି ହୋଇଥିଲା । ଯଦିଚ ତାହା ଏକ ହିନ୍ଦୁ ଶୁଦ୍ଧି ପ୍ରୟୋଗ ଥିଲା ତଥା ଏକ ମାନବବାଦୀ ଆଦର୍ଶ ଥିଲା , ତଥାପି ସାଧାରଣ ଜନଜୀବନ କ୍ଷେତ୍ରରେ ଏହା ଅନ୍ୟାନ୍ୟ ଗୋଷ୍ଠୀର ଧାର୍ମିକ ବିଶ୍ୱାସଗୁଡ଼ିକର କୌଣସି ବିରୁଦ୍ଧାଚରଣ କରୁନଥିଲା । ଭାରତୀୟ ସାଂସ୍କୃତିକ ମୂଲ୍ୟବୋଧଗୁଡ଼ିକୁ ଅବଲମ୍ବନ କରିବା ପାଇଁ ତଥା ପାଶ୍ଚାତ୍ୟ ମୂଲ୍ୟବୋଧ ସମେତ କୋର୍ଟକଚେରୀ ଏବଂ ସ୍କୁଲ କଲେଜ ଭଳି ସରକାରୀ ଅନୁଷ୍ଠାନଗୁଡ଼ିକୁ ପରିହାର କରିବାପାଇଁ ଏହା ଆହ୍ୱାନ ଦେଇଥିଲା । ତତ୍ ସହିତ ଥିଲା ବ୍ରିଟିଶ ଦ୍ରବ୍ୟଗୁଡ଼ିକର ବର୍ଜନ ତଥା ଭାରତରେ ତିଆରି ବସ୍ତ୍ର ତଥା ଦ୍ରବ୍ୟାଦିର ବ୍ୟବହାର ଏବଂ ପରିସମାପ୍ତିରେ ନୁହେଁ, ପରିଶେଷରେ ସରକାରଙ୍କୁ ନିଷ୍କ୍ରିୟ ପ୍ରତିରୋଧ । ଏହି ନୂତନ ଜାତୀୟତା ବୋଧର ବ୍ୟାଖ୍ୟାକାରମାନେ ଥିଲେ ବଙ୍ଗଳାରେ ମୋତିଲାଲ ଘୋଷ, ବିପିନ୍ ଚନ୍ଦ୍ର ପାଲ, ଅଶ୍ୱିନୀ କୁମାର ଦତ୍ତ ଏବଂ ଅରବିନ୍ଦ ଘୋଷ; ମହାରାଷ୍ଟ୍ରରେ ତିଳକ; ପଞ୍ଜାବରେ ଲାଜପତ ରାୟ; ମାଡ୍ରାଜରେ ଚିଦାମ୍ବରମ ପିଲ୍ଲାଇ, ସୁବ୍ରମଣ୍ୟ ଭାରତୀ ଏବଂ ନୀଳକାନ୍ତ ବ୍ରହ୍ମଚାରୀ । ଏହି ନୂତନ ଜାତୀୟତାବାଦର ଦାର୍ଶନିକ ଭିତ୍ତି ପ୍ରଦାନ କରିଥିଲେ ଅରବିନ୍ଦ ଓ ରବୀନ୍ଦ୍ରନାଥ ଠାକୁର । ରାଜନୈତିକ ପରିବର୍ତ୍ତନ ପାଇଁ ଅସ୍ତ୍ରଭଳି ନିଷ୍କ୍ରିୟ ପ୍ରତିରୋଧକୁ ବ୍ୟବହାର କରାଯିବା ଲାଗି ଅରବିନ୍ଦ, 1907 ମସିହାରେ ଆପଣାର ମତ ଏହିଭଳି ଭାବରେ ବର୍ଣ୍ଣନା କରିଥିଲେ :

କେବଳ ଜାତୀୟ ଜୀବନର ପ୍ରତ୍ୟେକ ଦିଗକୁ ଆମେ ଆମ ନିଜ ହାତରେ ପରିଚାଳିତ କରିବା ପାଇଁ ନୁହେଁ, ଆମକୁ ମଧ୍ୟ ଅମଲାତାନ୍ତ୍ରିକ ବିରୋଧର ମୁକାବିଲା କରିବା ପାଇଁ ଏବଂ ଆମ ଦେଶରୁ ବିଦେଶୀ ଶାସନର ପ୍ରଭାବକୁ ବିତାଡ଼ିତ କରାଇବା ପାଇଁ ଏକ କେନ୍ଦ୍ରୀୟ ସଂସ୍ଥାର ସଂଗଠନ କରିବାକୁ ପଡିବ । ତାହା ଯଦି ଏକା ଥରକେ ସମ୍ଭବ ନହୁଏ ତେବେ ଗୋଟିଏ ଗୋଟିଏ କରି ନିଶ୍ଚିତ ଭାବେ ଏବଂ ସତର୍କତାମୂଳକ ଭାବେ ପ୍ରତିରୋଧ ସଂଗଠିତ କରାଇବାକୁ ପଡିବ - - - - - - । ଗୋଟିଏ ଜାତି ହିସାବରେ କିଭଳି ଭାବେ ଆମେ ସବୁ ବୁଦ୍ଧିଜୀବୀ ଗଠନ କରି ପାରିବା, ସମସ୍ତ ବିଷୟରେ ଉତ୍ତମ ରୂପେ ଜାଣି ପାରିବା ଏବଂ କିଭଳି ଭାବରେ ବିତ୍ତଶାଳୀ ତଥା ଅଧ୍ୟବସାୟୀ ହୋଇ ପାରିବା ତାହା ଆମ୍ଭମାନଙ୍କର ଅବ୍ୟବହିତ ସମସ୍ୟା ନୁହେଁ, ମାତ୍ର କେଉଁଭଳି ଭାବରେ ଆସନ୍ନପ୍ରାୟ ଜାତୀୟ ମୃତ୍ୟୁକୁ ଦୂରେଇ ଦିଆଯାଇ ପାରିବ, ନିଷ୍କଳଙ୍କ ସଙ୍କଟର କିପରି ପରିସମାପ୍ତି ଘଟିବ, କିପରି ପ୍ରତ୍ୟେକ କଥା ଓ କାର୍ଯ୍ୟରେ ଆମେ ଆମ ନିଜ ନିଜକୁ ପ୍ରତିପାଦିତ କରାଇ ପାରିବା ତଥା ମଣିଷ ଭଳି ବଞ୍ଚିରହି ପାରିବା ତାହାହିଁ ଆମ୍ଭମାନଙ୍କର ଜରୁରୀ ସମସ୍ୟା । ଶାନ୍ତିପୂର୍ଣ୍ଣ ଭାବରେ ଆମେ ଆଇନ ତଥା ଶାସନ ବିରୁଦ୍ଧରେ କାର୍ଯ୍ୟ କରୁ କିନ୍ତୁ ନିଷ୍କ୍ରିୟ ଭାବରେ ଆଇନ ଅନୁମୋଦିତ ପରିଣତିଗୁଡ଼ିକୁ ଗ୍ରହଣ କରିନେଉ ।

ଦେଢ଼ ଦଶନ୍ଧି ପୂର୍ବରୁ ଏହା ଗାନ୍ଧୀବାଦୀ ଆନ୍ଦୋଳନକୁ ଆଶା କରିଥିଲା ଏବଂ ଏହାର କ୍ଷେତ୍ର ପରୀକ୍ଷା ବଙ୍ଗଳାରେ ହୋଇଥିଲା । "ସତର୍କ ପ୍ରତିରୋଧ"ର ଦୁଇଟି ଅର୍ଥ ଥିଲା : କ୍ଷତ୍ରିୟ କିମ୍ବା ସଶସ୍ତ୍ର

ଯୋଦ୍ଧାଗଣ ରାକ୍ଷସମାନଙ୍କର ବିରୋଧକୁ ପବିତ୍ର ଯଜ୍ଞାନୁଷ୍ଠାନ କରାଇ ପ୍ରତ୍ୟକ୍ଷଭାବେ ମୁକାବିଲା କରୁଥିଲେ । ସେହି ସଂକେତ ପ୍ରୟୋଗ ଅତି ସ୍ପଷ୍ଟ ଥିଲା: ଏହା ଗୋପନରେ ଅନୁଷ୍ଠିତ ହେଉଥିବା ବିଦ୍ରୋହାତ୍ମକ ଆନ୍ଦୋଳନ ଉଦ୍ଦେଶ୍ୟରେ ହିଁ ଉଲ୍ଲେଖ ହୋଇଥିଲା ଯାହା ପ୍ରକୃତରେ ଦେଶର ସବୁ ଅଞ୍ଚଳକୁ ପରିବ୍ୟାପ୍ତ ହୋଇ ଯାଇଥିଲା ।

ସ୍ଥିରୀକୃତ ହୋଇ ସାରିଥିବା ବିଭକ୍ତକରଣ ବିଷୟ ଛଅ ବର୍ଷପରେ ଅନିଶ୍ଚିତ ହୋଇ ପଡିଥିଲା; ବଙ୍ଗଳାର ପୁନଃ ଏକୀକରଣ ହୋଇଥିଲା । ଯଦିଚ ବ୍ରିଟିଶ ସରକାର ଇତିମଧ୍ୟରେ ଲକ୍ଷ୍ୟ କରିଥିଲେ ଯେ ମୁସଲିମ୍‌ମାନଙ୍କ ଭିତରେ ଭର୍ତ୍ତି କରାଯାଇଥିବା ହିନ୍ଦୁ ବିରୋଧୀ ମନୋଭାବ - ଯାହାଥିଲା ବିଭାଗୀକରଣର ମୂଳଭିତ୍ତି ତାହା, ସେତେବେଳକୁ ସୃଷ୍ଟି ହୋଇ ସାରିଥିଲା । ଚରମପନ୍ଥୀମାନଙ୍କ ପ୍ରତିନିଧିମୂଳକ ସରକାର ଗଠନ ଦାବୀ ମୁସଲମାନମାନଙ୍କ ମଧ୍ୟରୁ ସମ୍ଭ୍ରାନ୍ତଶୀଳ ଗୋଷ୍ଠୀଙ୍କୁ ବିଚ୍ଛିନ୍ନ କରି ଦେଇଥିଲା । ସେମାନେ ହିନ୍ଦୁମାନଙ୍କ ସହିତ ଭୟାନକଭାବେ ପ୍ରତିଯୋଗିତା କରୁଥିଲେ । ବଙ୍ଗଳାର ରୟତମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଗ୍ରାମାଞ୍ଚଳର ଅଧିବାସୀ ଏବଂ ସେମାନେ ମୁଖ୍ୟତଃ ହିନ୍ଦୁ ଜମିମାଲିକମାନଙ୍କ ଦ୍ୱାରା ଅତି ଅମାନୁଷିକଭାବେ ଉତ୍ପୀଡିତ ହେଉଥିଲେ । ତେଣୁ ସେମାନେ ସରକାରଙ୍କଦ୍ୱାରା ପ୍ରୋତ୍ସାହିତ ହୋଇ ଉତ୍‌ଥିତ ହୋଇଥିଲେ ଏବଂ ହିନ୍ଦୁମାନଙ୍କ ବିରୋଧରେ ପ୍ରତିଶୋଧପରାୟଣ ହୋଇଉଠିଥିଲେ । କୌତୁହଳର ବିଷୟ ଯେ ବରିଶାଲ ଭଳି ମୁସଲିମ୍ ଅଧ୍ୟୁଷିତ ଜିଲ୍ଲାରେ, ଯେଉଁଠି ଅଶ୍ୱିନୀ କୁମାର ଦତ୍ତ ସରକାରୀ ଅନୁଷ୍ଠାନଗୁଡିକର ବର୍ଜନ ତଥା ନିଷ୍କ୍ରିୟ ପ୍ରତିରୋଧ ଲାଗି ଚେଷ୍ଟା କରୁଥିଲେ ସେଠାରେ ଜାତିଗତ ବିଭେଦତା ନେଇ ଗୋଟିଏ ମଧ୍ୟ ଘଟଣା ଘଟି ନଥିଲା ।

ଅନ୍ୟ ଗୋଟିଏ ପରିଣାମ ଥିଲା ଭାଷାଗତ- ସାଂସ୍କୃତିକ ଭିତ୍ତିରେ ପ୍ରଦେଶ ଗଠନ ଦାବୀର ଉନ୍ନତି ସାଧିତ ହେବା । ଯଦି ବଙ୍ଗଳା ଭାଷାଭାଷୀ ଲୋକଙ୍କର ଐକ୍ୟକୁ ସ୍ୱୀକୃତି ମିଳି ପାରିଥିଲା, ସେହିଭଳି ହିନ୍ଦୀ କହୁଥିବା ଲୋକଙ୍କ ଲାଗି ବିହାରକୁ ମଧ୍ୟ ସ୍ୱୀକୃତି ଦିଆ ଯାଇଥିଲା ଏବଂ ସେଥିରେ ଓଡିଶାକୁ ନିକ୍ଷେପ କରାଯାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯାଇଥିଲା । ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ କରାଯାଇଥିଲା ।

ତେବେ ବ୍ରିଟିଶ ସରକାରଙ୍କ ପ୍ରୋତ୍ସାହନ ଲାଭକରି ମୁସଲିମ୍ ବିଚ୍ଛିନ୍ନତାବାଦ ଅତି ସୁଦୁରପ୍ରସାରୀ ପ୍ରଭାବ ବିସ୍ତାର ଲାଭ କରିପାରିଥିଲା । ସୟଦ ଅହମ୍ମଦଙ୍କଦ୍ୱାରା ଆଲିଗଡଠାରେ ଏଙ୍ଗଲୋ-ମୁସଲିମ୍ କଲେଜରୂପକ ରୋପିତ ଚାରାକୁ ଅତି ଯତ୍ନର ସହିତ ବ୍ରିଟିଶ ପୃଷ୍ଠପୋଷକତାରେ ପାଳନ କରାଯାଇଥିଲା । ସେମାନଙ୍କ ହାତମୁଠାରେ ଥିବା ବେକ୍, ମୋରିସନ୍ ଏବଂ ଆର୍ଚିବୋଲଡ୍‌ଙ୍କ ଭଳି, ମୁଖ୍ୟତଃ ସମ୍ଭ୍ରାନ୍ତଶୀଳ ମୁସଲମାନ ପରିବାରରୁ ଆସୁଥିବା, ଅଧ୍ୟକ୍ଷମାନେ, ଛାତ୍ରମାନଙ୍କୁ ପରୋପକାରୀ ବ୍ରିଟିଶ ରାଜତ୍ୱରେ ମୁସଲମାନମାନଙ୍କ କାର୍ଯ୍ୟରେ ବାଧା ସୃଷ୍ଟି କରୁଥିବା କଂଗ୍ରେସକୁ ସେମାନଙ୍କ ଶତ୍ରୁରୂପେ ପରିଗଣିତ କରାଇବା ଲାଗି ସଫଳ ଉଦ୍ୟମ କରିଥିଲେ । କାରଣ ବ୍ରିଟିଶ ଶାସନ ଅଧୀନରେ

ପୈତୃକ ଅମଳରୁ ଚାକିରୀ କରି ଆସୁଥିବା ତୁଳନାରେ ଗଣତାନ୍ତ୍ରିକ ପଦ୍ଧତିରେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀୟ ମୁସଲମାନମାନେ କମ୍ ସଂଖ୍ୟାରେ ପ୍ରତିନିଧିତ୍ୱ କରିବାର ସମ୍ଭାବନା ଥିଲା । ପଶ୍ଚିମାଞ୍ଚଳ ଭାରତରେ ଶିକ୍ଷିତ ମୁସଲିମ୍ ଲୋକଙ୍କ କଂଗ୍ରେସରେ ସହଯୋଗଦ୍ୱାରା ଶାସକ ଗୋଷ୍ଠୀ ବିଚଳିତ ହୋଇ ଯାଇଥିଲେ । ଚଂପରିନ୍‌ଙ୍କଠାରୁ ଆରମ୍ଭକରି ଅନ୍ୟମାନେ, ଆଲିଗଡ ଗୋଷ୍ଠୀଙ୍କ ଦ୍ୱାରା ପ୍ରବର୍ତ୍ତିତ ବିଚ୍ଛିନ୍ନତାମୂଳକ ଦାବୀକୁ ଖୋଲାଖୋଲି ଭାବରେ ଉତ୍ସାହିତ କରିଥିଲେ । ବଙ୍ଗ ଭଙ୍ଗ ଯୋଜନାର କର୍ମଧାର କର୍ଜନଙ୍କୁ ପୂର୍ବ ବଙ୍ଗ ଏବଂ ଆସାମ ପ୍ରଦେଶ ଉଦ୍‌ଘାଟନ ହେବା ପୂର୍ବରୁ ଇସ୍ତଫା ଦେବାକୁ ପଡିଥିଲା । ତାଙ୍କଦ୍ୱାରା କରାଯାଇଥିବା ଯୋଜନାକୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱ ତାଙ୍କର ଉତ୍ତରାଧିକାରୀ ଲର୍ଡ ମିଣ୍ଟୋଙ୍କ ଉପରେ ପଡିଥିଲା । ସେହି ବିଭାଜନ ନେଇ ବିରୋଧୀମାନଙ୍କ ଗୁରୁତ୍ୱ ଏବଂ କଂଗ୍ରେସର ଚରମପନ୍ଥୀମାନଙ୍କ ଅବ୍ୟାହତ ଗତି ବିଶ୍ୱସ୍ତ ମୁସଲମାନ, କଂଗ୍ରେସ ବିରୋଧୀ ଏବଂ ତଥାକଥିତ ହିନ୍ଦୁରାଜ୍ୟ ବିରୋଧୀ ଗୋଷ୍ଠୀଙ୍କୁ ତତ୍‌କାଳିକ ଭାବରେ ଏକୀକୃତ ହେବା ଦିଗରେ ପ୍ରେରଣା ଯୋଗାଇ ଦେଇଥିଲା । ସେହି ଅନୁଯାୟୀ 1906 ମସିହାରେ କେତେକ ମୁସଲମାନ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ନେଇ ଏକ ପ୍ରତିନିଧିମଣ୍ଡଳୀ ଜାଗୃତ ହୋଇଥିଲା ଏବଂ ସେହି ବର୍ଷ ଡିସେମ୍ବର ମାସରେ ମୁସଲିମ୍ ଲିଗ୍ ଗଠିତ ହୋଇଥିଲା । ମୋତିଲାଲଙ୍କ ଦ୍ୱାରା ସେହି ଗୋଷ୍ଠୀର ଚିତ୍ରଣ, ସେମାନଙ୍କର ଜାତୀୟତାବାଦୀ ମନୋଭାବର ପ୍ରତିନିଧିତ୍ୱ କରିଥିଲା :

> ଏହି ସମସ୍ତ ବିଷୟ ଏକ ଉତ୍‌ଥାପିତ ପ୍ରସଙ୍ଗ ଭଳି ମନେହୁଏ ଏବଂ ସଂପୂର୍ଣ୍ଣରୂପେ ଆଗ୍ରହୀ କର୍ମଚାରୀମାନଙ୍କଦ୍ୱାରା ପରିଚାଳିତ ହେବା ଭଳି ଜଣାପଡେ - - - - । ସେହି କାରଣରୁ ସର୍ବଭାରତୀୟ ମହମ୍ମଦୀୟ ପ୍ରତିନିଧିମଣ୍ଡଳୀଟି ପ୍ରକୃତରେ ସର୍ବ ଭାରତୀୟ ନୁହେଁ କିମ୍ବା ସମସ୍ତ ମହମ୍ମଦୀୟ ମଧ୍ୟ ନୁହେଁ କିମ୍ବା ଏପରିକି ସଠିକ୍ ଭାବରେ ପ୍ରତିନିଧି ସ୍ଥାନୀୟ ମଧ୍ୟ ନୁହେଁ । ଏହା କେବଳ ସରକାରୀ କର୍ମଚାରୀମାନଙ୍କ ଦ୍ୱାରା କରାଯାଉଥିବା କାର୍ଯ୍ୟକଳାପଗୁଡିକର ସଫେଦକରଣ ପାଇଁ ଏକ ଉପାୟ ।

ସମକାଳୀନଭାବେ ପୂର୍ବ ବଙ୍ଗରେ ନୂତନ ଲେଫଟନାଣ୍ଟ ଗଭର୍ଣ୍ଣର ସାର୍ ବେମଫିଲ୍‌ଡେ ଫୁଲର (Sir Bamfylde Fuller) ବେଶ ସକ୍ରିୟଭାବେ ହିନ୍ଦୁ ଜାତୀୟବାଦୀମାନଙ୍କ ବିରୁଦ୍ଧରେ ମୁସଲିମ୍‌ମାନଙ୍କୁ ଉତ୍ସାହିତ କରୁଥିଲେ । ଫୁଲର ଏଭଳି ଗଣ୍ଡଗୋଳିଆ ଭାବରେ ଏବଂ ଏତେ ଉଦ୍ଧତ ଭାବରେ ତାହାଙ୍କ କାର୍ଯ୍ୟ ପରିଚାଳନା କରିଥିଲେ ଯେ 1906 ମସିହାରେ ତାଙ୍କୁ କାର୍ଯ୍ୟରୁ ଇସ୍ତଫା ଦେବାକୁ ହୋଇଥିଲା । କିନ୍ତୁ ସେତେବେଳକୁ ଜାତୀୟବାଦୀମାନଙ୍କ ମଧ୍ୟରୁ ଚରମପନ୍ଥୀ ଗୋଷ୍ଠୀ ଗୋପନ ରୂପେ ବିଦ୍ରୋହାତ୍ମକ ସଂଗଠନମାନ ଆରମ୍ଭ କରିସାରିଥିଲେ । ତେଣେ ଦମନମୂଳକ ନୀତି, ସଫଳ-ରୂପେ ତାହାର ଉଦ୍ଦେଶ୍ୟ ସାଧନ କରି ଚାଲିଥିଲା । ଉଦାରପନ୍ଥୀମାନଙ୍କ ବିଚକ୍ଷଣ ପ୍ରଭାବକୁ ଧକ୍କା ଦେଇ ଦୂରକୁ ଠେଲି ଦେବାପାଇଁ ତଥା ସେମାନଙ୍କ ପ୍ରିୟ ସହଯୋଗୀ ସୁନିର୍ବାଚିତ ମୁସଲିମ୍ ଗୋଷ୍ଠୀ ସପକ୍ଷରେ ଉଚ୍ଚତମ ମହଲ ଏକ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରିବା ଲାଗି ସ୍ଥିର କରିଥିଲା । ତେଣୁ 1909ରେ ଭାରତୀୟ କାଉନ୍‌ସିଲ୍ ଆଇନ୍ ଯାହା ମୋର୍ଲେ-ମିଣ୍ଟୋ-ସଂସ୍କାର ନାମରେ ପରିଚିତ, ତାହା ପ୍ରଚଳନ କରାଯାଇଥିଲା । ସେଥିରେ ମୁସଲମାନମାନଙ୍କ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀକୁ ସ୍ୱୀକାର

କରି ନିଆ ଯାଇଥିଲା ଏବଂ ଜମିମାଲିକମାନଙ୍କ ସ୍ୱତନ୍ତ୍ର ପ୍ରତିନିଧିତ୍ୱ ଲାଗି ମଧ୍ୟ ବ୍ୟବସ୍ଥା କରାଯାଇଥିଲା । ବଳକା ସ୍ଥାନଗୁଡିକ ଲାଗି ପରୋକ୍ଷ ନିର୍ବାଚନ ପଦ୍ଧତି ସ୍ଥିର କରାଯାଇଥିଲା । ମିଣ୍ଟୋ ଏବଂ ମୋର୍ଲେ ଉଭୟେ ଅତି ଶୀଘ୍ର ଅନୁଭବ କରିଥିଲେ ଯେ ସେମାନେ ଖୁବ୍ ବେଶୀ ପରିମାଣରେ ଅନ୍ୟାୟ କରିଛନ୍ତି ଏବଂ ପୁଣି ସଂଖ୍ୟାଗରିଷ୍ଠ ମତକୁ ମଧ୍ୟ ଅସ୍ୱୀକାର କରିଛନ୍ତି । ତେବେ ସେମାନଙ୍କ ମତଥିଲା ଭାରତୀୟମାନଙ୍କ ଠାରୁ ଭାରତୀୟ ସାମ୍ରାଜ୍ୟକୁ ରକ୍ଷା କରାଯିବା ଆବଶ୍ୟକ ଏବଂ ଯୁଦ୍ଧରେ କରାଯାଇଥିବା କାର୍ଯ୍ୟ କେବେ ବି ନୀତିବିରୁଦ୍ଧ ନୁହେଁ । ସେହି ନୀତିବିରୁଦ୍ଧତା କ୍ରମଶଃ ବୃଦ୍ଧି ପାଇଥିଲା ଏବଂ ତା'ର ଶେଷ ପରିଣତି ସାମ୍ରାଜ୍ୟ ଲାଗି ଭୟଙ୍କର ହୋଇ ପଡିଥିଲା ।

ସେହି ସମୟରେ କଂଗ୍ରେସକୁ ନିୟନ୍ତ୍ରଣ କରୁଥିବା ଉଦାରପନ୍ଥୀ ନେତୃତ୍ୱ, ସୁରେନ୍ଦ୍ରନାଥ ଏବଂ ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ବ୍ୟତୀତ, ସେହି ସଂସ୍କାରଗୁଡିକର ବିରୁଦ୍ଧରେ କଡାକଡିଭାବେ ସ୍ୱର ଉତ୍ତୋଳନ କରିବାପାଇଁ ସମର୍ଥ ହୋଇ ନଥିଲା । ବସ୍ତୁତଃ ଗୋଖଲେ ଏବଂ ତାଙ୍କ ସମର୍ଥକମାନେ ସେହି ସଂସ୍କାରଗୁଡିକ ସପକ୍ଷରେ ଯୁକ୍ତି କରିଥିଲେ । କଂଗ୍ରେସର ମର୍ଯ୍ୟାଦା କିପରି ଭାବରେ ଦୁର୍ବଳ ହୋଇ ଆସିଥିଲା ତାହା ସଂକ୍ଷେପରେ ନିମ୍ନରେ ବର୍ଣ୍ଣନା କରାଯାଇଛି ।

କଂଗ୍ରେସ ଭିତରେ ଉଦାରପନ୍ଥୀ ଓ ଚରମପନ୍ଥୀମାନଙ୍କ ମଧ୍ୟରେ ମତାନ୍ତର କ୍ରମଶଃ ସ୍ପଷ୍ଟ ହୋଇ ଉଠିଥିଲା । 1906 ମସିହାରେ ସଭାପତିଙ୍କ ମଧ୍ୟସ୍ଥତା ଯୋଗୁଁ ଉଭୟ ଦଳ ଭିତରେ ଉପୁଜିବାକୁ ଥିବା ଏକ କନ୍ଦଳକର ପରିସ୍ଥିତି ପରିହାର କରାଯାଇ ପାରିଥିଲା । ସ୍ୱାୟତ୍ତ ଶାସନ ବା ସ୍ୱରାଜ୍ୟ କଂଗ୍ରେସର ଲକ୍ଷ୍ୟ ବୋଲି ଦାଦାଭାଇ ନାଓରୋଜୀ ସ୍ପଷ୍ଟ କରି ଦେଇଥିଲେ । ଏହାର ବ୍ୟାଖ୍ୟା କରି ସେ କହିଥିଲେ ଯେ ଇଂଲଣ୍ଡ ଭଳି କିମ୍ବା ତାଙ୍କ ଦ୍ୱାରା ଶାସିତ (ଇଂରେଜ ମାନଙ୍କ) ଏକ ରାଜ୍ୟ ଭଳି ଭାରତର ସ୍ୱରାଜ୍ୟ ଆବଶ୍ୟକ । ଅଧିବେଶନର ପରିସମାପ୍ତି ପରେ ତାତ୍ପର୍ଯ୍ୟ ପୂର୍ଣ୍ଣଭାବେ ସେ ଭାଇସରାୟଙ୍କ ସହିତ ସାକ୍ଷାତ କରିବା କାର୍ଯ୍ୟକ୍ରମରୁ ନିବୃତ୍ତ ରହିଥିଲେ ଯାହା ଭାଇସରାୟଙ୍କୁ କମ୍ ବିବ୍ରତ କରାଇ ନଥିଲା ।

ତତ୍‌ପରବର୍ଷ ସୁରାଟ କଂଗ୍ରେସ ଅଧିବେଶନରେ ମତ ବିଭେଦ ଅବଶ୍ୟମ୍ଭାବୀ ହୋଇ ପଡିଥିଲା । ତଥାପି ସେତେବେଳ ପର୍ଯ୍ୟନ୍ତ ଅନୁଷ୍ଠାନକୁ ନିୟନ୍ତ୍ରଣ କରି ଆସୁଥିବା ଉଦାରପନ୍ଥୀମାନେ, ଜଣେ ପ୍ରଖ୍ୟାତ ଆଇନଜୀବୀ ରାସ ବିହାରୀ ଘୋଷଙ୍କୁ (ସଭାପତି ପଦପାଇଁ) ମନୋନୀତ କରିଥିଲେ । (କୌତୁହଳବଶତଃ ସେ ଚରମପନ୍ଥୀମାନଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଜାତୀୟ ଶିକ୍ଷା ପରିଷଦର ଅଧ୍ୟକ୍ଷ ଥିଲେ ଯାହା ସରକାରୀ ପରିଚାଳିତ ଶିକ୍ଷା ପଦ୍ଧତିର ସମାନ୍ତରାଳ ଥିଲା) ଚରମପନ୍ଥୀଦଳ ସଭାପତି ପଦପାଇଁ ତିଳକ କିମ୍ବା ଲାଜପତ ରାୟଙ୍କ ନାମ ପ୍ରସ୍ତାବ କରିଥିଲେ । ଅଧିବେଶନ ଉଦ୍‌ଘାଟନ ବେଳେ ହିଁ ସେଠାରେ ପ୍ରବଳ ମତଭେଦ ଆରମ୍ଭ ହୋଇ ଯାଇଥିଲା । ମଞ୍ଚ ଉପରେ ତିଳକଙ୍କୁ କହିବା ପାଇଁ ସଭାପତି ଅନୁମତି ପ୍ରଦାନ କରି ନଥିବା ଯୋଗୁଁ ସେ ସଭାପତି ନିର୍ବାଚନ ପଦ୍ଧତି ସଂପର୍କରେ କହିବାପାଇଁ ମଣ୍ଡପ ଉପରକୁ ଚାଲି ଆସିଥିଲେ । ସଭାମଞ୍ଚ ଉପରେ ଥିବାବେଳେ ତାଙ୍କ ଉପରକୁ ଦର୍ଶକମଣ୍ଡଳୀରୁ ଗୋଟିଏ ଜୋତା ଫୋପଡା ଯାଇଥିଲା । ତାପରେ ପରେ ସେଠାରେ ଏକ ଅଶାନ୍ତ

ବାତାବରଣ ସୃଷ୍ଟି ହୋଇଥିଲା । ସମସ୍ତ ଅବ୍ୟବସ୍ଥା ମଧ୍ୟରେ ସେହି ଅଧିବେଶନ ଭଗ୍ନ ହୋଇଥିଲା । ସେତେବେଳେ ଏହା ମନେ କରାଯାଇଥିଲା ଯେ ଜଣେ ଚରମପନ୍ଥୀ ଖୁବ୍ ଜୋର୍‌ରେ ସେହି ଜୋତାଟି ଫୋପାଡି ଥିଲେ ଯାହା ସୁରେନ୍ଦ୍ରନାଥଙ୍କ ଉପରେ ବାଜିଥିଲା । ତାହାକୁ କେନ୍ଦ୍ର କରି ବିଭିନ୍ନ କଥା ମଧ୍ୟ କୁହାଯାଇଥିଲା । ଉଦାରପନ୍ଥୀ ନେତା ଜି. ଏସ୍. ଖାପର୍ଡେଙ୍କ ଡାଏରୀ ସମର୍ଥନ କରୁଥିବା ଏମ. ଆର୍. ଜୟକରଙ୍କ ମତ ଅନୁଯାୟୀ ଏହା ଅନୁମତି ହୁଏ ଯେ ଉଦାରପନ୍ଥୀ ଦଳ ସହିତ ସଂପୃକ୍ତ ଥିବା ଜଣେ ପ୍ରତିନିଧି ତିଳକଙ୍କ ଉପରକୁ ଜୋତାଟି ନିକ୍ଷେପ କରିଥିଲେ ଏବଂ ତାହା ଲକ୍ଷଚ୍ୟୁତ ହୋଇ ଯାଇଥିଲା । ପରିଣାମତଃ ତାହା ଫିରୋଜ ସାହ ମେହେଟାଙ୍କ ଉପରେ ପ୍ରଥମେ ବାଜି ତା'ପରେ ସୁରେନ୍ଦ୍ରନାଥଙ୍କ ଉପରେ ପଡିଥିଲା ।

ଚରମପନ୍ଥୀ ଦଳର ଜଣେ ମୁଖ୍ୟ ନେତା ମୋତିଲାଲ "ପରମ ବିନମ୍ରଭାବେ ସେମାନଙ୍କ ମଧ୍ୟରେ ବନ୍ଧୁତ୍ୱର ପୁନଃ ପ୍ରତିଷ୍ଠା ଦିଗରେ ଫଳପ୍ରଦ ଉଦ୍ୟମ ପାଇଁ ତଥା ତତ୍‌ପରଦିନ କଂଗ୍ରେସର ଅଧିବେଶନ ଅନୁଷ୍ଠିତ କରାଇବା ପାଇଁ ସମସ୍ତ ଉଦ୍ୟମ କରିଥିଲେ । କ୍ଷମା ଯାଚନା କରିବା ପାଇଁ ସେ ତିଳକଙ୍କୁ ପ୍ରବର୍ତ୍ତାଇଥିଲେ ମଧ୍ୟ ଉଦାରପନ୍ଥୀ ନେତାମାନେ ତାହାଙ୍କୁ କର୍ଣ୍ଣପାତ କରିବା ପାଇଁ ଆଗ୍ରହୀ ନଥିଲେ । ସେମାନେ ଭୟ ସଂକୁଳିତ ହୋଇ ଯାଇଥିଲେ ଯେ ଯଦି କଂଗ୍ରେସ ଭିତରେ ଆନ୍ଦୋଳନକାରୀମାନେ ଗୁରୁତ୍ୱପୂର୍ଣ୍ଣଭାବେ ରହି ଯାଆନ୍ତି ତେବେ ଏହାକୁ ସରକାର ଅନୁଗ୍ରହରୁ ବଞ୍ଚିତ କରିବେ । ପ୍ରକୃତରେ ସେମାନେ କଂଗ୍ରେସରୁ ଚରମପନ୍ଥୀମାନଙ୍କୁ ବାଦ ଦେଇଥିଲେ କିମ୍ବା ଚରମପନ୍ଥୀ ଦଳ କଂଗ୍ରେସକୁ ପରିତ୍ୟାଗ କରିଥିଲେ ତାହା ସ୍ପଷ୍ଟ ହୋଇନଥିଲା । ଏହା କିନ୍ତୁ ନିଶ୍ଚିତ ଥିଲା ଯେ ଶେଷୋକ୍ତ ଦଳ 1908 ମସିହାରେ କଲିକତାଠାରେ ମୋତିଲାଲଙ୍କ ଗୃହରେ ଏକତ୍ରିତ ହୋଇଥିଲେ । ସେଠାରୁ ସେମାନେ ଏକ ଇସ୍ତାହାର ପ୍ରକାଶ କରିଥିଲେ, ଯେଉଁଥିରେ ସେମାନେ କଂଗ୍ରେସରେ ଯୋଗ ଦେବା ଲାଗି କାହିଁକି ଇଚ୍ଛୁକ ନୁହନ୍ତି ତାହା ବର୍ଣ୍ଣନା କରାଯାଇଥିଲା । 1916 ମସିହା ପର୍ଯ୍ୟନ୍ତ ଚରମପନ୍ଥୀ ଗୋଷ୍ଠୀ କଂଗ୍ରେସରେ ପୁନଃ ଯୋଗ ଦେଇ ନଥିଲେ ।

ତେବେ ଆମ୍ଭେମାନେ ବଙ୍ଗଳାକୁ ଏବଂ ସ୍ୱଦେଶୀ ଆନ୍ଦୋଳନର ଦିନଗୁଡିକରେ ସଂଘଠିତ ହୋଇ ଯାଇଥିବା ନାଟକୀୟ ଘଟଣାବଳୀରେ ମୋତିଲାଲଙ୍କ ଭୂମିକା ବିଷୟକୁ ଫେରିଯିବା ।

# ଦଶ: ସ୍ୱଦେଶୀ ଆନ୍ଦୋଳନ

ବଙ୍ଗଳାର ବିଭାଜନ ଦେଶରେ ଏହାକୁ ଅଭୂତପୂର୍ବ ବିଦ୍ରୋହର ଘୂର୍ଣ୍ଣିବାତ୍ୟା ଭିତରକୁ ନିକ୍ଷେପ କରି ଦେଇଥିଲା । ସହରାଞ୍ଚଳ ତଥା ଗ୍ରାମାଞ୍ଚଳଗୁଡ଼ିକର ଶିକ୍ଷିତ ମଧ୍ୟବିତ୍ତମାନଙ୍କ ନେତୃତ୍ୱରେ ଦେଶୀୟ ପଦାର୍ଥଗୁଡ଼ିକର, ବିଶେଷ କରି ବସ୍ତ୍ରାଦିର ବ୍ୟବହାର ଏବଂ ବିଦେଶୀ ଦ୍ରବ୍ୟ, ବିଶେଷ କରି ବ୍ରିଟିଶଜାତ ପଦାର୍ଥଗୁଡ଼ିକର ବର୍ଜନ ପାଇଁ ଆନ୍ଦୋଳନ ଜନସାଧାରଣଙ୍କ ମଧ୍ୟରେ ପ୍ରଚାରିତ ହୋଇଥିଲା ଜନସାଧାରଣଙ୍କ ଶୃଙ୍ଖଳାବଦ୍ଧ ଡାକରାରେ ପରିଣତ ହୋଇଥିଲା 'ବନ୍ଦେ-ମାତରଂ' । ସାରା ଭାରତର ଜାତୀୟବାଦୀମାନଙ୍କ ମଧ୍ୟରେ ଏକୀକରଣର ଚିତ୍ର ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଥିଲା । 'ବର୍ଜନ'ର ବୃହତ୍ତର ତାତ୍ପର୍ଯ୍ୟ ସମ୍ପର୍କରେ 1906 ମସିହାରେ, କଲିକତାଠାରେ ଆୟୋଜିତ ଏକ ସାଧାରଣ ସଭାରେ ତିଳକ କହିଥିଲେ ଯେ ତାହା ଥିଲା ଏକ ରାଜନୈତିକ ଅସ୍ତ୍ର । ସେ କହିଥିଲେ :

"ରାଜସ୍ୱ ଆଦାୟ କରିବାପାଇଁ କିମ୍ବା ଶାନ୍ତି ବଜାୟ ରଖିବାପାଇଁ ଆମ୍ଭେମାନେ ସେମାନଙ୍କୁ ସହାୟତା କରିବା ଉଚିତ ନୁହେଁ । ଭାରତର ସୀମାନ୍ତ ବ୍ୟତୀତ କିମ୍ବା ଭାରତ ବାହାରେ ଭାରତର ଅର୍ଥ କିମ୍ବା ରକ୍ତ ବିନିମୟରେ ଯୁଦ୍ଧ କରିବାପାଇଁ ଆମେ ସେମାନଙ୍କୁ ସାହାଯ୍ୟ କରିବା ନାହିଁ । ଶାସନଗତ ନ୍ୟାୟ ବିଚାର କରିବା ପାଇଁ ଆମେ ସେମାନଙ୍କୁ ସହାୟତା କରିବା ନାହିଁ । ଆମେ ଆମ ନିଜର ବିଚାରାଳୟ ସ୍ଥାପନ କରିବା ଏବଂ ଯଥା ସମୟ ଉପସ୍ଥିତ ହେଲେ ଆମେ ସେମାନଙ୍କୁ କୌଣସି ଖଜଣା ଦେବା ନାହିଁ । ସମଷ୍ଟିଗତ ଭାବେ ଉଦ୍ୟମ କରି ଆପଣମାନେ କଣ ତାହା କରିପାରିବେ ? ଯଦି ଆପଣମାନେ ତାହା କରିପାରିବେ, ତାହାହେଲେ କାଲିଠାରୁ ଆପଣମାନେ ମୁକ୍ତ ।"

ତାର ପ୍ରାୟ ଦେଢ଼ ବର୍ଷ ପୂର୍ବେ, ବିଭାଗୀକରଣର ଅବ୍ୟବହିତ ପୂର୍ବରୁ ମୋତିଲାଲ ଟିପ୍ପଣୀ ପ୍ରଦାନ କରିଥିଲେ;

"ଲର୍ଡ କର୍ଜନ 60 ନିୟୁତ ବଙ୍ଗାଳୀଙ୍କୁ ବେଦନାର ପ୍ରକମ୍ପନ ମଧ୍ୟକୁ ନିକ୍ଷେପ କରି ଦେଇଥିଲେ ଏବଂ ତାହା ମାନନୀୟ ସରକାର ଅବଗତ । ଏହା କିଭଳି ଭାବରେ ସେ କରି ପାରିଥାନ୍ତେ ? ଏହା କରିପାରିଥିବାର କାରଣ ତାହାଙ୍କୁ ସହାୟତା କରିବା ପାଇଁ ଭାରତୀୟମାନଙ୍କ ଦ୍ୱାରା ପରିପାଳିତ 72 ହଜାର ସୈନ୍ୟସାମନ୍ତ ତାଙ୍କ ନିକଟରେ ମହଜୁଦ ।

ପୁଣି :

ଆପଣାର ପୁର୍ନଜୀବନ ଲାଭ କରିବାପାଇଁ ରକ୍ତର ନଦୀ ବୁହାଇ ନଥିବାଭଳି ଗୋଟିଏ ଜାତି କ୍ୱଚିତ୍ ଦେଖିବାକୁ ମିଳିବ । ଆମେରିକା ଏବଂ ଇଂଲଣ୍ଡକୁ ମଧ୍ୟ ଏହିଭଳି କରିବାକୁ ହୋଇଥିଲା । ନୀଳ ରଯ୍ୟତ-ମାନଙ୍କର ଦୃପ୍ତ ଘୋଷଣା ଥିଲା "ଏହି ହାତ ପୁଣି ଥରେ ନୀଳ ବିହନ କଦାଚିତ୍ ସ୍ପର୍ଶ କରିବ ନାହିଁ ।" ତେଣୁ ବର୍ତ୍ତମାନ, ବିଭାଜନର ବିରୁଦ୍ଧକାରୀମାନଙ୍କ ଡାକରା ହେଉ "ଯେତେଦୂର ସମ୍ଭବ ବିଦେଶୀ ଦ୍ରବ୍ୟଗୁଡ଼ିକୁ ଏହି ହାତ ଛୁଇଁବ ନାହିଁ ।"

ବିଭାଗୀକୃତ ପ୍ରଦେଶଗୁଡ଼ିକ ଉଦ୍‌ଘାଟିତ ହେବା ଦିନ, 1905 ମସିହାରେ ଅକ୍ଟୋବର 16 ତାରିଖ ଦିନ ମୋତିଲାଲ 'ପତ୍ରିକା'ରେ ଲେଖିଥିଲେ:

"ଏହି ନିର୍ଦ୍ଦିଷ୍ଟ ପଦକ୍ଷେପ ଦ୍ୱାରା ଯେତେଦୂର ସମ୍ଭବ ଏହି ବିଷୟକୁ ସ୍ପଷ୍ଟ କରାଇ ଦିଆଗଲା ଯେ ଶାସକବର୍ଗଙ୍କ ଦ୍ୱାରା ଭାରତୀୟମାନଙ୍କୁ ମଣିଷ ହିସାବରେ ନୁହେଁ, ଏକ ପଶୁ ଜାତି ହିସାବରେ ବିଚାର କରାଯାଉଛି । କିନ୍ତୁ ଏହି ଦାରୁଣ ଶାରୀରିକ ଦଣ୍ଡପାଇଁ ବଙ୍ଗଳାର ଜନସାଧାରଣ କଦାପି ଦୀର୍ଘ ନିଦ୍ରାଚ୍ଛନ୍ନ ନ ରହି ତାହା ତ୍ୟାଗ କରିବେ ଏବଂ ଉଦାସୀନ ନରହି ଯାଗ୍ରତ ହେବେ । ଲର୍ଡ କର୍ଜନଙ୍କର ଅତ୍ୟାଚାର-ମୂଳକ କର୍ଯ୍ୟକଳାପ ଯୋଗୁଁ ଆମେ ସ୍ୱଦେଶୀ ଆନ୍ଦୋଳନ ଲାଗି ପ୍ରତିଜ୍ଞାବଦ୍ଧ, ଯାହା ବିଧିବଦ୍ଧ ଭାବେ ପୃଥିବୀରେ ବିସ୍ମୟ ସୃଷ୍ଟି କରିଛି । ଯଦି ଏହା ଯଥାର୍ଥ ଭାବେ ପରିଚାଳିତ ହୁଏ ତେବେ ଏହା ନିଶ୍ଚିତ ରୂପେ ଗୋଟିଏ ମୃତବତ୍ ଜାତିର ପୁନର୍ଜୀବନ ସଂଚାର କରିବ ।

1906 ମସିହା ଜାନୁଆରୀ ମାସରେ ପରବର୍ତ୍ତୀରେ ପଞ୍ଚମ ଜର୍ଜ ରୂପେ ପରିଚିତ ୱେଲ୍‌ସର ଯୁବରାଜ ଭାରତ ପରିଦର୍ଶନ କରିବା ପାଇଁ ଆସିଥିଲେ । ସେ ଯେତେବେଳେ କଲିକତାରେ ପହଞ୍ଚିଥିଲେ ସେଠାରେ ଉତ୍ତେଜନା ସୃଷ୍ଟିକାରୀ ସମ୍ବାଦପତ୍ର ଯଥା 'ପତ୍ରିକା', 'ଦି ବେଙ୍ଗଲି' ଏବଂ 'ଦି ଷ୍ଟେଟସ୍‌ମ୍ୟାନ୍' (ସେତେବେଳେ ଚରମ ମତବାଦୀ ଏସ୍ କେ ରାଟକ୍ଲିଫଙ୍କ ଦ୍ୱାରା ସଂପାଦିତ ହେଉଥିଲା) ପ୍ରଭୃତିଗୁଡ଼ିକ କିଭଳି ଭାବରେ ଯୁବରାଜଙ୍କ ନିକଟରେ ପହଞ୍ଚି ପାରିବେ ନାହିଁ ସେଥିପାଇଁ ସରକାରୀ କର୍ମକର୍ତ୍ତାମାନେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । କିନ୍ତୁ ତାଙ୍କର ବ୍ୟକ୍ତିଗତ ସଚିବ ସାର୍ ୱାଲଟର ଲରେନ୍‌ସ ଥିଲେ ମୋତିଲାଲଙ୍କ ଜଣେ ପୁରାତନ ବନ୍ଧୁ । ସେ ଯୁବରାଜଙ୍କ ସାମନାରେ ପ୍ରତିଦିନ ପତ୍ରିକାର ପ୍ରତିଲିପି ରଖୁଥିଲେ । ଲରେନ୍‌ସଙ୍କ ଗୋଟିଏ ନିମନ୍ତ୍ରଣ ପାଇ ମୋତିଲାଲ ତାଙ୍କର ନିତିଦିନିଆ ପରିଧାନ ଧୋତି ଓ ଜାମା ସହିତ ଗୋଟିଏ ପୁରୁଣାକାଳିଆ ଚଦର ପକାଇ ସରକାରୀ ବାସଭବନରେ ତାଙ୍କ ସହ ସାକ୍ଷାତ କରିଥିଲେ । ସେଠାରେ ତାହାଙ୍କୁ ପ୍ରଶ୍ନ କରାଯାଇଥିଲା "ଆପଣ ୱେଲ୍‌ସର ଯୁବରାଜଙ୍କୁ ସାକ୍ଷାତ କରିବାକୁ ଚାହାନ୍ତି କି ?" ପ୍ରଥମେ ମୋତିଲାଲ ଏହାକୁ ଏକ ପରିହାସ ବୋଲି ମନେ କରିଥିଲେ । କିନ୍ତୁ ସେହି ପ୍ରସ୍ତାବରେ ନିଷ୍ଠାପରତା ଥିବା କଥା ଅନୁଭବ କରି ସେ ସେଥି ସହ ସମ୍ମତ ହୋଇଥିଲେ । କାରଣ ତାହା ସହିତ ଅସମ୍ମତ ହେବା ଅତି ମାତ୍ରାରେ ଅଶୋଭନୀୟ ହୋଇଥାନ୍ତା । ତାହାଙ୍କୁ ଯୁବରାଜଙ୍କ ନିକଟକୁ ନିଆ ଯାଇଥିଲା । ପରେ ସେହି ସାକ୍ଷାତକାର ବିଷୟରେ ମୋତିଲାଲ ଲେଖିଥିଲେ :

ହାତ ମିଳାଇବା ପାଇଁ ଯୁବରାଜ ଉଦାରତାପୂର୍ବକ ମୋ ଦିଗକୁ ହାତ ଲମ୍ବାଇ ଦେଇଥିଲେ । କିନ୍ତୁ ହାତ ମିଳାଇବା ପରିବର୍ତ୍ତେ ମୁଁ ତାହାଙ୍କୁ ବିନୀତ ଭାବରେ କହିଥିଲି ଯେ ଭବିଷ୍ୟତରେ ସେମାନଙ୍କର ସମ୍ରାଟ ହେବାକୁ ଯିବା ଜଣେ ବ୍ୟକ୍ତିଙ୍କ ସହିତ ସେପରି ଭାବରେ ସମ୍ମାନ ପ୍ରଦର୍ଶନ କରିବା ଭାରତୀୟ ପରମ୍ପରା ନୁହେଁ । ମୁଁ ଅର୍ଦ୍ଧନମିତ ଭାବରେ ଏବଂ ନମସ୍କାରପୂର୍ବକ ଏହି କଥାଟକ ନମ୍ର ସ୍ୱରରେ କହିଥିଲି -

"ମୋଭଳି ଏକ ସାଧାରଣ ଲୋକ ସହିତ ଆପଣଙ୍କ ଭଳି ସମ୍ମାନାସ୍ପଦ ମହାମାନ୍ୟଙ୍କ ଏହି ସଦୟ ସାକ୍ଷାତକାର ଯୋଗୁଁ ମୁଁ ଅତି ସମ୍ମାନିତ ହୋଇଛି । ମୁଁ ଏହାକୁ ଶ୍ରଦ୍ଧାର ସହିତ ସବୁବେଳପାଇଁ ସ୍ମରଣ ରଖିବି । ଦରିଦ୍ର ଭାରତ ଯେ କୁପଥଗାମୀ ତାହା କହିବାକୁ ମୋତେ ଅନୁମତି ଦିଅନ୍ତୁ । ଆପଣଙ୍କ ରାଜକୀୟ ହସ୍ତରୁ ଏହାର ସୁରକ୍ଷା ଆଶା କରାଯାଇ ପାରେ । କାରଣ ଆପଣ ଆମର ଭବିଷ୍ୟତ ସମ୍ରାଟ । ଭାରତୀୟମାନଙ୍କୁ ବିସ୍ମରଣ କରିବେ ନାହିଁ ବୋଲି ପ୍ରାର୍ଥନା କରେ । ତେବେ ସ୍ମରଣ ରଖିବେ ଯେ ଇଂଲଣ୍ଡର ଚାଳିଶି ନିୟୁତ ଲୋକଙ୍କ ଭଳି ସେମାନେ ମଧ୍ୟ ଆପଣଙ୍କ ଆପଣାର । ଯଦି ସେମାନେ କିଛି ଅତି ଆବଶ୍ୟକ କରନ୍ତି ତାହା ହେଉଛି ଶାସକମାନଙ୍କଠାରୁ ଯଥୋଚିତ ନ୍ୟାୟ ।"

ମାନନୀୟ ରାଜକୁମାର ଅତ୍ୟଧିକ ଭାବେ ପ୍ରଭାବିତ ହେବାଭଳି ମନେ ହୋଇଥିଲା । ବେଶ ଉତ୍ସୁକତା ମନୋଭାବ ନେଇ ଯୁବରାଜ ମତେ ଉଠିବାକୁ କହିଲେ । ଏହା କରିବାବେଳେ ସେ ଏଭଳି ଉଦାରପୂର୍ଣ୍ଣ ତଥା ଆଗ୍ରହୀ ହୋଇ ମତେ ଏହିକଥା କେତେ ପଦ ଏଭଳି ସ୍ୱରରେ କହିଥିଲେ ଯାହା ମୋ' ହୃଦୟକୁ ଛୁଇଁ ପାରିଥିଲା:

"ମୁଁ ଆପଣଙ୍କ ସଂପର୍କରେ ଆସି ବେଶ ଆନନ୍ଦିତ ହୋଇ ପାରିଛି । ଆପଣ ମୋଠାରୁ ଏକ ପ୍ରତିଶ୍ରୁତି ଆଶା କରୁଛନ୍ତି ଯେ ମୁଁ ଭାରତୀୟମାନଙ୍କୁ ଭୁଲିବି ନାହିଁ । ଆଚ୍ଛା; ମୁଁ ଭାରତୀୟମାନଙ୍କୁ ଭୁଲିବି ନାହିଁ ଏବଂ ଭୁଲି ପାରିବି ନାହିଁ ବୋଲି ପ୍ରତିଶ୍ରୁତି ଦେଉଛି । ଆପଣଙ୍କ ଜନସାଧାରଣ ମୋତେ ଯେଉଁ ଜାକ-ଜମକ ପୂର୍ଣ୍ଣ ସ୍ୱାଗତ ଦେଇଛନ୍ତି ସେଥିପାଇଁ ଅତ୍ୟଧିକ ରୂପେ କୃତଜ୍ଞ । ସେହି ବିଷୟ ମୁଁ ପିତାଙ୍କୁ ମଧ୍ୟ କହିବି । ମୁଁ ସେମାନଙ୍କୁ ସବୁବେଳ ପାଇଁ ମନେରଖିବି । ଭାରତ ସଂପର୍କରେ ମୁଁ ମୋ' ସହିତ ବେଶ ସୁଖପ୍ରଦ ଧାରଣାସବୁ ବହନ କରିନେଇ ଯାଉଛି ।"

ଯୁବରାଜ ଫେରିବା ପରେ ତାଙ୍କ ପିତା ତଥା ବ୍ରିଟିଶ ଜନସାଧାରଣଙ୍କୁ ଜଣାଇଥିଲେ ଯେ "ଭାରତକୁ ଶାସନ କରିବା କାର୍ଯ୍ୟ ସହଜସାଧ୍ୟ କରାଯାଇ ପାରିବ ଯଦି ଶାସକମାନେ ବୃହତ୍ତର ଭାବେ ବିନମ୍ରତାକୁ ଶାସନ ସହିତ ସଂପୂର୍ଣ୍ଣ ମିଳାଇ ଦେଇ ପାରିବେ ।" 1911 ମସିହାରେ ସେ ବ୍ରିଟିଶ ରାଜ ସିଂହାସନ ଆରୋହଣ କରିବାପରେ ମନ୍ତ୍ରୀମାନଙ୍କୁ ପରାମର୍ଶ ଦେଇଥିଲେ ଯେ ରାଜକୀୟ ଶ୍ରଦ୍ଧା ଓ ସଦିଚ୍ଛାର ଗଭୀର ନିଦର୍ଶନ ସ୍ୱରୂପ ବଙ୍ଗଳାର ପୁନଃ ଏକୀକରଣ କରିଯିବା ଉଚିତ । ଏକଥା ବର୍ତ୍ତମାନ ଜଣାଗଲା । ପାଞ୍ଚବର୍ଷ ପାଇଁ ଲାଗିରହିଥିବା "ଠିକ୍ ଛୋଟ ଧରଣର ଏକ ବିଦ୍ରୋହ ଭଳି ସବୁକିଛି" ପରିବର୍ତ୍ତେ ସେହି

ପରାମର୍ଶ ପ୍ରଭାବଶାଳୀ ଭାବେ ତଥା ଅନିଚ୍ଛାକୃତ ଭାବେହିଁ ଗୃହୀତ ହୋଇଥିଲା । ତାହା ମହାରାଜାଙ୍କ ଦିଲ୍ଲୀ ଦରବାରରେ 1911 ମସିହା ଡିସେମ୍ବର 11 ତାରଖ ଦିନ ଘୋଷଣା କରାଯାଇ ଥିଲା ।

•

ସେହି ଅଣ ନିର୍ଦ୍ଧାରିତ ସାକ୍ଷାତକାର ବିଷୟ ଗୋପନ ରଖାଯାଇଥିଲା । କିନ୍ତୁ ତାହା ଏଭଳି ଗୋପନୀୟ ଭାବେ ରହିନଥିଲା ଯାହା ଇଂଲଣ୍ଡର ରାଜନୈତିକ ମଣ୍ଡଳୀଗୁଡ଼ିକରେ ଜଣା ପଡ଼ି ନଥିଲା । ସମ୍ଭବତଃ ଏହା ଗୋଟିଏ କାରଣ ଥିଲା ଯେଉଁଥିପାଇଁ 1910ରେ ସରକାର ମୋତିଲାଲଙ୍କୁ 3ୟ ରେଗୁଲେସନ୍ ଅନୁଯାୟୀ ଗିରଫ କରିବା ପାଇଁ ପରିହାର କରି ନେଇଥିଲେ । ସେହି ଲମ୍ବା ତାଲିକାରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ ଚିତ୍ତରଞ୍ଜନ ଦାସ ଏବଂ ଦି ମଡର୍ଣ୍ଣ ରିଭ୍ୟୁର ରାମାନନ୍ଦ ଚାଟାର୍ଜୀ ।

ସ୍ୱଦେଶୀ ଆନ୍ଦୋଳନମୂଳକ କାର୍ଯ୍ୟକଳାପର ଏକ କେନ୍ଦ୍ରରୂପେ ବିବେଚିତ ହେବା ବେଳକୁ କଲିକତାର ଯୁବକଗଣ ସେମାନଙ୍କ ମଧ୍ୟରେ ବିଭିନ୍ନ ଦଳ କିମ୍ବା ସମିତି ଯଥା ଅନୁଶୀଳନ ସମିତି, ଆତ୍ମୋନ୍ନତି ସମିତି ପ୍ରଭୃତି ଗଠନ କରିଥିଲେ । ପ୍ରଥମୋକ୍ତଟି ମଫସଲରେ ମଧ୍ୟ ତା'ର ଶାଖା ସମୁହ ଗଠନ କରିଥିଲା । ବିଶେଷକରି ପୂର୍ବ ବଙ୍ଗର ରାଜଧାନୀ ଢାକାରେ ସ୍ୱଦେଶ ବାନ୍ଧବ ସମିତି ତଥା ବରିଶାଲ ଓ ମଇମନ୍‌ସିଂହ ଠାରେ ସୁହୃଦ୍ ସମିତି ଭଳି ଶକ୍ତିଶାଳୀ ଅନୁଷ୍ଠାନମାନ ଗଠିତ ହୋଇଥିଲା । ପ୍ରଦର୍ଶନଶୀଳ ଭାବେ ଏଗୁଡ଼ିକ ସାଂସ୍କୃତିକ ତଥା ସାମାଜିକ ସେବାମୂଳକ ଅନୁଷ୍ଠାନ ଥିଲେ ମଧ୍ୟ ପ୍ରକୃତରେ ସେଗୁଡ଼ିକ ସ୍ୱଦେଶୀ ଆନ୍ଦୋଳନ ପାଇଁ ତଥା ପ୍ରାୟ 1902 ମସିହାରୁ ଆତ୍ମପ୍ରକାଶ କରିଥିବା ବିଦ୍ରୋହାତ୍ମକ ଗୋଷ୍ଠୀ ଗଠନ କରିବା ପାଇଁ ସ୍ୱେଚ୍ଛାସେବକ ନିଯୁକ୍ତି କେନ୍ଦ୍ରରେ ପରିଣତ ହୋଇଯାଇଥିଲା । କିନ୍ତୁ ଶେଷୋକ୍ତଟି ଅତି ମାତ୍ରାରେ ନିର୍ବାଚନମୂଳକ ଏବଂ ଗୋପନୀୟ ଅନୁଷ୍ଠାନ ଥିଲା । ମୋତିଲାଲ ତଥା ଅନ୍ୟ ସାଧାରଣ ନେତୃବୃନ୍ଦ ସେହି ଗୋପନ ସଂଘଗୁଡ଼ିକ ବିଷୟରେ ଅସ୍ପଷ୍ଟ ରୂପେ ଜାଣିଥିଲେ । ତେବେ ସେମାନଙ୍କ କାର୍ଯ୍ୟକଳାପକୁ ସର୍ବସାଧାରଣରେ ଅସ୍ୱୀକାର କରାଯାଉଥିଲା ଏବଂ ସେମାନେ ଅର୍ଥନୈତିକ ବାସନ୍ଦ ତଥା ଅହିଂସାତ୍ମକ ପ୍ରତିରୋଧ ପାଇଁ ଜନସହଯୋଗ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେଉଥିଲେ । ସମ୍ଭବତଃ ଅନ୍ୟମାନଙ୍କ ତୁଳନାରେ ମୋତିଲାଲ ସେହି ବିଦ୍ରୋହୀ ସଂଗଠନଗୁଡ଼ିକ ବିଷୟରେ କିଛି ଅଧିକ ଜାଣିଥିଲେ । କାରଣ ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟା, ଶ୍ରୀ ନିବେଦିତାଙ୍କ ସହିତ ତାଙ୍କର ସମ୍ପର୍କ ଥିଲା, ଯିଏ ଅରବିନ୍ଦ ଏବଂ ତାଙ୍କର ଗୋଷ୍ଠୀଙ୍କର ଅତି ନିକଟତମ ଥିଲେ ।

ଚରମପନ୍ଥୀ ମତବାଦମୂଳକ ପତ୍ରପତ୍ରିକାଗୁଡ଼ିକ ଏହି ସମୟରେ ମୁଣ୍ଡଟେକି ଉଠିଥିଲେ, ଯେଉଁଗୁଡ଼ିକ ସ୍ୱାଧୀନତା ପାଇଁ ବିଦ୍ରୋହାତ୍ମକ ପନ୍ଥାଗୁଡ଼ିକର ଆବଶ୍ୟକତା ନେଇ ଖୋଲାଖୋଲି ଭାବେ ପ୍ରଚାର ଚଳାଇଥିଲେ । ବ୍ରହ୍ମବାନ୍ଧବ ଉପାଧ୍ୟାୟଙ୍କ ଦ୍ୱାରା ସମ୍ପାଦିତ ଦୈନିକ "ସନ୍ଧ୍ୟା", ଭୂପେନ୍ଦ୍ରନାଥ ଦତ୍ତଙ୍କ ଦ୍ୱାରା ସମ୍ପାଦିତ ସାପ୍ତାହିକ "ଯୁଗାନ୍ତର", ମନୋରଞ୍ଜନ ଗୁହା ଠାକୁର୍ତ୍ତାଙ୍କ ସମ୍ପାଦନାରେ ଦୈନିକ "ନବଶକ୍ତି" ଏବଂ ଶେଷରେ, ପରିସମାପ୍ତିରେ ନୁହେଁ, ଅରବିନ୍ଦଙ୍କ ଦ୍ୱାରା ସମ୍ପାଦିତ ଇଂରାଜୀ ଦୈନିକ "ବନ୍ଦେ ମାତରଂ" ବିଶେଷ ଉଲ୍ଲେଖଯୋଗ୍ୟ ଭାବେ ଜନପ୍ରିୟତା ହାସଲ କରିଥିଲା । ସେମାନଙ୍କ ବ୍ୟକ୍ତିଗତ ନିରାପତ୍ତା ନେଇ ସମ୍ପାଦକମାନେ ଆଦୌ ଚିନ୍ତିତ ନଥିଲେ । ବିଦ୍ରୋହାତ୍ମକ

ଅଭିଯୋଗରେ ସେମାନଙ୍କ ମଧ୍ୟରୁ ଜଣଙ୍କ ପରେ ଆଉଜଣେ ବିଚାରର ସମ୍ମୁଖୀନ ହେଉଥିଲେ ବିଭିନ୍ନ ଅଭିଯୋଗରେ ଅଭିଯୁକ୍ତ ହୋଇ । ବିଚାରାଧୀନ ବନ୍ଦୀ ହିସାବରେ ଥିବାବେଳେ କୌଣସି ପ୍ରକାର ବୁଝାମଣା ପାଇଁ ପ୍ରସ୍ତୁତ ନଥିବା ବ୍ରହ୍ମବାନ୍ଧବ ମୃତ୍ୟୁବରଣ କରିଥିଲେ । ସେ ସେହିଭଳି ଭବିଷ୍ୟତ ପୂର୍ବରୁ ଗଣନା କରି ସାରିଥିଲେ ।

ଇତିମଧ୍ୟରେ ଅତ୍ୟାଚାରମୂଳକ ଜମିଜମା ଆଇନ ଯୋଗୁଁ ପଞ୍ଜାବର ଜନସାଧାରଣଙ୍କ ଅଶାନ୍ତି ଏକ ବିସ୍ଫୋରିତ ଅବସ୍ଥା ସୃଷ୍ଟି କରିଥିଲା । ସେହି ଆନ୍ଦୋଳନ ଲାଜପତରାୟ୍ ଏବଂ ଅଜିତ୍ ସିଂହଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସେମାନଙ୍କ ସାପ୍ତାହିକ ଖବରକାଗଜ "ପଞ୍ଜାବୀ"ର ମୁଦ୍ରକ ତଥା ପ୍ରକାଶକଙ୍କୁ ଜେଲ୍ ଦଣ୍ଡ ଦିଆଯାଇଥିଲା । ସେହି ଉଭୟ ନେତାଙ୍କୁ ମଧ୍ୟ 1818 ମସିହାର 3ୟ ରେଗୁଲେସନ୍ ଅନୁଯାୟୀ ଗିରଫ କରାଯାଇ ବର୍ମାକୁ ଦେଶାନ୍ତର କରାଯାଇଥିଲା ଏବଂ ଜେଲଦଣ୍ଡ ଦିଆଯାଇ ଥିଲା ।

ଜନସାଧାରଣଙ୍କ ଉତ୍‌ଥାନକୁ ସରକାର ଅତି ମାତ୍ରାରେ ଦମନମୂଳକ କାର୍ଯ୍ୟକଳାପ ଦ୍ୱାରା ଚପାଇ ଦେବା ପାଇଁ ପ୍ରସ୍ତୁତ ହୋଇ ସାରିଥିଲେ । ଉଭୟ ରାଜ୍ୟର ଲେଫଟ୍‌ନାଣ୍ଟ ଗଭର୍ଣ୍ଣରମାନେ ସରକାରୀ ବିରୋଧୀମୂଳକ ଶୋଭାଯାତ୍ରା, ସଭାସମିତି ଏବଂ ବିଶେଷତଃ ବିଦେଶୀ ବସ୍ତ୍ର ବିକ୍ରି ହେଉଥିବା ଦୋକାନ ସାମନାରେ ସ୍ୱେଚ୍ଛାସେବୀମାନଙ୍କର ପିକେଟିଂଗୁଡ଼ିକୁ ବିଫଳ କରାଇ ଦେବାଲାଗି ଚେଷ୍ଟିତ ଥିଲେ । ପୂର୍ବବଙ୍ଗର ଲେଫ୍ଟନାଣ୍ଟ ଗଭର୍ଣ୍ଣର ବେମ୍‌ଫିଲ୍ଡ ଫୁଲ୍ଲର ନିର୍ଦ୍ଦିଷ୍ଟ ଭାବେ ପ୍ରତିହିଂସାପରାୟଣ ଥିଲେ । ସେ ବରିଶାଲ ଜିଲ୍ଲାରେ ଅତିମାତ୍ରାରେ କଠୋର ହୋଇଥିଲେ ଯେଉଁଠି ଅଶ୍ୱିନି କୁମାର ଦତ୍ତ ସଫଳରୂପେ ବିଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନ ଚଳାଇ ଥିଲେ । ପୁଣି ସେଠାରେ ସ୍ଥାନୀୟ କଳହ-ଗୁଡ଼ିକର ସମାଧାନ କରିବାପାଇଁ ଜନସାଧାରଣ, ଗ୍ରାମମାନଙ୍କରେ ପଞ୍ଚାୟତ କୋର୍ଟସବୁ ସ୍ଥାପନ କରିବା ଦିଗରେ ସମର୍ଥ ହୋଇଥିଲେ । 1906 ମସିହା ଅପ୍ରେଲ 14 ଓ 15 ତାରିଖରେ ବଙ୍ଗ ପ୍ରାଦେଶିକ ରାଜନୈତିକ ସମ୍ମେଳନ ଅନୁଷ୍ଠିତ ହେଉଥିବା ବେଳେ ସେହି ଆନ୍ଦୋଳନ ବରିଶାଲ ସହରରେ ପ୍ରଥମେ ରକ୍ତସ୍ନାତ ହୋଇଥିଲା । ସୁରେନ୍ଦ୍ରନାଥଙ୍କ ନେତୃତ୍ୱରେ ତଥା ମୋତିଲାଲଙ୍କ ଯୋଗଦାନରେ ବଙ୍ଗଳାର ସମସ୍ତ ନେତୃସ୍ଥାନୀୟ ଲୋକ ସଦଳବଳେ ବରିଶାଲ ଯାଇଥିଲେ, ବଙ୍ଗ ବିଭାଜନ ବିରୁଦ୍ଧରେ ସଂଗ୍ରାମ ଚଳାଇବା ପାଇଁ କାର୍ଯ୍ୟପନ୍ଥା ଆଲୋଚନା କରିବାଲାଗି । ତେବେ ସମ୍ମିଳନୀ ପୂର୍ବରୁ ଜିଲ୍ଲା ଅଧିକାରୀମାନେ ସର୍ବସାଧାରଣରେ 'ବନ୍ଦେ ମାତରଂ' ଧ୍ୱନି ଦିଆଯିବା ନିଷେଧ କରିଦେଇ ଥିଲେ । ସେହି ଅପମାନଜନକ ଆଦେଶକୁ ମାନି ନିଆଯିବ କି ନୁହେଁ, ସେ ନେଇ ଆଲୋଚନା ଚାଲିଥିବା ବେଳେ ମୋତିଲାଲ ମତ ଦେଇଥିଲେ "ମୁଁ ମୋର ମସ୍ତକ ବିନିମୟରେ ମଧ୍ୟ ସାଧାରଣ ସାହି ରାସ୍ତାରେ 'ବନ୍ଦେ ମାତରଂ' ଧ୍ୱନି ଦେଇ ଚାଲିବି, ଯାହା ସମ୍ଭବତଃ ଏତେ ବେଶୀ ଦାମିକା ଦ୍ରବ୍ୟ ନୁହଁ । ତେବେ ତତ୍‌ସହିତ ମୁଁ ମଧ୍ୟ ମୋର ବନ୍ଧୁମାନଙ୍କୁ କହିବି, କୌଣସି କାରଣରୁ ଗିରଫ କରିବା ପାଇଁ ଚାହୁଁଥିବା ପୁଲିସ୍‌ର ଉଦ୍ୟମକୁ ବରଦାସ୍ତ କରନ୍ତୁ ନାହିଁ ।" ଶାନ୍ତିପୂର୍ଣ୍ଣ ଭାବରେ ସେହି ନିଷେଧାଜ୍ଞାକୁ ଭଙ୍ଗ କରିବା ପାଇଁ ନିର୍ଦ୍ଧାରଣ କରାଯାଇଥିଲା ।

ଯେତେବେଳେ ପ୍ରତିନିଧିମାନେ ରହୁଥିବା ସ୍ଥାନରୁ ଦଳଗତଭାବେ ସଭାସ୍ଥଳକୁ ବାହାରିଥିଲେ ସେମାନେ ହଠାତ୍ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ଦ୍ୱାରା ଆଇନାନୁମୋଦିତ କାର୍ଯ୍ୟକୁ ବିରୋଧ କରିବା ଆକ୍ଷେପରେ ଅଭିଯୁକ୍ତ ହୋଇଥିଲେ ଏବଂ ତାହାଙ୍କର ସେନାଦଳ ସେମାନଙ୍କ ଉପରେ ଲାଠିଚାଳନା କରିଥିଲେ । ସେଠାରେ ଆକସ୍ମିକଭାବେ ପ୍ରତିନିଧିମାନଙ୍କ ପ୍ରତି ବାଛବିଚାରହୀନ ଭାବେ ଆକ୍ରମଣ କରାଯାଇଥିଲା । ସେମାନେ 'ବନ୍ଦେ ମାତରଂ' ଧ୍ୱନି ଦେବା ଆରମ୍ଭ କରିଦେଇଥିଲେ । ଏତିକିବେଳେ ସୁରେନ୍ଦ୍ରନାଥ, ମୋତିଲାଲ, ଅଶ୍ୱିନୀକୁମାର ଏବଂ ଅନ୍ୟ ନେତାମାନେ ସାମନାକୁ ଚାଲି ଆସିଥିଲେ ଏବଂ ସେମାନଙ୍କୁ ଗିରଫ କରିବା ପାଇଁ କହିଥିଲେ । କିନ୍ତୁ କେବଳ ସୁରେନ୍ଦ୍ରନାଥଙ୍କୁ ଗିରଫ କରାଯାଇ ଜିଲ୍ଲା କଲେକ୍ଟରଙ୍କ କୋଠିକୁ ନିଆ ଯାଇଥିଲା । ସେ ତାହାଙ୍କୁ ଚାରିଶହ ଟଙ୍କା ଜୋରିମାନା କରିଥିଲେ । ସେହି ଜୋରିମାନା ପ୍ରଦାନ କରାଯାଇଥିଲା ଏବଂ ସୁରେନ୍ଦ୍ରନାଥଙ୍କୁ ପ୍ରବଳ ଉଲ୍ଲାସ ଭିତରେ 'ବନ୍ଦେ ମାତରଂ' ଧ୍ୱନି ଦେଇ ସମ୍ମିଳନୀ ମଣ୍ଡପକୁ ନିଆ ଯାଇଥିଲା । କଲିକତାର ଜଣେ ବିଶିଷ୍ଟ ଓକିଲ ଅବଦୁଲ୍ ରସୋଲ୍ ତାଙ୍କର ସଭାପତୀୟ ଅଭିଭାଷଣ ପ୍ରଦାନ କରିବା ପରେ ମୋତିଲାଲ ମୁଖ୍ୟ ପ୍ରସ୍ତାବ ଆଗତ କରିଥିଲେ ଯେଉଁଥିରେ ଉଲ୍ଲେଖ ଥିଲା;

"ସମଗ୍ର ପୂର୍ବାଞ୍ଚଳ ବଂଗଳା ଏବଂ ଆସାମରେ ଜାତୀୟବାଦୀ କର୍ମୀମାନଙ୍କ ବିରୁଦ୍ଧରେ ଦମନମୂଳକ ପଦକ୍ଷେପମାନ ଗ୍ରହଣ କରାଯାଉଥିବା ଦୃଷ୍ଟିରୁ ଏହି ସମ୍ମିଳନୀ ମତ ପ୍ରକାଶ କରେ ଯେ ଏହି ଅଞ୍ଚଳରେ ଏକ ଯଥାର୍ଥ ଏବଂ ଆଇନମୂଳକ ଶାସନର ଆଉ କୌଣସି ସ୍ଥିତି ନାହିଁ । ସେହି କାରଣରୁ ବର୍ତ୍ତମାନର ଦାୟିତ୍ୱହୀନ ସରକାର କୌଣସି ନିଷ୍ପତ୍ତି ଗ୍ରହଣ କରି ତାହାକୁ କାର୍ଯ୍ୟକାରୀ କରାଇବା ଉପରେ ନିର୍ଭର କରିବାର କୌଣସି ପ୍ରଶ୍ନ ନାହିଁ ଏବଂ ତେଣୁ ତାହା ଏହି ସମ୍ମିଳନୀରେ ଆଲୋଚନା କରାଯିବ ନାହିଁ । କେବଳ ଯେଉଁଗୁଡ଼ିକ ଆପଣାର ଚେଷ୍ଟା ବଳରେ ଜନସାଧାରଣ ନିଜେ ନିଜେ ସମାଧାନ କରିପାରିବେ ସେହି ପ୍ରଶ୍ନଗୁଡ଼ିକ ହିଁ ଏଠାରେ ଆଲୋଚିତ ହେବ ।"

ଏହି ପ୍ରସ୍ତାବ ଜାତୀୟ ଜାଗରଣ ଦିଗରେ ଏକ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା । ସୁରେନ୍ଦ୍ରନାଥ ଏବଂ ଭୂପେନ୍ଦ୍ରନାଥ ବସୁ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ ଯେ ଲଣ୍ଡନରେ ଥିବା ରାଜ୍ୟ ବିଭାଗର ସେକ୍ରେଟାରୀଙ୍କୁ ତାର ଯୋଗେ ଗୋଟିଏ ପ୍ରତିବାଦ ପ୍ରେରଣ କରାଯାଉ । କିନ୍ତୁ ତାହା ଅଧିକାଂଶ ପ୍ରତିନିଧିଙ୍କ ଦ୍ୱାରା ସମର୍ଥିତ ହୋଇ ପାରିନଥିଲା । ତତ୍ ପରବର୍ଷ ସୁରାଟ କଂଗ୍ରେସ ଅଧିବେଶନ, କଂଗ୍ରେସ ଅନୁଷ୍ଠାନର ବିଭାଜନ ଦିଗରେ ଏକ ଉପକ୍ରମଣିକାତ୍ମକ ସୂଚନା ଥିଲା । କାରଣ, ଜାତୀୟବାଦୀମାନେ ସଂଗ୍ରାମ ଭୂମିରେ ନିଜର ଶକ୍ତି ଉପରେ ନିର୍ଭର କରି ଦଣ୍ଡାୟମାନ ହେବା ପାଇଁ ଇଚ୍ଛା କରୁଥିଲେ - କେବଳ ବାକ୍ୟାଳାପରେ ନୁହେଁ । ଉଦାରପନ୍ଥୀ ଓ ଚରମପନ୍ଥୀମାନଙ୍କ ମଧ୍ୟରେ ମୌଳିକ ପାର୍ଥକ୍ୟ ଥିଲା ଯେ ପ୍ରଥମ ଦଳ ବଙ୍ଗ ବିଭାଜନକୁ ରଦ୍ଦ କରିବା ପାଇଁ ସ୍ୱଦେଶୀ ଆନ୍ଦୋଳନକୁ ଏକ ଉଦ୍ଦେଶ୍ୟ ରୂପେ ଗ୍ରହଣ କରୁଥିବା ବେଳେ ଶେଷୋକ୍ତ ଗୋଷ୍ଠୀ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଏହାକୁ ଏକ ସାଧାରଣ ଅସ୍ତ୍ରରୂପେ ପ୍ରବର୍ତ୍ତନ କରିବାକୁ ଇଚ୍ଛା କରୁଥିଲେ ।

15 ବର୍ଷ ପରେ, 1921 ମସିହାରେ ଯେତେବେଳେ ମହାତ୍ମା ଗାନ୍ଧୀ ଅହିଂସା, ଅସହଯୋଗ ଏବଂ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରସ୍ତାବ କରିଥିଲେ, ସେତେବେଳେ ଲୋହିତ ଭାରତୀୟ ମତାମତର ପ୍ରତୀକ 'ଦି ଷ୍ଟେଟସ୍‌ମ୍ୟାନ୍' ମତ ଦେଇଥିଲା ଯେ– •

"ପ୍ରକୃତରେ ସର୍ବପ୍ରଥମେ 1906 ମସିହାରେ ବଙ୍ଗଳାର ବରିଶାଲ୍‌ଠାରେ ଆଇନ ଅମାନ୍ୟ ଆରମ୍ଭ ହୋଇଥିଲା ଏବଂ ସେହି ଚିନ୍ତାଧାରାର ପ୍ରବର୍ତ୍ତକ ଥିଲେ ବାବୁ ମୋତିଲାଲ ଘୋଷ । କେବଳ ସେତିକି ନୁହେଁ, ଅସହଯୋଗର ବାର୍ତ୍ତା ଠିକ୍ ସେତିକିବେଳେ ହିଁ ବାବୁ ମୋତିଲାଲ ଘୋଷଙ୍କ ଦ୍ୱାରା ସେହି ବରିଶାଲରେ ହିଁ ପ୍ରଚାରିତ ହୋଇଥିଲା । - - - ଚରଖାର ପୁନର୍ଚେତନା ଲାଭ ଚିନ୍ତାଧାରା ମଧ୍ୟ ମୋତିବାବୁଙ୍କ ଦ୍ୱାରା 1906 ମସିହାରେ ଉଦ୍‌ଭବ ହୋଇଥିଲା ଏବଂ ସେ ଉଭୟ ଦିଗରୁ - ତାଙ୍କ ଖବରକାଗଜ ମାଧ୍ୟମରେ ତଥା ବ୍ୟକ୍ତିଗତ ଉଦ୍ୟମରେ - ଏହାକୁ କାର୍ଯ୍ୟକାରୀ କରାଇବା ଦିଗରେ କଠିନ ପରିଶ୍ରମ କରିଥିଲେ । ତାହାଙ୍କର ଉଦ୍ୟମ ନିଷ୍ଫଳ ହୋଇ ନଥିଲା, ବଙ୍ଗଳାର ଅନେକ ଭଦ୍ର ପରିବାରରେ ବହୁ ପରିମାଣରେ ଚରଖା ପ୍ରବର୍ତ୍ତିତ ହୋଇଥିଲା । ଦୁର୍ଭାଗ୍ୟବଶତଃ ବିଭାଜନ ଆନ୍ଦୋଳନକୁ ପରିଚାଳନା କରୁଥିବା ବହୁ ନେତା ଏହାକୁ ଅତି କମ୍ ଗୁରୁତ୍ୱ ଦେଇଥିଲେ - - - - - "

ପୂର୍ବରୁ କୁହାଯାଇଛି ଯେ 1905 ମସିହା ସେପ୍ଟେମ୍ବର ମାସରେ କର୍ଜନ୍ ଇସ୍ତଫା ପ୍ରଦାନ କରିଥିଲେ । କାରଣ ଜଣେ ସେନାପତିର ଦାୟିତ୍ୱ ସଂଯୋଜନା କରିବା ଲାଗି ତାହାଙ୍କ ଅଭିଯୋଗକୁ ଓ୍ୱିଚେଲ (Witchall) ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତାଙ୍କ ଉତ୍ତରାଧିକାରୀ ଲର୍ଡ ମିଣ୍ଟୋ ପରିସ୍ଥିତିକୁ ଆୟତ୍ତ କରିବା ଲାଗି ଯେତେଦୂର ସମ୍ଭବ ଉଦ୍ୟମ କରିଥିଲେ । ସେଥିପାଇଁ ସେ କଡ଼ାକଡ଼ି ଭାବେ ସରକାରୀ କାର୍ଯ୍ୟାଳୟ ଗୋପନୀୟତା ଆଇନ, ସାଧାରଣ ସଭା ଆଇନ, ସମ୍ବାଦପତ୍ର ଆଇନ, ବିଦ୍ରୋହ ଦମନମୂଳକ ଆଇନ, ବିସ୍ଫୋରକ ବିରୋଧୀ ଆଇନ ତଥା ଅନ୍ୟ ଅନେକ ଦମନମୂଳକ ଆଇନ ପ୍ରୟୋଗ କରିଥିଲେ । କଲିକତାରେ ବନ୍ଦେ ମାତରଂ ବୋଲିଥିବା ଅଭିଯୋଗରେ ଜଣେ 15 ବର୍ଷର ବାଳକକୁ 16 ଥର ଚାବୁକରେ ଦଣ୍ଡିତ କରାଯାଇଥିଲା । ଆନ୍ଦୋଳନକାରୀମାନେ ସେହି ମକଦ୍ଦମାରେ ବିଚାର କରୁଥିବା ମାଜିଷ୍ଟ୍ରେଟ୍ କିଙ୍ଗସ୍‌ଫୋର୍ଡଙ୍କ ପ୍ରତି ପ୍ରତିଶୋଧପରାୟଣ ହେବା ପାଇଁ ପ୍ରତିଜ୍ଞା କରିଥିଲେ । ତେବେ ସେ ମୁଜାଫରପୁରକୁ ବଦଳି ହୋଇଥିଲେ । ଖୁଦିରାମ ବୋଷ ଓ ପ୍ରଫୁଲ୍ଲ ଚାକି ନାମକ ଦୁଇଜଣ ଯୁବକଙ୍କ ହାତରେ ବୋମା ଦିଆଯାଇ ତାହାଙ୍କୁ ହତ୍ୟା କରାଯିବା ଲାଗି ପ୍ରେରଣା କରାଯାଇଥିଲା । ଭୁଲବଶତଃ ସେହି ବୋମା ଦୁଇଜଣ ଇଉରୋପୀୟ ମହିଳାଙ୍କୁ ବିନାଶ କରିଥିଲା । ବଙ୍ଗଳାର ଲେଫଟନାଣ୍ଟ ଗଭର୍ଣ୍ଣର ଏଣ୍ଡ୍ରିଉ ଫ୍ରେଜର ବୋମା ଆକ୍ରମଣରୁ ସୌଭାଗ୍ୟବଶତଃ ଦୁଇଥର ବର୍ତ୍ତି ଯାଇଥିଲେ । ଢାକାର ଜିଲ୍ଲା ମାଜିଷ୍ଟ୍ରେଟ୍ ଆଲେନ୍ ଜୀବନ ହରାଇଥିଲେ । ପରେପରେ ପୁଲିସ୍ ହାତରେ ଧରାପଡି ଆତ୍ମହତ୍ୟା କରିଥିବା ପ୍ରଫୁଲ୍ଲଙ୍କୁ ଧରିଥିବା ଅଭିଯୋଗରେ ଜଣେ ବଙ୍ଗାଳୀ ପୁଲିସ୍ ଅଫିସରଙ୍କୁ ହତ୍ୟା କରାଯାଇଥିଲା । କଲିକତାର ଏକ ତଳି ଅଞ୍ଚଳ, ମାଣିକତଲାର ବଗିଚାରେ ଏକ ଛୋଟକାଟିଆ ପୋଡାଜଳା କାର୍ଯ୍ୟ ଯୋଗୁଁ ଚଢାଉ କରାଯାଇଥିଲା ଏବଂ ଅନେକ ବିପ୍ଳବୀଙ୍କୁ ଗିରଫ କରାଯାଇ ବିଚାର କରାହୋଇଥିଲା । ସେମାନଙ୍କ ମଧ୍ୟରେ ଥିଲେ ଅରବିନ୍ଦଙ୍କ କନିଷ୍ଠ ଭାଇ ବରୀନ୍ଦ୍ର କୁମାର ଘୋଷ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଆଜୀବନ

ବନ୍ଦୀ ଗୁପେ ଆଣ୍ଡାମାନ୍ ପଠାଇ ଦିଆଯାଇଥିଲା । ଅରବିନ୍ଦଙ୍କୁ ମଧ୍ୟ ଗିରଫ କରାଯାଇ ଏକ ବର୍ଷରୁ ଅଧିକ କାଳ ଜେଲ୍‌ରେ ରଖା ଯାଇଥିଲା । କିନ୍ତୁ ପରିଶେଷରେ ସାକ୍ଷ୍ୟ ପ୍ରମାଣ ଅଭାବରୁ ସେ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ ।

ଆନ୍ଦୋଳନକାରୀମାନେ ସେମାନଙ୍କର କେନ୍ଦ୍ର ସବୁ ଇଂଲଣ୍ଡ, ଫ୍ରାନସ୍ ଓ ଆମେରିକାରେ ମଧ୍ୟ ଆରମ୍ଭ କରିଥିଲେ । ବିପ୍ଳବାତ୍ମକ ଭାବରେ କାର୍ଯ୍ୟକରି ବ୍ରିଟିଶ ଶାସକମାନଙ୍କୁ ଗାଦିଚ୍ୟୁତ କରିବା ପାଇଁ ସେମାନେ ସେହିସବୁ ସ୍ଥାନମାନଙ୍କରେ କାର୍ଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଶ୍ୟାମଜୀ କୃଷ୍ଣ-ବର୍ମା, ମେଡମ୍ କାମା, ଏସ୍. ଆର୍. ରାଣା, ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ତାରକନାଥ ଦାସ, ଭି. ଡି. ସାଭରକର, ଲାଲ ହରଦୟାଲ୍ ଏବଂ ଅନ୍ୟମାନେ । ସେମାନେ ସମ୍ବାଦପତ୍ରଗୁଡ଼ିକ ମାଧ୍ୟମରେ ଆନ୍ଦୋଳନ ଚଳାଇବା ସଂଗେ ସଂଗେ ବିଦେଶରେ ଛାତ୍ରମାନଙ୍କୁ ମଧ୍ୟ ସଂଗଠିତ କରାଉଥିଲେ । ମଦନଲାଲ ଧିଙ୍ଗ୍ରା, ସାର୍ କରଜନ୍ ୱିଲି (Sir Curzon Wylie) ଙ୍କୁ ଲଣ୍ଡନ୍‌ରେ ଗୋଟିଏ ସମ୍ମିଳନୀରେ ଗୁଳିକରି ହତ୍ୟା କରିଥିଲେ । ସେ ଥିଲେ ଭାରତ ପାଇଁ ଥିବା ସଚିବଙ୍କ ଜଣେ ଉପଦେଷ୍ଟା । ସେଥିପାଇଁ ଧିଙ୍ଗ୍ରା ଫାସି ପାଇଥିଲେ । କୌଣସି ଏକ ରାଜନୈତିକ ମକଦ୍ଦମାରେ ଜଡ଼ିତ ହୋଇ କଲିକତାର ଆଲିପୁର କେନ୍ଦ୍ରୀୟ ଜେଲ୍‌ରେ ବିଚାରାଧୀନ ବନ୍ଦୀ ହିସାବରେ ଥିବାବେଳେ ସତ୍ୟେନ୍ ବୋଷ ଅନ୍ୟ ଜଣେ ଅଭିଯୁକ୍ତ ଆସାମୀ ନରେନ୍ଦ୍ର ସ୍ୱାମୀଙ୍କୁ ଗୁଳିକରି ହତ୍ୟାକରି ଦେଇଥିଲେ । କାରଣ ସେ ମାଣିକତଳା ବୋମା ମକଦ୍ଦମାରେ ରାଜସାକ୍ଷୀ ହୋଇଥିଲେ । ସେହି ମକଦ୍ଦମା ପରିଚାଳନା କରୁଥିବା ପୁଲିସ କର୍ମକର୍ତ୍ତା ତଥା ତାହାର ସପକ୍ଷରେ ଲଢୁଥିବା ସରକାରୀ ଓକିଲଙ୍କୁ ମଧ୍ୟ ଖୋଲା କଚେରୀରେ ହତ୍ୟା କରାଯାଇଥିଲା ।

ଏହିଭଳି ଆଇନ ଅମାନ୍ୟଭାବ ଏବଂ ସନ୍ତ୍ରାସବାଦୀମାନଙ୍କ ଦ୍ୱାରା ପ୍ରତିଶୋଧପରାୟଣତା ପଛରେ ମୁକ୍ତ ତଥା ବିଦ୍ରୋହାତ୍ମକ ମନୋଭାବାପନ୍ନ ସାମ୍ବାଦିକତାର କ୍ଷତିକାରକ ପ୍ରଭାବ ରହିଛି ବୋଲି ମିଣ୍ଟୋ ଆକ୍ଷେପ କରିଥିଲେ । ତେଣୁ 1910 ମସିହାରେ ସେ ପ୍ରେସ୍ ଆଇନ ଲାଗୁ କରାଇଥିଲେ । ସେଥିରେ ଖବରକାଗଜ ପ୍ରକାଶ କରୁଥିବା ପ୍ରେସ ମାଲିକମାନଙ୍କଠାରୁ 5000 ଟଙ୍କା ଅମାନତ ଦାବୀ କରିବାଲାଗି ସରକାରଙ୍କୁ କ୍ଷମତା ଦିଆ ଯାଇଥିଲା । ଯେଉଁ ଖବରକାଗଜଗୁଡ଼ିକରେ କୌଣସି ଶବ୍ଦ ସଂକେତ ପ୍ରଭୃତି ଯାହା ପ୍ରକୃତରେ କୌଣସି ସିଦ୍ଧାନ୍ତ, ପରାମର୍ଶ, ପରୋକ୍ଷ ଉଲ୍ଲେଖ, ଉପମାଳଙ୍କାର, ଜଡ଼ିତକରଣ କିମ୍ବା ସେଭଳି ଅନ୍ୟ କୌଣସି ତଥ୍ୟ ପ୍ରକାଶିତ ହେଉଥିଲା ଯାହା ଫଳରେ ଆଇନ ଅନୁଯାୟୀ ଗଠିତ କୌଣସି ସରକାର ପ୍ରତି କିମ୍ବା ବ୍ରିଟିଶ ଶାସନାଧୀନ ଭାରତର କୌଣସି ଜାତି କିମ୍ବା ଗୋଷ୍ଠୀପ୍ରତି ଘୃଣାଭାବ ସୃଷ୍ଟି ହେଉଥିଲା କିମ୍ବା ଜନସାଧାରଣ ସେମାନଙ୍କ ପ୍ରତି ଅବମାନନା କରିବାର ସମ୍ଭାବନା ଥିଲା ଅଥବା ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ସେହି ପ୍ରବଣତାର ପ୍ରକାଶ ପାଉଥିଲା – ସେହିଭଳି ଖବରକାଗଜ ପ୍ରକାଶ ପାଉଥିବା ପ୍ରେସ୍‌ର ମାଲିକମାନେ ସେହି ଆଇନର ଅନ୍ତର୍ଭୁକ୍ତ ଥିଲେ ।

'ପତ୍ରିକା' ସରକାରଙ୍କ ନିକଟରୁ ଗୋଟିଏ ପରେ ଆଉ ଗୋଟିଏ କରି ସତର୍କତାମୂଳକ ଚେତାବନୀ ପାଇଥିଲା । ୧୨୦୪ ମସିହା ପ୍ରାରମ୍ଭରେ ତିଳକଙ୍କୁ ଛଅ ବର୍ଷ ପାଇଁ କାରାଦଣ୍ଡରେ ଦଣ୍ଡିତ

କରାଯାଇଥିଲା । କାରଣ ସେ 'କେଶରୀ'ରେ ମୁଜାଫରପୁରର ସମ୍ବାଦ ତଥା ଯେଉଁମାନେ ମାଣ୍ଡାଲେକୁ ଦେଶାନ୍ତର ହୋଇଥିଲେ ସେମାନଙ୍କ ମହନୀୟ ଆଦର୍ଶର ସ୍ତୁତିଗାନ କରିଥିଲେ । ମାସକତଳେ ଗୃହୀତ ହୋଇଥିବା ସମ୍ବାଦପତ୍ର ଆଇନ (ଅପରାଧୀକୁ ଉତ୍ସାହିତ କରିବା) ବଳରେ ସରକାର ବଳଶାଳୀ ହୋଇ ଉଠିଥିଲେ । ଏହି ଆଇନକୁ ଉଦ୍ଧାର କରି ମୋତିଲାଲ ଲେଖିଥିଲେ:

"- - - ଆମ୍ଭମାନଙ୍କୁ ତାହାପରେ ଆଉ ଗୋଟିଏ ସମସ୍ୟା ସହିତ ମୁକାବିଲା କରିବାକୁ ପଡିଥିଲା । ତାହାଥିଲା, ପ୍ରକୃତରେ ଏ ଦେଶରେ ଇଂରେଜ ଶାସନ ଉପାଦେୟ ଭାବେ ସେମାନଙ୍କ ପୂଜା ମଣ୍ଡପ ଉପରେ ଭାରତୀୟ ଖବରକାଗଜଗୁଡ଼ିକ ଦ୍ୱାରା ଧୂପ ଦ୍ୱାରା ସୁବାସିତ ହୋଇ ପାରିବେ କି ? ସମ୍ଭବତଃ ସେହି ପଦକ୍ଷେପ ପାଇଁ କୌଣସି ଟିପପଣୀ ଦେବା ଲାଗି ଏହା ହେଉଛି ଏକମାତ୍ର ପନ୍ଥା । କାରଣ ତାହା ଗୃହୀତ ହୋଇ ସାରିଲାଣି ଏବଂ ଏ ଦେଶର ଏକ ନିୟମରେ ପରିଣତ ହୋଇ ସାରିଲାଣି ।"

ଯଦି ମିଣ୍ଟୋ ଆଶା କରିଥିଲେ ଯେ ସେହି ଆନ୍ଦୋଳନକୁ ଦମନ କରିପାରିବେ, ଯାହାର ଚେର ସେତେବେଳକୁ ଖୁବ୍ ଗଭୀର ମାଟି ତଳକୁ ଚାଲି ଯାଇଥିଲା ଏବଂ ସମଗ୍ର ଦେଶରେ ପରିବ୍ୟାପ୍ତ ହୋଇ ସାରିଥିଲା, ତାହା ସେ ଭୁଲ କରିଥିଲେ । ନା, ତାଙ୍କର ନୀତି –"ଆଗୁ ଲାତ୍, ପିଛେ ବାତ୍" (ପ୍ରଥମେ ଦମନ ଓ ପରେ ସମାଧାନ) କିମ୍ବା ମୋର୍ଲେଙ୍କ ନୀତି, ଏପରିକି ତାଙ୍କ ପରବର୍ତ୍ତୀ ଲର୍ଡ କ୍ରିଉ (Lord Crewe) ଙ୍କ ନୀତି ଅଭିଳଷିତ ପରିଣାମ ପ୍ରଦାନ କରିଥିଲା । ସେ ତିନୋଟି ମୁଖ୍ୟ ଗୋଷ୍ଠୀ ଚିହ୍ନଟ କରିବା ପାଇଁ ଚେଷ୍ଟା କରିଥିଲେ । ସେଗୁଡ଼ିକ ଥିଲେ ବ୍ରିଟିଶ ଅଣରାଜକର୍ମଚାରୀ, ମୁସଲମାନ ଏବଂ ଶିକ୍ଷିତ ହିନ୍ଦୁ ସଂପ୍ରଦାୟ । ମୋର୍ଲେ-ମିଣ୍ଟୋ ସଂସ୍କାର ଅନୁଯାୟୀ କେବଳ ମୁସଲମାନଗୋଷ୍ଠୀ ସନ୍ତୁଷ୍ଟ ହୋଇଥିଲେ ଏବ ତାହା ମଧ୍ୟ ଥିଲା ସ୍ୱଳ୍ପକାଳ ପାଇଁ । 1911 ମସିହାରେ ବଙ୍ଗ ବିଭାଗୀକରଣକୁ ରଦ୍ଦ କରିଦିଆ ଯିବାପରେ ସେମାନଙ୍କ ଅନୁଭବ ଥିଲା ଯେ ବ୍ରିଟିଶମାନେ ସେମାନଙ୍କୁ ହିନ୍ଦୁ ଚରମପନ୍ଥୀମାନଙ୍କ ସପକ୍ଷରେ ତ୍ୟାଗ କରି ଦେଇଥିଲେ । ଅନ୍ୟପକ୍ଷରେ ସେମାନେ (ହିନ୍ଦୁ ଚରମପନ୍ଥୀମାନେ) ମନେକରିଥିଲେ ଯେ ବ୍ରିଟିଶମାନଙ୍କ କ୍ଷମତା ଯଥାର୍ଥ ଭାବେ ସଂକୋଚନ କରିବା ଲାଗି ନିଜକୁ ନିଜେ ସାହାଯ୍ୟ କରିବାହିଁ ସବୁଠାରୁ ବଡ ସାହାଯ୍ୟ । ବୋଏରମାନେ 1902 ମସିହାରେ ବ୍ରିଟିଶମାନଙ୍କ ପଦକ୍ଷେପ ସବୁକୁ ଗ୍ରହଣକରି ନିଜକୁ ଶାସନ କରିବା ପାଇଁ ସେମାନଙ୍କ ଦାବୀ ହାସଲ କରିପାରିଥିଲେ । 1905 ମସିହାରେ କ୍ଷୁଦ୍ରଦେଶ ଜାପାନ୍ ବିଶାଳ ରୁଷ ଦେଶର ଜାରମାନଙ୍କ ଅହଂକାରକୁ ହତଗର୍ବ କରି ଦେଇଥିଲା । ତତ୍‌ପରବର୍ତ୍ତୀ ବର୍ଷ ଲର୍ଡ ହାର୍ଡିଞ୍ଜଙ୍କୁ ନୂତନ ରାଜଧାନୀ ଦିଲ୍ଲୀର ମୁଖ୍ୟ ରାଜରାସ୍ତାରେ, 1912 ମସିହା ଡିସେମ୍ବର ମାସରେ ହତ୍ୟା କରିବା ଲାଗି ବିଦ୍ରୋହୀମାନଙ୍କ ଉଦ୍ୟମ ଜନଗଣଙ୍କ ନିଷ୍କ୍ରିୟତାର ତପ୍ତ ଭସ୍ମ ମଧ୍ୟରୁ ସଂକଳ୍ପର ଜଳନ୍ତା ଅଙ୍ଗାର ପ୍ରଦର୍ଶନ କରିଥିଲା । ମୋତିଲାଲ ସ୍ପଷ୍ଟଭାବେ ଅହିଂସାକୁ ତଥା ଜନ-ସହଯୋଗମୂଳକ କାର୍ଯ୍ୟକଳାପକୁ ସମର୍ଥନ କରିଥିଲେ । ତେବେ ଅନ୍ୟତମ ମହାନ୍ ପ୍ରାକ୍ ଗାନ୍ଧିବାଦୀ, ଅହିଂସା ପ୍ରସ୍ତାବକ ରବୀନ୍ଦ୍ରନାଥ ଠାକୁରଙ୍କ ଭଳି ସେ ଶହୀଦମାନଙ୍କ କୃତି ଆତ୍ମୋତ୍ସର୍ଗ-ଜନିତ ମହାନତା ତଥା ଏକ ମହାନ୍ କାର୍ଯ୍ୟ ଲାଗି ବରଣ କରିଥିବା ମୃତ୍ୟୁଗୁଡ଼ିକୁ ମଧ୍ୟ ସେ ସମ୍ମାନ ଦେଉଥିଲେ ।

# ଏଗାରଃ ଏକ ଦାରୁଣ ବିୟୋଗ

1911 ମସିହା ଘୋଷ ପରିବାର ପାଇଁ ଗୋଟିଏ ଦାରୁଣ ବିୟୋଗାତ୍ମକ ଘଟଣାନେଇ ଆରମ୍ଭ ହୋଇଥିଲା । ପ୍ରାୟ ବିଗତ ଦୁଇ ଦଶନ୍ଧିରୁ ଅଧିକ କାଳ ଧରି ପଙ୍ଗୁ ହୋଇ ପଡିରହିଥିବା ଏବଂ ଅଧିକାଂଶ ସମୟ କଲିକତା ବାହାରେ ରହୁଥିବା ଶିଶିର କୁମାର, ଜାନୁଆରୀ 10 ତାରିଖ ଦିନ ମୃତ୍ୟୁ ବରଣ କରିଥିଲେ । 43 ବର୍ଷ ପୂର୍ବେ, 'ପତ୍ରିକା' ପ୍ରତିଷ୍ଠା କରିଥିବା ତିନି ଭାଇଙ୍କ ମଧ୍ୟରେ ହେମନ୍ତ କୁମାରଙ୍କ ମୃତ୍ୟୁ 1892 ମସିହାରେ ହୋଇ ଯାଇଥିଲା । ସେତେବେଳକୁ ଶିଶିର କୁମାର କାର୍ଯ୍ୟତଃ ସକ୍ରିୟ ସାମ୍ବାଦିକତା କ୍ଷେତ୍ରରୁ ଅବସର ଗ୍ରହଣ କରି ସାରିଥିଲେ ଏବଂ ଆଧ୍ୟାତ୍ମିକ ଅନ୍ୱେଷଣରେ ବ୍ରତୀ ହୋଇ ସାରିଥିଲେ । 'ପତ୍ରିକା'ରେ ପ୍ରକାଶିତ ଗୋଟିଏ ସ୍ମୃତିତର୍ପଣମୂଳକ ରଚନାକୁ ଉଲ୍ଲେଖ କଲେ "ସେ ଏକ ଚତୁର୍ଥ ଶତାବ୍ଦୀ ଧରି ଏହି ପତ୍ରିକାର ମୁଖ୍ୟ ସଂପାଦକ ଥିଲେ । ବାସ୍ତବିକ ସେ ହିଁ ଏହାକୁ ସାକାର କରିବା ସଙ୍ଗେ ସଙ୍ଗେ ଏହାର ଆତ୍ମା ତଥା ଜୀବନ ପ୍ରଦାନ କରିଥିଲେ ।" ଏହା ବିଶେଷ ଭାବରେ ଜଣାଶୁଣାଥିଲା ଯେ ଏଥିରୁ ଅବସର ନେବା ପରେ ମଧ୍ୟ ପତ୍ରିକାର ସଂପାଦକୀୟ ନୀତିକୁ ସେ ପରିଚାଳନା କରି ଆସୁଥିଲେ ଏବଂ ଏହାର ସଂପାଦକୀୟ ସ୍ତମ୍ଭରେ ପ୍ରକାଶିତ ସାଂପ୍ରତିକ ଜରୁରୀ ସମସ୍ୟାଗୁଡିକ ସଂପର୍କରେ ମତାମତଗୁଡିକ ବରାବର ତାଙ୍କର କଲମରୁ ହିଁ ନିଃସୃତ ହେଉଥିଲା । ତାଙ୍କର ପ୍ରଶଂସକମାନେ ତାଙ୍କର ଭକ୍ତିମତ୍ତା ତଥା ଧର୍ମନିଷ୍ଠା ପାଇଁ ତାଙ୍କୁ "ମହାତ୍ମା" ବୋଲି ସମ୍ବୋଧନ କରୁଥିଲେ । ବଙ୍ଗଳା ସାହିତ୍ୟ ପାଇଁ ତାଙ୍କର ଶାଶ୍ୱତ ଅବଦାନ ଥିଲା ଶ୍ରୀ ଚୈତନ୍ୟଙ୍କ ଜୀବନୀମୂଳକ ପାଞ୍ଚଟି ଗ୍ରନ୍ଥ । ପୁଣି ବହୁ ପ୍ରାରମ୍ଭରୁ, ପ୍ରାୟ 1870 ମସିହାରୁ, ବୈଷ୍ଣବ ପଦାବଳୀରେ, ବଙ୍ଗାଳୀ ବୁଦ୍ଧିଜୀବୀ ଗୋଷ୍ଠୀ ମଧ୍ୟରେ ଆଗ୍ରହ ପୁନର୍ଜୀବିତ କରିବା ଦିଗରେ କୃତିତ୍ୱ ମୁଖ୍ୟତଃ ତାଙ୍କୁ ଦିଆଯାଇଥାଏ । ତାଙ୍କର ଗୌରବ ଗାନ କରି ମୋତିଲାଲ ତାଙ୍କ ଜ୍ୟେଷ୍ଠ ଭାଇଙ୍କୁ ସ୍ମରଣ କରିଥିଲେଃ

"ସମସ୍ତେ ଦାମ୍ପତ୍ୟ ସ୍ନେହ, ପିତୃସ୍ନେହ ତଥା ସନ୍ତାନୋଚିତ ସ୍ନେହ ସଂପର୍କରେ ଉଲ୍ଲେଖ କରନ୍ତି । କିନ୍ତୁ ଆମ ମତରେ ଜଣେ ଭାଇର ସ୍ନେହ ଭଗବାନଙ୍କର ପରମ ଉପହାର ଏବଂ ତାହା ସମସ୍ତ ପ୍ରକାର ସ୍ନେହର ଭିତ୍ତି । ଜଣେ ଭାଇଙ୍କୁ ହରାଇବାର ଅର୍ଥ ଗୋଟିଏ ହୃଦୟକୁ ଚାପଦେଇ ତାର ଆଦର୍ଶ ସବୁକୁ ଭାଙ୍ଗିଦେବା ଭଳି ଅନୁଭବ କରିବା । ତେବେ ବାବୁ ଶିଶିର କୁମାର ଘୋଷ କେବଳ ଆମ୍ଭମାନଙ୍କ ପିତୃ-ମାତୃ ଜନ୍ମିତ ଭାଇ ନଥିଲେ, ଥିଲେ ସାରା ଜୀବନର ଜଣେ ନିଶ୍ଚିତ ବନ୍ଧୁ । ସେ ଆପାତତଃ ବିଗତ 60 ବର୍ଷରୁ ଅଧିକ କାଳ ପ୍ରତିଦିନ

ଆମ୍ଭମାନଙ୍କର ସହଯୋଗୀ ଥିଲେ ଏବଂ ଯେତେ କ୍ଷୁଦ୍ର ହେଲେ ବି ପ୍ରତ୍ୟେକ ଉତ୍ତମ କାର୍ଯ୍ୟ ପାଇଁ ତାହାଙ୍କ ନିକଟରେ ଆମେ ଋଣୀ ଥିଲୁ । ତାଙ୍କ ପାଖରୁ ହିଁ ଆମେ ରାଜନୀତିର ପ୍ରାଥମିକ ଶିକ୍ଷା ଲାଭ କରିଥିଲୁ ଏବଂ ଉଚ୍ଚତର ଜୀବନ ନିର୍ବାହର ପ୍ରଣାଳୀ ମଧ୍ୟ ଶିକ୍ଷା କରିଥିଲୁ । ସେ ଆମ୍ଭମାନଙ୍କୁ କେବଳ ଆଦେଶ କିମ୍ବା ଉପଦେଶ ଦ୍ୱାରା ହିଁ ଶିକ୍ଷା ପ୍ରଦାନ କରୁନଥିଲେ, ବିଭିନ୍ନ ଉଦାହରଣଗୁଡ଼ିକ ମାଧ୍ୟମରେ ଶିକ୍ଷା ପ୍ରଦାନ କରୁଥିଲେ । ସେଥିରେ ଥିଲା, ମଣିଷର ସର୍ବଶ୍ରେଷ୍ଠ ଭାଗ୍ୟ ହେଉଛି ଭଗବାନଙ୍କୁ ତଥା ମଣିଷକୁ ପ୍ରେମ କରିବା । ସେ ଆମର ପାର୍ଥିବ ଏବଂ ଆଧ୍ୟାତ୍ମିକ ଗୁରୁ ଥିଲେ । ତାଙ୍କ ଅନୁପସ୍ଥିତିରେ ଆମେ ପ୍ରବଳ ଅସହାୟ, ଦୁଃଖି ଏବଂ ଆପଣାକୁ ଅତି କ୍ଷୁଦ୍ର ମନେକରୁଛୁ । ଅନ୍ୟ ପୃଥିବୀକୁ ତାଙ୍କର ଯାତ୍ରା ଯୋଗୁଁ ଆମ୍ଭମାନଙ୍କ ହୃଦୟରେ ସୃଷ୍ଟିହୋଇଥିବା ଶୂନ୍ୟସ୍ଥାନ ନିଶ୍ଚିତ ରୂପେ ଆମ୍ଭମାନଙ୍କର ଜୀବନ କାଳ ମଧ୍ୟରେ ପୂର୍ଣ୍ଣ ହୋଇ ପାରିବ ନାହିଁ । ବାସ୍ତବରେ ତାଙ୍କର ମୃତ୍ୟୁ ହୋଇଥିଲେ ମଧ୍ୟ ସେ ବଞ୍ଚି ରହିଛନ୍ତି ଏବଂ ଗୋଟିଏ ଉତ୍ତମ ତଥା ସୁଖମୟ ପୃଥିବୀରେ ବଞ୍ଚିରହିଛନ୍ତି - - - - - ''

ପତ୍ରିକା ଗୋଟିଏ ଯୌଥ ପରିବାରର ବ୍ୟବସାୟ ରୂପେ ଆରମ୍ଭ ହୋଇଥିଲା । ଚାଳିଶ ବର୍ଷ ତିଷ୍ଠି ରହିବାପରେ 1908 ମସିହାରେ ଏହା ଏକ ସୀମିତ ଦାୟିତ୍ୱମୂଳକ ବ୍ୟବସାୟ ପ୍ରତିଷ୍ଠାନ ରୂପେ ତାଲିକାଭୁକ୍ତ ହୋଇଥିଲା । ତାହାର ଅଂଶଧନଗୁଡ଼ିକ ଘୋଷ ପରିବାରର ସଦସ୍ୟମାନଙ୍କ ଭିତରେ ହିଁ ଆବଦ୍ଧ ରହିଥିଲା । ମୋତିଲାଲ ସେହି ବ୍ୟବସାୟ ସଂପାଦନା ଦିଗରେ ସଂପୃକ୍ତ ଥିଲେ । ଆର୍ଥିକ ପରିଚାଳନା ଭାର ହେମନ୍ତ କୁମାରଙ୍କ ହାତରେ ଥିଲା ଏବଂ ତାଙ୍କ ମୃତ୍ୟୁ ପରେ ପରେ ଗୋଲାପଲାଲ ତଥା ହେମନ୍ତ କୁମାରଙ୍କ ପୁତ୍ର ମୃଣାଳକାନ୍ତି ତାହା ପରିଚାଳନା କରୁଥିଲେ । ଖବରକାଗଜରୁ ଆୟ ମଧ୍ୟମ ଧରଣର ଥିଲା । ତେଣୁ ଘୋଷ ପରିବାରର ସଭ୍ୟମାନେ ମିତବ୍ୟୟୀ ରୂପେ ବଞ୍ଚି ରହିବା ଲାଗି ମଧ୍ୟ ସେମାନଙ୍କୁ ନିଜ ଗ୍ରାମରେ ଥିବା ଜମିର ଆଦାୟ ଖବରକାଗଜର ଆୟ ସହିତ ଅନୁପୂରକ ରୂପେ ଯୋଗ କରିବାଲାଗି ଆବଶ୍ୟକ ପଡୁଥିଲା । କୌଣସି ପ୍ରକାରର ପରୀକ୍ଷାମୂଳକ ଭାବେ କିମ୍ବା ଆପଣାର ଆଗ୍ରହ ନେଇ ମୋତିଲାଲ କଲିକତାର ସାଧାରଣ ଜୀବନରେ ଉଚ୍ଚଶ୍ରେଣୀୟ ହୋଇ ପାରି ନଥିଲେ । ସାମାଜିକ ଜୀବନରେ ଜନସାଧାରଣଙ୍କ ଭଳି ସମାନ ଭାବରେ ପରିଚିତ ହେବା ପାଇଁ ସେ ଯତ୍ନବାନ୍ ଥିଲେ ।

1911 ମସିହା ଡିସେମ୍ବର 11 ତାରିଖ ଦିନ ସମ୍ରାଟ ପଞ୍ଚମ ଜର୍ଜ ସିଂହାସନ ଆରୋହଣ ଉତ୍ସବର ଉପହାର ସ୍ୱରୂପ ନାଟକୀୟ ଭାବେ ବଙ୍ଗଳାର ପୁନର୍ମିଶ୍ରଣ ପ୍ରସ୍ତାବ ଘୋଷଣା କରିଥିଲେ । ତେବେ ତତ୍‌ପରେ ପରେ ମଧ୍ୟ ବଙ୍ଗଳାରେ ଆନ୍ଦୋଳନକାରୀମାନଙ୍କ ଦ୍ୱାରା ହେଉଥିବା ସନ୍ତ୍ରାସବାଦୀ କାର୍ଯ୍ୟକଳାପ, ପତ୍ର-ପତ୍ରିକାରେ ସମାଲୋଚନା କିମ୍ବା ଜାତୀୟବାଦୀ ନେତୃବୃନ୍ଦଙ୍କ ସମାଲୋଚନାମୂଳକ, ମନୋଭାବ ହ୍ରାସ ପାଇ ନଥିଲା । ଉଦାରପନ୍ଥୀମାନେ କଂଗ୍ରେସର ସମ୍ବିଧାନକୁ ସଂଶୋଧନ କରି ଅନୁଷ୍ଠାନ ଉପରେ ସେତେବେଳ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରି ରଖିଥିଲେ ଏବଂ ଘୋଷଣା କରିଥିଲେ ଯେ ଏହାର ଲକ୍ଷ୍ୟ ହେଉଛି ସାମ୍ରାଜ୍ୟ ଭିତରେ ରହି ସାମ୍ବିଧାନିକ ପନ୍ଥାରେ ଭାରତ ପାଇଁ ସ୍ୱାୟତ୍ତ ଶାସନ

ହାସଲ କରିବା । କୌଣସି ପ୍ରସ୍ତାବ ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇପାରୁ ନଥିବା ଯୋଗୁଁ ସେହି ସମସ୍ତ କଥାଗୁଡ଼ିକ ଅଧିକରୁ ଅଧିକ ସମାଲୋଚିତ ହେଉଥିଲା । ଉଦାରପନ୍ଥୀ ନେତୃତ୍ୱ ସଂପର୍କରେ ସୃ ପିକୃତ ସନ୍ଦେହର ଆଉ ଗୋଟିଏ କାରଣ ଥିଲା – ମଦନ ମୋହନ ମାଳବ୍ୟ ଏବଂ ଭୂପେନ୍ଦ୍ରନାଥ ବସୁଙ୍କ ବ୍ୟତୀତ ଭାଇସରୟଙ୍କ ସଭାର ଅନ୍ୟ କୌଣସି ଭାରତୀୟ ସଭ୍ୟ ସମ୍ବାଦପତ୍ର ସମ୍ପର୍କରେ ହୋଇଥିବା ବିଲ୍‌କୁ ବିରୋଧ କରି ନଥିଲେ । ସେହି ବିଲ୍ ପ୍ରତି ଗୋଖଲେଙ୍କ ସମର୍ଥନ ତାହାଙ୍କର ସାଧୁତା ତଥା ସମ୍ମାନରେ ଦାରୁଣ ଆଘାତ ସୃଷ୍ଟି କରିଥିଲା । କିନ୍ତୁ ସେ 1911 ମସିହାରେ ବିଦ୍ରୋହ ଉଦୀପକ ସଭା ବିରୁଦ୍ଧରେ ଉଦ୍ଦିଷ୍ଟ ଆଇନର ତୀବ୍ର ବିରୋଧ କରି ଯଥାତଥାଭାବେ ତାଙ୍କ ସ୍ଥାନ ପୁନଃ ସଂରକ୍ଷଣ କରିପାରିଥିଲେ । ସେତିକିବେଳେ ସେ ବ୍ରିଟିଶ ଅଧିକାରୀଙ୍କୁ ସମ୍ବାଦପତ୍ରଗୁଡ଼ିକର ଉତ୍ତେଜନା ମନୋଭାବସୂଚକ ଭଙ୍ଗୀ ପ୍ରତି ସ୍ପଷ୍ଟ ରୂପେ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେଃ

"ସେହି ଜାତିଗତ ଔଦ୍ଧତ୍ୟରେ ଅଭିହିତ ହୋଇ ସେହିଭଳି କେତେକ ସମ୍ବାଦପତ୍ର ବରାବର ଯେଉଁଭଳି ଭାବରେ ଭାରତୀୟ ଏବଂ ବିଶେଷକରି ଶିକ୍ଷିତ ଭାରତୀୟଙ୍କ ବିଷୟରେ ଲେଖୁଛନ୍ତି ତାହା ଗୋଟିଏ ଶରୀରକୁ ଚାବୁକାଘାତଜନିତ ଯନ୍ତ୍ରଣା ଦେବା ତୁଳନାରେ ମନକୁ ଅଧିକ ଆଘାତ କରୁଛି । ମୋ ଦେଶର ଅନେକ ଲୋକ ଚିନ୍ତା କରନ୍ତି ଯେ ଖବରକାଗଜରେ ଲେଖୁଥିବା ପ୍ରତ୍ୟେକ ଲୋହିତ ଭାରତୀୟ କେବଳ ସରକାରଙ୍କ ସପକ୍ଷବାଦୀ । ଏହା ଏକ ଉଦ୍‌ଭଟ ଚିନ୍ତା କିନ୍ତୁ ଠିକ୍ ସେହିଭଳି ତାହା କ୍ଷତିକାରକ ମଧ୍ୟ ।"

ସେହିବର୍ଷ ଭାଇସରୟଙ୍କ କାଉନ୍‌ସିଲରେ ଏକ ପ୍ରସ୍ତାବ ହୋଇଥିଲା ଯେ ସରକାରୀ ନୀତିଗୁଡ଼ିକର ସମର୍ଥନ ପାଇଁ ସରକାରୀ ଅର୍ଥ ବିନିଯୋଗରେ ବଙ୍ଗଳା ଭାଷାରେ ଏକ ଖବରକାଗଜ କଲିକତାରୁ ପ୍ରକାଶ କରାଯିବ । ସେଥିପାଇଁ ଦୈନିକ 'ଇଣ୍ଡିଆନ୍‌ ମିରର୍'ର ସଂପାଦକ ତଥା ଜଣେ ଉଦାରବାଦୀ ସମ୍ମାନନୀୟ ବ୍ୟକ୍ତି ଶ୍ରୀ ନରେନ୍ଦ୍ରନାଥ ସେନ୍‌ଙ୍କୁ ସେହି ଅର୍ଥ ସହାୟତା ଦିଆଯିବା ଲାଗି ସ୍ଥିର ହୋଇଥିଲା । ତେବେ ସେହି ଖଣ୍ଡବିଖଣ୍ଡିତ ପ୍ରସ୍ତାବ ଜରିଆରେ ଜଣେ ସାମ୍ବାଦିକ ହିସାବରେ ଶ୍ରୀ ସେନଙ୍କ ଭବିଷ୍ୟତ ସଂପୂର୍ଣ୍ଣ ନଷ୍ଟ ହୋଇ ଯାଇଥିଲା ।

ସେହି କାରଣରୁ ବଙ୍ଗଳାରେ ବେଶ ପ୍ରସିଦ୍ଧି ଲାଭ କରିଥିବା ଉଦାରପନ୍ଥୀ ସାମ୍ବାଦିକତା ଏବଂ ତତ୍ ସହିତ ସେହି ଗୋଷ୍ଠୀନେତୃତ୍ୱର ମଧ୍ୟ ପତନାଭିମୁଖୀ ଯାତ୍ରା ଆରମ୍ଭ ହୋଇ ଯାଇଥିଲା । ତେବେ ଜାତୀୟବାଦୀ ସାମ୍ବାଦିକତା କ୍ଷେତ୍ରରେ ସେମାନଙ୍କ ପ୍ରତି ଲାଗୁ ହୋଇଥିବା ଦମନମୂଳକ ଆଇନକାନୁନ୍ ସବୁର ନଦୀବନ୍ଧ ଗୁଡ଼ିକୁ ସାମନା କରିବାକୁ ପଡିଥିଲା । ସେଗୁଡ଼ିକ ଥିଲା ଦଣ୍ଡବିଧି ଆଇନର 124 (କ) ଧାରା ଏବଂ 153 (କ) ଧାରା, ଭାରତୀୟ ଦଣ୍ଡବିଧି ଆଇନର 505 ଧାରା, 1908 ମସିହାର ସମ୍ବାଦପତ୍ର (ଅପରାଧ ମୂଳକ କାର୍ଯ୍ୟକଳାପକୁ ଉତ୍ସାହିତ କରିବା) ଆଇନ, 1910 ମସିହାରେ ସମ୍ବାଦପତ୍ର ଆଇନ, ବିଦ୍ରୋହାତ୍ମକ ସଭାସମିତି ନିରୋଧ ଆଇନ - 1911, ଅପରାଧମୂଳକ ଆଇନର 1908 ମସିହା ସଂଶୋଧନ ଆଇନ ଏବଂ '1903 ମସିହାର ଗୋପନୀୟତା ଆଇନ ।

ସରକାରୀ ଅମଲାତନ୍ତ୍ର ଏବଂ ବେସରକାରୀ ଇଉରୋପୀୟ ବ୍ୟକ୍ତିମାନେ ସର୍ବାଧିକ ଭାବେ ଘୃଣା କରୁଥିବା ଖବରକାଗଜର ସଂପାଦକ ମୋତିଲାଲଙ୍କୁ ତାଙ୍କ ସାମନାରେ ଥିବା ପ୍ରତାରଣାପୂର୍ଣ୍ଣ ପ୍ରାଙ୍ଗଣରେ ବିଛା ହୋଇଥିବା ଦମନମୂଳକ ଆଇନଗୁଡିକର ଜାଲକୁ ଅକ୍ରିଆର କରି ସେଥିରୁ ଖସିଯିବା ଉଦ୍ଦେଶ୍ୟରେ କାର୍ଯ୍ୟ କରିବାକୁ ପଡିଥିଲା । ଏଭଳି ହୋଇଥିଲା ଯେ ନୂତନ ଲେଫଟନାଣ୍ଟ ଗଭର୍ଣ୍ଣର ଲର୍ଡ କାର୍ମିଚେଲ୍ ତାଙ୍କର ପୂର୍ବାଧିକାରୀମାନଙ୍କ ତୁଳନାରେ ଜାତୀୟତାବାଦୀ ଚେତନା ପ୍ରତି ଅଧିକ ସହାନୁଭୂତିଶୀଳ ଥିଲେ । ଅମଲାତନ୍ତ୍ରର ତୀବ୍ର ବିରୋଧ କରି ସେ ଜନସାଧାରଣଙ୍କ ବାସ୍ତବ ମତାମତ ପ୍ରତି ଏବଂ ବାସ୍ତବ ଅବସ୍ଥା ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ଚେଷ୍ଟିତ ହୋଇଥିଲେ । ସେ 'ପତ୍ରିକା'ରେ ପ୍ରକାଶ ପାଉଥିବା ମତାମତଗୁଡିକ ପ୍ରତି ଗୁରୁତ୍ୱ ଆରୋପ କରିଥିଲେ । ମୋତିଲାଲଙ୍କ ସହିତ ଘନିଷ୍ଠ ପରିଚୟ ହେବା ଲାଗି ସେ ଉଦ୍ୟମ କରିଥିଲେ ଏବଂ ତାଙ୍କର ଜଣେ ବନ୍ଧୁ ହୋଇଥିଲେ । ଯଦିଓ ମୋତିଲାଲ, ସରକାରୀ ପଦକ୍ଷେପ ତଥା କାର୍ଯ୍ୟକଳାପର ଜଣେ କଟୁ ସମାଲୋଚକ ଥିଲେ ତଥାପି ସେ ଥିଲେ ଜଣେ ସ୍ପଷ୍ଟବାଦୀ । ତାଙ୍କର ମନୋମୁଗ୍ଧକର ବ୍ୟକ୍ତିତ୍ୱ ଥିଲା ଯାହା ଫଳରେ ତାହାଙ୍କ ସଂପର୍କରେ ଆସୁଥିବା ବ୍ୟକ୍ତିମାନେ ତାହାଙ୍କ ସହିତ ଦୃଷ୍ଟିକୋଣ ତଥା ମତାମତର ବିରୋଧ ସତ୍ତ୍ୱେ ତାଙ୍କର ବ୍ୟକ୍ତିଗତ ବନ୍ଧୁ ହୋଇ ଯାଉଥିଲେ । ଇଉରୋପୀୟ ହାକିମମାନଙ୍କ ମଧ୍ୟରୁ ତାଙ୍କର ସେହିଭଳି ଜଣେ ବନ୍ଧୁ ଥିଲେ ଲର୍ଡ କାର୍ମିଚେଲଙ୍କ ବ୍ୟକ୍ତିଗତ ସଚିବ ଡବ୍ଲ୍. ଆର. ଗୋରଲେ । ତାଙ୍କ ମାଧ୍ୟମରେ ମୋତିଲାଲଙ୍କ ସହ କାର୍ମିଚେଲଙ୍କ ସାକ୍ଷାତ ବ୍ୟବସ୍ଥା ହୋଇଥିଲା । ସେହି ପ୍ରଥମ ସାକ୍ଷାତକାର ପରେ ପରେ ସେମାନଙ୍କ ମଧ୍ୟରେ ଅନେକ ବାର ସାକ୍ଷାତ ହୋଇଥିଲା । ମୋତିଲାଲଙ୍କ ନିକଟକୁ କାର୍ମିଚେଲଙ୍କ ଦ୍ୱାରା ଦାର୍ଜିଲିଂରୁ 1912 ମସିହା ମଇ 1୪ ତାରଖ ଦିନ ଲେଖା ହୋଇଥିବା ଏକ ବ୍ୟକ୍ତିଗତ ପତ୍ରରୁ ସେମାନଙ୍କ ସଂପର୍କ ଉଲ୍ଲେଖ ଯୋଗ୍ୟଃ

"ମୁଁ ଆପଣଙ୍କୁ ଜଣାଇ ଦେବାକୁ ଚାହେଁ ଯେ ଆପଣଙ୍କ ମତ ଅନୁଯାୟୀ ମୁଁ ଯେଉଁ କାର୍ଯ୍ୟ କରିବା ଉଚିତ ସେଇ ସମ୍ପର୍କରେ ମୋତେ ଯଦି ଆପଣ ପରୋକ୍ଷଭାବେ କିମ୍ବା ପ୍ରତ୍ୟକ୍ଷଭାବେ ଜଣାଇ ଦିଅନ୍ତେ ତା'ହେଲେ ମୁଁ ଆପଣଙ୍କ ନିକଟରେ ଚିରକାଳ ଅଧିକତର ଭାବେ କୃତଜ୍ଞ ରହନ୍ତି । ମୁଁ ସାହସର ସହିତ କହିପାରେ ଯେ 'ଅମୃତ ବଜାର ପତ୍ରିକା'ରୁ ସେହି ବିଷୟଗୁଡିକ ସମ୍ପର୍କରେ ମୁଁ ସବୁବେଳେ ଜାଣିବାକୁ ଚାହେଁ । ସେହି କାର୍ଯ୍ୟ ପ୍ରାୟତଃ ମୁଁ ଆରମ୍ଭ କରି ସାରିଲିଣି । ମୁଁ ନିଷ୍ଠାର ସହିତ ଯେ କୌଣସି ଲୋକକୁ ସାହାଯ୍ୟ କରିବା ପାଇଁ ଉତ୍କଣ୍ଠିତ ଯିଏ ପ୍ରକୃତରେ ବଙ୍ଗଳାର ଜନସାଧାରଣଙ୍କ ଲାଗି ଏହାକୁ ଏକ ସୁଖକର ବାସସ୍ଥାନରେ ପରିଣତ କରିବା ପାଇଁ ଉଦ୍ୟମରତ । ମୁଁ ଜାଣେ ଅନେକ ଲୋକ ନିଶ୍ଚିତ ରୂପେ ମୋ ପ୍ରତି ନିରାଶ ହୋଇଥିବେ କାରଣ ମୁଁ ମଧ୍ୟ ଜାଣେ ଯେ ସମସ୍ତଙ୍କ ଚାହିଦା ମୁତାବକ କାର୍ଯ୍ୟ କରିବାପାଇଁ ମୁଁ କଦାପି ସମର୍ଥ ହୋଇ ପାରିବିନାହିଁ - - - - କିନ୍ତୁ ମୁଁ ଯେତିକି କରିପାରିବା ପାଇଁ ସମର୍ଥ ସେତିକି କରିବାକୁ ଚାହେଁ, ଏବଂ ପ୍ରକୃତ ଚାହିଦା ସଂପର୍କରେ ଯିଏ ଯେତିକି ଜାଣନ୍ତି ତାହା ମତେ ଜଣାଇବା ଆବଶ୍ୟକ । ମୋ ପରିବର୍ତ୍ତେ, ଯଦି ସ୍ଥାନୀୟ ବିଷୟାବଳୀ ସଂପର୍କରେ ସଂପୂର୍ଣ୍ଣ ଜାଣିଥିବା ଜଣେ କେହି ଗଭର୍ଣ୍ଣର ହୋଇ ଆସେ ତେବେ ମଧ୍ୟ ସେ ଇଚ୍ଛା ପୋଷଣ କରିଥିବା କାର୍ଯ୍ୟକଳାପର ଏକାଦଶାଂଶ ପ୍ରକୃତରେ ନିର୍ବାହ କରିପାରିବ ବୋଲି ମୁଁ ଆଶା କରିପାରୁ ନାହିଁ । ମୁଁ ତ

ମୋର ପଡୋଶୀର ଭାଷା ଜାଣେ ନାହିଁ ! ଜଣକର କାର୍ଯ୍ୟରେ ଅନେକ କିଛି ପ୍ରକୃତରେ ବିଘ୍ନ ସୃଷ୍ଟି କରିପାରେ । ବର୍ତ୍ତମାନ ପାଇଁ ସମ୍ଭବତଃ ଏହା ସତ୍ୟ ଯେ, ସେଗୁଡ଼ିକ ଯଥାସ୍ଥାନରେ ରହିଛି ଏବଂ ରହିଥାଉ । ସେସବୁ ଉତ୍ପାଟିତ ହେବା ପର୍ଯ୍ୟନ୍ତ ପ୍ରଗତିର ଧାରା ମନ୍ଥର ଦୃଷ୍ଟ ହେବ । ନିର୍ଦ୍ଦିଷ୍ଟ ଭାବେ ସ୍ୱାୟତ୍ତ ଶାସନ ପରିଚାଳନା ଦିଗରେ ଏହା ସତ୍ୟ ଏବଂ ଏପରିକି ଶିକ୍ଷା କ୍ଷେତ୍ରରେ ତଥା ମଣିଷ ବର୍ତ୍ତମାନ ଚିନ୍ତା କରୁଥିବା ସମସ୍ତ ବିଷୟ ଲାଗି ମଧ୍ୟ ପ୍ରଯୁଜ୍ୟ - - - - ଏହି ଦୃଷ୍ଟିରୁ ଦେଖିଲେ ଜଣେ ଗଭର୍ଣ୍ଣର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ କାର୍ଯ୍ୟକଳାପ କରିବା ପାଇଁ ହୁଏତ ଉତ୍ତମ ଭାବେ ଉତ୍ସାହିତ କରିପାରିବ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଜନସାଧାରଣଙ୍କୁ ସେମାନେ ବିଚାର କରୁଥିବା ଦୃଷ୍ଟିକୋଣରୁ ନ ଦେଖି ଭିନ୍ନ ଭାବରେ ସେଗୁଡ଼ିକ ଦେଖିବା ଲାଗି ପ୍ରୋତ୍ସାହିତ କରିବା ପାଇଁ ଚେଷ୍ଟା କରିବ । ସମ୍ଭବତଃ ତାହା ସର୍ବଦା ସେ ନିଜେ କରିବାକୁ ଇଚ୍ଛା କରୁଥିବା କାର୍ଯ୍ୟଠାରୁ ଉତ୍ତମ ବିବେଚିତ ହେବ ।''

କାର୍ମିଚେଲ୍‌ଙ୍କ ପଦକ୍ଷେପଗୁଡ଼ିକ ଅତୀବ ଦୁଃସାଧ୍ୟ ଥିଲା । ନୂତନ ରୂପେ ସ୍ଥାନାନ୍ତରିତ ହୋଇଥିବା ରାଜଧାନୀରେ ଆନୁଷ୍ଠାନିକ ଭାବେ ପ୍ରବେଶ କରିବା ବେଳେ 1912 ମସିହା ଡିସେମ୍ବର 23 ତାରିଖ ଦିନ ଭାଇସ୍‌ରୟ୍ ଲର୍ଡ ହାର୍ଡିଞ୍ଜଙ୍କ ଉପରକୁ ଅତୀବ ଦୁଃସାହସିକ ରୂପେ ବୋମା ଆକ୍ରମଣ କରା ଯାଇଥିଲା । ତାହା ପ୍ରାୟତଃ ମାରାତ୍ମକ ଥିଲା ।

ବୋମା ଆକ୍ରମଣ ଯୋଗୁଁ ଭାଇସ୍‌ରୟ୍ ଲର୍ଡ ହାର୍ଡିଞ୍ଜ ଗୋଟିଏ ହାତ ହରାଇ ଥିଲେ । ତାହା ଫଳରେ ତାଙ୍କ ପରିଷଦର ଇଉରୋପୀୟ ସଭ୍ୟବୃନ୍ଦ, ସରକାରୀ କର୍ମଚାରୀ ତଥା ଇଉରୋପୀୟ ବେସରକାରୀ ଗୋଷ୍ଠୀ ବିଦ୍ରୋହୀର ରକ୍ତ ଦାବୀ କରିଥିଲେ । ସ୍ୱାଭାବିକ ଭାବେ ବିଦ୍ରୋହୀମାନେ ବଙ୍ଗଳା ବ୍ୟତୀତ ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକରେ ମଧ୍ୟ ସେମାନଙ୍କ ସଂଗଠନକୁ ପରିବ୍ୟାପ୍ତ କରି ସାରିଥିଲେ । ସେସବୁ ସ୍ଥାନ-ଗୁଡ଼ିକ ସେମାନଙ୍କ କାର୍ଯ୍ୟକଳାପର କେନ୍ଦ୍ରସ୍ଥଳ ରୂପେ ବିବେଚିତ ହେଉଥିଲା । ସେହିଭଳି କାର୍ଯ୍ୟକଳାପ-ଗୁଡ଼ିକ ଭିତରେ କେବଳ ସରକାରୀ କର୍ମକର୍ତ୍ତା ତଥା ଗୋଇନ୍ଦାଗିରୀ କରୁଥିବା ବ୍ୟକ୍ତିବୃନ୍ଦଙ୍କୁ ହତ୍ୟା କରିବା କାର୍ଯ୍ୟ ଅନ୍ତର୍ଭୁକ୍ତ ନଥିଲା, କାର୍ଯ୍ୟକଳାପ ପରିସର ବୃଦ୍ଧି କରାଇବା ଉଦ୍ଦେଶ୍ୟରେ ଅର୍ଥସଂଗ୍ରହର ଲକ୍ଷ୍ୟ ରଖି ଡକାୟତି କରିବା ମଧ୍ୟ ସେମାନଙ୍କର କାର୍ଯ୍ୟ ଥିଲା । କାର୍ମିଚେଲ୍ ବିଦ୍ରୋହାତ୍ମକ କାର୍ଯ୍ୟକଳାପକୁ ନିରୁତ୍ସାହିତ କରିବା ପାଇଁ, ସବୁ ଗୋଷ୍ଠୀର ଜନସାଧାରଣଙ୍କ ମଧ୍ୟରେ ଉତ୍ତମ ବୁଝାମଣା ସୃଷ୍ଟି କରି ମିତ୍ର ଭାବାପନ୍ନ କରିବାପାଇଁ ତଥା ସାଧାରଣ ଶୁଭେଚ୍ଛା ସୃଷ୍ଟି କରିବା ନୀତି ଗ୍ରହଣ କରିବା ପାଇଁ ଚେଷ୍ଟା କରିଥିଲେ । ତଥାପି ଭାଇସ୍‌ରୟଙ୍କ ପରିଷଦର ଘରୋଇ ବିଭାଗ ସଭ୍ୟ ସାର୍ ରେଜିନାଲ୍ଡ଼ କ୍ରେଡକ୍ ମତ ପୋଷଣ କରିଥିଲେ ଯେ ସନ୍ତ୍ରାସବାଦ କୌଣସି ନା କୌଣସି କୁମତବାଦର ନିଶ୍ଚିତ ପରିଣାମ । ଅର୍ଥନୈତିକ ଦୁରବସ୍ଥାର ଅଭିବୃଦ୍ଧି ଯୋଗୁଁ ତାହା ଅଦ୍ଭୁତ ରୂପେ ବଙ୍ଗଳାରେ ବିସ୍ତାର ଲାଭ କରିଥିଲା । ସେଭଳି "ସମସ୍ତ ଦୁରଭିସନ୍ଧିମୂଳକ ପ୍ରଭାବଗୁଡ଼ିକର ରାଜ୍ୟକୁ ଅଭିନନ୍ଦନ କରାଯାଇଥିଲା ତଥା ମଙ୍ଗଳକାରୀ ପ୍ରଭାବପୂର୍ଣ୍ଣ ବିଷୟଗୁଡ଼ିକ ବିରୁଦ୍ଧରେ ଖବରକାଗଜ ତଥା ସଭା ମଣ୍ଡପ ଉପରୁ ଆର୍ତ୍ତ ଚିତ୍କାର କରା ଯାଇଥିଲା । - - - - ଆପାତତଃ ବଙ୍ଗଳାରେ ସରକାରଙ୍କ ସପକ୍ଷରେ ଶୃଙ୍ଖଳାବଦ୍ଧ ହୋଇ କେହି ନଥିଲେ କିମ୍ବା ନଷ୍ଟ ବଳର ପୁନଃ ପ୍ରାପ୍ତି ପାଇଁ କୌଣସି ପନ୍ଥା ନଥିଲା - ।''

କାର୍ମିଚେଲ୍ ଏବଂ କ୍ରେଡକଙ୍କ ମଧ୍ୟରେ ଉପୁଜିଥିବା ବିବାଦର ପରିଣତି ବିଷୟରେ ଯଥାର୍ଥ ଅନୁମାନ କରି ପୂର୍ବୋକ୍ତଙ୍କ ସପକ୍ଷରେ ବଙ୍ଗଳାର ସାଧାରଣ ଜନମତ ସମ୍ବେଦନଶୀଳ ହୋଇ ଉଠିଥିଲା । ତେଣୁ ତାଙ୍କ ସହିତ ମୋତିଲାଲଙ୍କ ବନ୍ଧୁତ୍ୱ ସୃଷ୍ଟି ହୋଇଥିଲା । ସର୍ବୋଚ୍ଚ ସରକାର ଭାରତୀୟ ଖବରକାଗଜଗୁଡ଼ିକୁ ତାଙ୍କର ଅଧୀନରେ ରଖିବା ଲାଗି ଏବଂ ଶିକ୍ଷା କ୍ଷେତ୍ରରେ ଜାତୀୟତାବାଦର ଅନୁପ୍ରବେଶରୁ ମୁକ୍ତ ରଖିବାପାଇଁ ଦୃଢ଼ପ୍ରତିଜ୍ଞ ଥିଲେ । ତାତ୍ପର୍ଯ୍ୟପୂର୍ଣ୍ଣ ଭାବେ ସେମାନେ ଉଭୟେ ଫଳପ୍ରଦ ହୋଇ ନଥିଲେ । ଖବରକାଗଜସବୁ ବ୍ରିଟେନ୍‌ର ପ୍ରତିଶ୍ରୁତିମୂଳକ କାର୍ଯ୍ୟାବଳୀ ବିଷୟରେ ଅତି ନିର୍ଦ୍ଦୟ ଭାବରେ ବୀଣା ବାଦନ କରିଥିଲେ । ଯଦିଚ ଯଥେଷ୍ଟ ସତର୍କତାର ସହିତ ପରୀକ୍ଷା କରାଯାଉଥିଲା, ତଥାପି "ରାଜଭକ୍ତ" ଉପଦେଷ୍ଟାମାନେ ସେମାନଙ୍କ ଅନୁଗାମୀମାନଙ୍କୁ ଗୋପନ ରଖି ନଥିଲେ ଯେ ଜାତିର ମୁକ୍ତିପାଇଁ ତୀବ୍ର ବେଗରେ ଗତିକରିବାକୁ ଇଚ୍ଛୁକ ଖରାପ ଲୋକଙ୍କୁ ମଧ୍ୟ ସେମାନେ ପ୍ରଶଂସା କରନ୍ତି । ଉଚ୍ଚସ୍ତରରେ କାର୍ମିଚେଲଙ୍କ ସହିତ ତାଙ୍କର ଗୋଷ୍ଠୀର ଲୋକଙ୍କ କଳହ ଚାଲିଥିଲା । ସରକାରୀ ମହଲରୁ ସେ ଅଧିକତର ଭାବେ ସମର୍ଥନ ଲାଭ କରି 1914 ମସିହାରେ ପ୍ରଥମ ବିଶ୍ୱ ଯୁଦ୍ଧ ଆରମ୍ଭ ହେବା ପର୍ଯ୍ୟନ୍ତ ପ୍ରବଳ ଭାବରେ ସଂଗ୍ରାମ କରି ଚାଲିଥିଲେ । ତାହା କ୍ରେଡକଙ୍କ ଶିଥିଳତାପୂର୍ଣ୍ଣ ନୀତିଗୁଡ଼ିକୁ କ୍ଷୁଦ୍ରକାୟ କରାଇ ଦେବାପାଇଁ ସୁଯୋଗ ପ୍ରଦାନ କରିଥଲା ଏବଂ ଭାରତୀୟ ଜନଗଣ ତଥା ଖବରକାଗଜଗୁଡ଼ିକ ଉପରେ ଭାରତୀୟ ପ୍ରତିରକ୍ଷାମୂଳକ ଆଇନକୁ ଲୌହ ବନ୍ଧନୀ ମଧ୍ୟରେ ପ୍ରୟୋଗ କରିବାପାଇଁ ସୁଯୋଗ ପ୍ରଦାନ କରିଥିଲା ।

ଭାରତୀୟ ମାଲିକାନାରେ ପ୍ରକାଶିତ ସମସ୍ତ ଖବରକାଗଜଗୁଡ଼ିକୁ କାର୍ମିଚେଲ ଘୃଣା କରୁଥିଲେ ଏବଂ 'ପତ୍ରିକା' ତାଙ୍କ ପାଇଁ ଥିଲା ଏକ ଅଭିସମ୍ପାତ । ସେହି ଖବରକାଗଜଗୁଡ଼ିକୁ ଯନ୍ତା ଭିତରେ ନିକ୍ଷେପ କରିବା ପାଇଁ କର୍ମକର୍ତ୍ତାମାନଙ୍କ ତୀକ୍ଷ୍ଣ ଦୃଷ୍ଟି 1913 ମଇ ମାସରେ ଫଳପ୍ରଦ ହୋଇଥିଲା । ସେତିକିବେଳେ ସିଲହଟ ଜିଲ୍ଲାରେ ଥିବା ଅରୁଣାଚଳ ଆଶ୍ରମର ଅନ୍ତେବାସୀମାନଙ୍କ ଉପରେ ପୁଲିସର ଅତ୍ୟାଚାର ସମ୍ପର୍କରେ 'ପତ୍ରିକା' "ଦୋଷାବନ୍ଧ" ବିବରଣୀ ଓ ମନ୍ତବ୍ୟ ପ୍ରକାଶ କରୁଥିବା ସମ୍ପର୍କରେ ଆସାମ ସରକାର ସର୍ବୋଚ୍ଚ ସରକାରଙ୍କ ନିକଟରେ ଅଭିଯୋଗ କରିଥିଲେ । ସେହି ଆଶ୍ରମଟି ଜଣେ ବୈଷ୍ଣବଧର୍ମୀ ଗୁରୁ ଦୟାନନ୍ଦଙ୍କ ଆଶ୍ରମ ଥିଲା । ସେଠାରେ ତାଙ୍କର ଶିଷ୍ୟମାନେ ରହୁଥିଲେ । ସେମାନଙ୍କ ମଧ୍ୟରେ ଉଭୟ ପୁରୁଷ ଓ ସ୍ତ୍ରୀ ଥିଲେ ଏବଂ ସେମାନେସବୁ ଥିଲେ ସମ୍ଭ୍ରାନ୍ତ ପରିବାରର ବ୍ୟକ୍ତିବୃନ୍ଦ । ସେଠାରେ ସମସ୍ତେ ଏକାଠି ମିଶି ନାମ ସଂକୀର୍ତ୍ତନ କରୁଥିଲେ । ସେହି ଆଶ୍ରମରେ ଜାତିପ୍ରଥାର ଉଚ୍ଛେଦ ତଥା ପୁରୁଷ ଓ ସ୍ତ୍ରୀମାନଙ୍କ ଦ୍ୱାରା ହେଉଥିବା ଏକତ୍ରିତ ଭାବେ ପୂଜାର୍ଚ୍ଚନା ବିଷୟନେଇ ଅସନ୍ତୁଷ୍ଟ କେତେକ ସ୍ଥାନୀୟ ବ୍ୟକ୍ତି ସରକାରଙ୍କ ନିକଟରେ ଅଭିଯୋଗ କରିଥିଲେ ଯେ ସେମାନଙ୍କ ଦ୍ୱାରା ହେଉଥିବା ପ୍ରାର୍ଥନାର ଉଚ୍ଚ ସ୍ୱର ଲୋକଙ୍କ ନିଦ୍ରାରେ ବ୍ୟାଘାତ ସୃଷ୍ଟି କରୁଥିଲା । ପରିଣାମତଃ ସେହି ଗୁରୁ ଓ ତାଙ୍କର ଶିଷ୍ୟମାନଙ୍କୁ ଦଶ ଦଶ ଟଙ୍କା ଲେଖାଏଁ ଜୋରିମାନା ହୋଇଥିଲା । କିନ୍ତୁ ତାହା ସେମାନଙ୍କ ରାତ୍ରିକାଳୀନ ଭଜନ ଗୀତ ଆସରରେ ପୂର୍ଣ୍ଣଚ୍ଛେଦ ପକାଇ ପାରିନଥିଲା । ତା'ପରେ ପୁଣି ସ୍ଥାନୀୟ ଲୋକ ଅଭିଯୋଗ କରିଥିଲେ ଯେ ଆଶ୍ରମବାସୀମାନେ ଗୋଟିଏ ବାଳକଙ୍କୁ ଅପହରଣ କରି ନେଇଥିଲେ । ସେହି ବାଳକକୁ ଉଦ୍ଧାର କରିବାପାଇଁ ଜଣେ ପୁଲିସ କର୍ମଚାରୀ ସେଠାକୁ ପ୍ରେରିତ ହୋଇଥିଲେ ମଧ୍ୟ ତାହାଙ୍କୁ ଆଶ୍ରମ ଭିତରେ ପ୍ରବେଶ କରାଇ ଦିଆ ଯାଇନଥିଲା । ପୂର୍ବରୁ

ଆସାମ ସରକାର ଆଶଙ୍କା କରୁଥିଲେ ଯେ ସେହି ଆଶ୍ରମରେ ବିଦ୍ରୋହୀମାନଙ୍କୁ ନିଯୁକ୍ତି ତଥା ତାଲିମ ଦିଆ ଯାଉଥିଲା । ସେତିକିବେଳେ ମିଲିଟାରୀ ପୁଲିସ୍‌ମାନଙ୍କ ଦ୍ୱାରା ଆଶ୍ରମକୁ ଚଢ଼ାଉ କରିଯିବା ଲାଗି ସରକାର ଆଇନତଃ କ୍ଷମତା ପ୍ରାପ୍ତ ହୋଇଥିଲେ । ସ୍ୱାମୀମାନଙ୍କ ଉପରେ ଅସମ୍ମାନଜନକ ବ୍ୟବହାରକୁ ଯେତେ କମ୍ ସଂଖ୍ୟକ ହେଲେ ମଧ୍ୟ ଆଶ୍ରମବାସୀଗଣ ବିରୋଧ କରିଥିଲେ । ସେମାନଙ୍କ ତ୍ରିଶୂଳ ତଥା ଠେଙ୍ଗା ସାହାଯ୍ୟରେ ସେମାନଙ୍କ ମୁକାବିଲା ପାଇଁ ଚେଷ୍ଟା କରିଥିଲେ ଏବଂ ପୁଣି ସନ୍ନ୍ୟାସିନୀମାନେ ମଧ୍ୟ ସେମାନଙ୍କୁ ବାଧା ଦେଇଥିଲେ । ଚଢ଼ାଉ କରୁଥିବା ଦଳ ଗୁଳିଚାଳନା କରିଥିଲେ । ଫଳରେ ଜଣେ ବିଶିଷ୍ଟ ଆଶ୍ରମବାସୀଙ୍କର ମୃତ୍ୟୁ ହୋଇଥିଲା ଏବଂ ଅନ୍ୟ ସାତଜଣ ଆହତ ହୋଇଥିଲେ । ପୁଲିସ୍‌ର ସେହି ପାଶବ ଆକ୍ରମଣର ଏକ ପୂର୍ଣ୍ଣ ବିବରଣୀ 'ପତ୍ରିକା'ରେ ପ୍ରକାଶ ପାଇଥିଲା । ତାହାରି ଉପରେ ସରକାର ଏକ ସ୍ପଷ୍ଟୀକରଣମୂଳକ ବିବରଣୀ ପ୍ରକାଶ କରିଥିଲେ । ସେଥିରେ ଆଶ୍ରମକୁ ଆକ୍ଷେପ କରାଯାଇଥିଲା ଯେ ଏହା ଏକ "ଅପବିତ୍ର, ଅଶ୍ଳୀଳ, ଅନୈତିକ ତଥା ଅଶୋଭନୀୟ ଅନୁଷ୍ଠାନ ଯାହା ସାଧାରଣ ଆଇନକାନୁନ୍ ତଥା ଉତ୍ତମ ନୈତିକତାର ବିରୋଧ କରେ ।" ତତ୍‌ବ୍ୟତୀତ ସେଥିରେ କୁହାଯାଇଥିଲା ଯେ "ମାତ୍ର ଅଳ୍ପ କିଛିଦିନ ତଳେ ସେମାନେ (ଆଶ୍ରମର ଅଧିକାରୀଗଣ) ବ୍ରିଟିଶ ସରକାରଙ୍କଠାରୁ ସେମାନଙ୍କର ମୁକ୍ତି ଘୋଷଣା ପ୍ରକାଶ କରିଥିଲେ ।" ମୋତିଲାଲ ସେଥିରେ ସନ୍ତୁଷ୍ଟ ହୋଇ ନଥିଲେ ଏବଂ 'ପତ୍ରିକା'ରେ କ୍ରମାଗତ ଭାବେ ସେହି ସରକାରୀ ବିବୃତ୍ତିର ଅବଶ୍ୟମ୍ଭାବୀ ଅଯଥାର୍ଥତା ନେଇ ମର୍ମଭେଦୀ ବିବରଣୀମାନ ପ୍ରକାଶ କରିଥିଲେ । ଆସାମ ସରକାରଙ୍କ ଚାହିଦା ମୁତାବକ ସର୍ବୋଚ୍ଚ ସରକାର କାର୍ମିଚେଲଙ୍କ ବିରୋଧକୁ ଅସ୍ୱୀକାର କରି ଅତି ଉଲ୍ଲାସର ସହିତ 'ପତ୍ରିକା' ନିକଟରୁ ପାଞ୍ଚହଜାର ଟଙ୍କା ଅମାନତ ଦାବୀ କରିଥିଲେ । ସରକାରଙ୍କ ଏହି କାର୍ଯ୍ୟକଳାପ ନେଇ ଇଂଲଣ୍ଡରୁ ପ୍ରକାଶ ପାଉଥିବା 'ଦି ମାଞ୍ଚେଷ୍ଟାର ଗାର୍ଡିଏନ୍'ରେ ପ୍ରକାଶିତ ମନ୍ତବ୍ୟରୁ ବ୍ରିଟିଶ ମୁକ୍ତିବାଦୀମାନଙ୍କ ମତାମତ ବିଶେଷ ରୂପେ ପ୍ରତିଫଳିତ ହୋଇ ପାରିବ:

"କଲିକତାରୁ ପ୍ରକାଶ ପାଉଥିବା ଜନମତ ବାହନର ପ୍ରଥମ ତଥା ଏକ ମୁଖ୍ୟ ଅଙ୍ଗ ରୂପେ ସ୍ୱୀକୃତି ପ୍ରାପ୍ତ ଦୈନିକ ଖବରକାଗଜ 'ଅମୃତ ବଜାର ପତ୍ରିକା' ଭଳି ଅନ୍ୟ କିଛି ଭାରତ ଭିତରେ କିମ୍ବା ବାହାରେ ମଧ୍ୟ ନାହିଁ । ଏହାକୁ କଠୋର ଭାବେ 1910 ମସିହାର ଭାରତୀୟ ପ୍ରେସ୍ ଆଇନ ଦ୍ୱାରା ହିଁ ଶାସନ କରାଯିବା ଆବଶ୍ୟକ । ସୁନିଶ୍ଚିତ ରୂପେ ଏହା ଏକ ଜଣକିଆ ବ୍ୟବସାୟ ଯିଏ ମାଲିକ ତଥା ସମ୍ପାଦକର ପ୍ରତିନିଧିତ୍ୱ କରନ୍ତି । ଏବଂ ସେ ହେଉଛନ୍ତି ମି: ମୋତିଲାଲ ଘୋଷ । ଅନ୍ୟ କୌଣସି ଦଳ କିମ୍ବା ବ୍ୟକ୍ତି ସେଥି ସହିତ ସମ୍ପୃକ୍ତ ନୁହନ୍ତି । ଲର୍ଡ ଲିଟନ୍‌ଙ୍କ ଭାଇସରୟ୍ ହେବା ପରକାଳରୁ ବଙ୍ଗଳା ସାମ୍ବାଦିକତାର ଅଧିକାଂଶ ଗୁଣାବଳୀ ନେଇ ଜନ୍ମ ଲାଭ କରିଥିବା ଏହି ଖବରକାଗଜଟି ବେଶ୍ ପରିଚିତି ଲାଭ କରି ସାରିଛି । ଏହା ଅନେକ ଅନୁସନ୍ଧିତ୍ସାମୂଳକ ବିଷୟରେ ପରିପୂର୍ଣ୍ଣ ଏବଂ ତା'ଠାରୁ ଆହୁରି ଅଧିକ ଉତ୍ସୁକ ମତାମତ ମଧ୍ୟ ବହନ କରିଥାଏ । ଆପଣମାନେ କହିପାରନ୍ତି, ଏହାର ମୁଖ୍ୟ ରଚନା-ଗୁଡ଼ିକ ଗୋଟିଏ ମିତ୍ର ହାତରୁ ନିଃସୃତ ହୋଇଥାଏ ଏବଂ ସେହି ଅନୁକରଣୀୟ ହାତଟି ହେଉଛି ଖୋଦ୍ ମୋତିବାବୁଙ୍କର । ଅତି ଜ୍ୱାଳାପ୍ରଦ ଭାବେ, ଏକ ଶକ୍ତିଶାଳୀ ମୋଟା ରଜ୍ଜୁରେ ନିର୍ଦ୍ଦୟ ବନ୍ଧନ ହେବାଭଳି ସେ ତୀବ୍ର ଭାଷାରେ ବିଦ୍ରୂପ କରିବା ଦିଗରେ ପ୍ରଭାବ ବିସ୍ତାର କରିପାରିଛନ୍ତି . . . . । ଏହା କୁହାଯାଇ

ଥାଏ ଯେ ସେହି ରଚନାଗୁଡ଼ିକ (ଯେଉଁଗୁଡ଼ିକ ଆସାମରେ ହୋଇଥିବା ସଂଗଠିତ ହତ୍ୟା ବିଷୟରେ ଲେଖା ହୋଇଥିଲା) ଆକ୍ଷେପମୂଳକ ବ୍ୟଙ୍ଗକ୍ଷେତ୍ରରେ ଏକ ଶ୍ରେଷ୍ଠ ରଚନାବଳୀ । କିନ୍ତୁ ସେଗୁଡ଼ିକ ବିରୁଦ୍ଧରେ, ପ୍ରେସ୍ ଆଇନର ପରିସର ଭିତରେ, କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିବ କି ନାହିଁ, ତାହା ଅବଶ୍ୟ ଅନ୍ୟ ବିଷୟ । ମୋତିବାବୁ ନିଜଲାଗି ଅତି ସହଜରେ ନିରାପତ୍ତା ଯୋଗାଇ ଦେଇ ପାରିବେ ଯଦିଓ ସେ ଜଣେ ବିତ୍ତଶାଳୀ ବ୍ୟକ୍ତି ହିସାବରେ ଜଣାଶୁଣା ନୁହଁନ୍ତି । ତଥାପି ଏକଥା ନିଶ୍ଚିତ ଯେ ସେ କୌଣସି ଅପରାଧ କରି ନାହାନ୍ତି ବୋଲି ଯୁକ୍ତି କରିବେ ଏବଂ ସରକାରୀ ଦାବୀ ଯୁକ୍ତିଯୁକ୍ତ ନୁହେଁ ବୋଲି ମଧ୍ୟ ସେ ନିଶ୍ଚିତ ରୂପେ ଯୁକ୍ତି କରିବେ ।

ଏହି ଘଟଣାଟି ଏତେ ବିଶାଳ ଥିଲା ଯେ ତାହା ରକ୍ଷଣଶୀଳ ଖବରକାଗଜଗୁଡ଼ିକର ଦୃଷ୍ଟି ଏଡ଼ାଇ ପାରି ନଥିଲା । 'ଦି ପାଲ୍ ମେଲ୍ ଗେଜେଟ୍' ନିରାପତ୍ତାମୂଳକ ଆଦେଶକୁ ସାମାନ୍ୟ ସମର୍ଥନ କରିବାବେଳେ ମୋତିଲାଲଙ୍କ ବିଷୟରେ ଉଲ୍ଲେଖ କରିଥିଲା --

" - - - - - ତତ୍ ସଙ୍ଗେ ସଙ୍ଗେ ଏହାର ସମ୍ପାଦକ ତଥା ମୁଖ୍ୟ ଅଂଶୀଦାର ମିଃ ମୋତିଲାଲ ଘୋଷଙ୍କୁ ଜାତି ଦୃଷ୍ଟିରୁ ଗୋଟିଏ ବିପଦ ହିସାବରେ ପରିଗଣିତ କରିବା ଉଚିତ ନୁହେଁ । ସେ ଜଣେ ପ୍ରାଜ୍ଞିପଦ, ହାସ୍ୟ ବିମଣ୍ଡିତ ଅମାୟିକ ବୃଦ୍ଧ ଭଦ୍ରବ୍ୟକ୍ତି ଯିଏ କି ଇଉରୋପୀୟ ଢାଞ୍ଚା କିମ୍ବା ପୋଷାକ ପରିଚ୍ଛଦ ଗ୍ରହଣ କରିବା ପାଇଁ ଦୃଢ଼ତାର ସହିତ ଅସ୍ୱୀକାର କରନ୍ତି । ତାଙ୍କ କଲମ ସମୟେ ସମୟେ ଅତ୍ୟନ୍ତ ଅସଦିଚ୍ଛା ପ୍ରକାଶ କରି ପକାଏ - - - - ମୋତିଲାଲ ଘୋଷ ଜଣେ ବିଦ୍ରୋହୀ ନୁହନ୍ତି । ସେ ପ୍ରାୟ ପ୍ରଚଣ୍ଡ ଭାବରେ ଲେଖନ୍ତି କିନ୍ତୁ ସରକାରୀ କୋଠିକୁ ବନ୍ଧୁତ୍ୱପୂର୍ଣ୍ଣ ଭାବ ନେଇ ଯିବା ଆସିବା କରିବା ଦିଗରେ ଅବହେଳା କରନ୍ତି ନାହିଁ । କିଛି ବର୍ଷତଳେ ଯେତେବେଳେ ତତ୍କାଳୀନ ୱେଲ୍ସର ଯୁବରାଜ ଥିବା ରାଜାଙ୍କ ସହିତ ତାଙ୍କର ସାକ୍ଷାତ କରାଇ ଦିଆ ଯାଇଥିଲା, ସେ ନିଷ୍ଠାପର ଭାବରେ ତାହାଙ୍କୁ ଭକ୍ତି ପ୍ରଦର୍ଶନ କରିଥିଲେ । ସେ ତାଙ୍କର ଖବରକାଗଜଟିକୁ ଉତ୍ତର କଲିକତାରେ ଥିବା ଗୋଟିଏ ବ୍ୟକ୍ତିବହୁଳ ଗୃହରୁ ଅତି ଅନିୟମିତ ରୂପେ ପ୍ରକାଶ କରନ୍ତି ଯେଉଁଠାରେ ସେ ଦଳବଦ୍ଧ ଭାବେ ରହୁଥିବା ବନ୍ଧୁ-ବାନ୍ଧବ-ସଂପର୍କୀୟ ତଥା ନିର୍ଭରଶୀଳ ବ୍ୟକ୍ତିବୃନ୍ଦଙ୍କ ଗୋଷ୍ଠୀପତି ଭାବରେ ସେ ରହନ୍ତି । ଖଣ୍ଡିଏ ଛୋଟିଆ ଧୋତି ତାଙ୍କର ପୋଷାକପରିଚ୍ଛଦ ହୋଇଥିବା ଯୋଗୁଁ ପରିବାରର ଛୁଆମାନେ ତାଙ୍କ ପୁଳୁଳା ଗୋଡ ସହିତ ସଂଲଗ୍ନ ହୋଇ ରହୁଥିଲେ ମଧ୍ୟ, ଅତ୍ୟନ୍ତ ପ୍ରାଜ୍ଞିପଦ ତଥା ସ୍ମିତ ହାସ୍ୟ ମଧ୍ୟରେ ସେ ତୀକ୍ଷ୍ଣ ଅପବାଦର ସ୍ରୋତସ୍ୱୀନୀଃରଚନାବଳୀ ସୃଷ୍ଟି କରିପାରନ୍ତି ।"

ବୃହତ୍ତରଭାବେ 'ଦି ଗେଜେଟ୍' ମୋତିଲାଲଙ୍କୁ ଜଣେ ଦୁର୍ବଳ ବ୍ୟକ୍ତି, ଯାହାର ମତାମତଗୁଡ଼ିକୁ ଗୁରୁତ୍ୱପୂର୍ଣ୍ଣ ଭାବେ ବିଚାର କରାଯିବା ଉଚିତ ନୁହେଁ ବୋଲି ଆକାର ଦେବାପାଇଁ ଚେଷ୍ଟିତ ଥିଲା । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ କ୍ରେତକ ସେହିଭଳି ମତାମତ ସହିତ ଆପାତତଃ ରାଜି ହୋଇ ନଥିଲେ । ସେହି ଅମାନତ ଜମା ଫେରସ୍ତ ଦେଇ ଦେବାଲାଗି କାର୍ମିଚେଲଙ୍କ ଅନୁରୋଧକୁ ଦୁଇଥର ଦୃଢ଼ରୂପେ ଅସ୍ୱୀକାର କରିଦେଇ ଥିଲେ । ଶେଷୋକ୍ତ ଜଣକ ଯାହା କିଛି କରିପାରିଥିଲେ ତାହାଥିଲା, ସେହି ଅମାନତ ଟଙ୍କାକୁ

ବାତିଲ୍ କରିଦେବାପାଇଁ ତାଙ୍କର କାର୍ଯ୍ୟ ନିର୍ବାହକ ପାରିଷଦ - ପି.ସି ଲ୍ୟାନ୍ ଦୁଇଥର ଲାଗି ପ୍ରସ୍ତାବ ଦେଇଥିଲେ ମଧ୍ୟ ତାହା ଗୃହୀତ ହୋଇ ନଥିଲା ।

୨

କାର୍ମିଚେଲ୍‌ଙ୍କ ନିକଟରେ ଥିବା ଯେଉଁ ଦୁଇଟି ମୁଖ୍ୟ ବିଷୟ ମୋତିଲାଲ ସର୍ନିବନ୍ଧ ଉପସ୍ଥାପିତ କରିଥିଲେ ସେଗୁଡ଼ିକ ଥିଲା - ପୁଲିସର କାର୍ଯ୍ୟକଳାପକୁ ସୀମିତ କରାଇବା ଏବଂ ଗ୍ରାମାଞ୍ଚଳଗୁଡ଼ିକରେ ସ୍ୱାସ୍ଥ୍ୟମୂଳକ ଉନ୍ନତି କରାଇବା । ବ୍ରିଟିଶ ପରିଚାଳିତ ପୁଲିସ ପାଇଁ ମୋତିଲାଲ କୌଣସି କାଳେ ଦାର୍ଘିବେଶ୍ଚଯୁକ୍ତ ଏକ ଲୌହ ହାତୁଡ଼ି ନଥିଲେ । ଏପରି ହୋଇଥିଲା ଯେ 1902 ମସିହାରେ ପୁଲିସ କମିଶନର ତାହାଙ୍କର ସ୍ମାରକ ପତ୍ର ପାଠକରି ସାରିବା ପରେ ପରେ ମଧ୍ୟ ଅବିମୃଶ୍ୟକାରୀ ଭାବେ ମୌଖିକ ସାକ୍ଷ୍ୟ ନେବାପାଇଁ ତାହାଙ୍କୁ ବାଦ୍ ଦେଇ ଦେଇଥିଲେ । ସେହି ବିଷୟରେ ଜନସାଧାରଣ କ'ଣ ଭାବୁଥିଲେ ତାହା ସେତେବେଳେ ବେଶ୍ ଜନପ୍ରିୟତା ଲାଭ କରିଥିବା ଗୋଟିଏ ମଜା କଥାରୁ ଜଣା ପଡ଼ିବ –

ଦିନେ ଅତି ଭୋରରୁ କଲିକତାର ଗୋଟିଏ ରାସ୍ତାକଡରେ ଥିବା ନାଳ ନିକଟରେ ମଦ୍ୟପଟିଏ ଗଡୁଥିଲା । ସେହି ରାସ୍ତାଦେଇ ଯାଉଥିବା ଜଣେ କର୍ତ୍ତବ୍ୟରତ ପୁଲିସବାଲା ତା' ପ୍ରତି ଆପତ୍ତି ଉତ୍ଥାପନ କରିଥିଲା ।

ପୁଲିସ ଜଣକ ପଚାରିଥିଲା – "ତୁମେ ଏଠାରେ କଣ କରୁଛ ?"

ମଦ୍ୟପଟି ଉତ୍ତର ଦେଇଥିଲା – "ମୁଁ ଅମୃତ ବଜାର ପତ୍ରିକା ପଢୁଛି ।"

ପୁଲିସ ଜଣକ ଅପମାନିତ ହୋଇ ସେଠାରୁ ଅପସରି ଯାଇଥିଲା ।

ଗ୍ରାମାଞ୍ଚଳଗୁଡ଼ିକର ଅବସ୍ଥା ସମ୍ପର୍କରେ ଅନ୍ତରଙ୍ଗ ଥିବା ମୋତିଲାଲ ସେଗୁଡ଼ିକର ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବିଶେଷ ଆଗ୍ରହୀ ଥିଲେ । କିନ୍ତୁ ସେଥିପ୍ରତି ସରକାରୀ ସ୍ତରରେ କର୍ମଚାରୀମାନେ ଚିରାଚରିତଭାବେ ଆଖି ବନ୍ଦ କରିଦେଇଥିଲେ । 1911 ମସିହାରେ ବମ୍ବେଠାରେ ଅନୁଷ୍ଠିତ ହେଉଥିବା ଅଖିଳ ଭାରତୀୟ ସ୍ୱାସ୍ଥ୍ୟ ସମ୍ମିଳନୀରେ, ଯେଉଁଥରେ ଜଣେ ବେସରକାରୀ ପ୍ରତିନିଧିଭାବେ ସେ ଯୋଗ ଦେଇଥିଲେ ସେଠାରେ, ତାହାଙ୍କର ମନ୍ତବ୍ୟ ସରକାରୀ ନୀତିର ସ୍ୱଳ୍ପତା ଉପରେ ହିଁ ଗୁରୁତ୍ୱ ଆରୋପ କରିଥିଲା । ସେ କହିଥିଲେ "ସହରାଞ୍ଚଳର ଜନଗଣ ଅନ୍ୟମାନଙ୍କର ବିନା ସହାୟତାରେ ବିଭିନ୍ନ ରୋଗର ଆକ୍ରମଣରୁ ନିଜକୁ ରକ୍ଷାକରି ପାରିବେ । କିନ୍ତୁ ଅଭ୍ୟନ୍ତରରେ ବାସ କରୁଥିବା ଲକ୍ଷଲକ୍ଷ ଲୋକ ସରକାରଙ୍କଠାରୁ ବିଶେଷ ଭାବରେ ସହାୟତା ଲାଭ ନକଲେ ମଶା ମାଛି ପରି ମରିପଡ଼ିବେ କିମ୍ବା ଗୋଷ୍ଠୀଗତ ଭାବେ ପଙ୍ଗୁ ଅବସ୍ଥାକୁ ରୂପାନ୍ତରିତ ହୋଇଯିବେ । 1913 ମସିହାରେ ମାଦ୍ରାଜଠାରେ ଅନୁଷ୍ଠିତ ହୋଇଥିବା ଦ୍ୱିତୀୟ ସମ୍ମିଳନୀରେ, ଯେତେବେଳେ ବ୍ରିଟିଶ ସରକାରୀ ବିଶେଷଜ୍ଞମାନେ ଗ୍ରାମାଞ୍ଚଳର ଜନସାଧାରଣଙ୍କ ପାଇଁ ସବୁ ରୋଗର ପ୍ରତିକାର ଉଦ୍ଦେଶ୍ୟରେ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଶିକ୍ଷାର ଆବଶ୍ୟକତା ନେଇ ବିଷଦ୍ ଭାବରେ ବର୍ଣ୍ଣନା କରିଥିଲେ, ମୋତିଲାଲ ଗୁରୁତ୍ୱ ଆରୋପ କରିଥିଲେ ଯେ ସ୍ୱାସ୍ଥ୍ୟ ଶିକ୍ଷା ସେଭଳି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତାଙ୍କର ମତ ପ୍ରଦାନ କରି ସେ କହିଥିଲେ ଯେ ଶିକ୍ଷା

ଅପେକ୍ଷା ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପଦକ୍ଷେପଗୁଡ଼ିକ ଯଥା ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ମ୍ୟାଲେରିଆ, କଲେରା ଆଦି ରୋଗର ନିରାକରଣ ପାଇଁ ପଦକ୍ଷେପଗୁଡ଼ିକ ବିଶେଷ ଭାବେ ଆବଶ୍ୟକ ଥିଲା । ସେଗୁଡ଼ିକ ମଧ୍ୟରେ ଥିଲା ମଇଳା ନିଷ୍କାସନ, ବୁଦୁବୁଦିକିଆ ଜଙ୍ଗଲ ସଫେଇ ତଥା ସର୍ବୋପରି ଜନସାଧାରଣଙ୍କ ଆର୍ଥିକ ଅବସ୍ଥାର ଉନ୍ନତି । କାରଣ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପଦକ୍ଷେପଗୁଡ଼ିକ ବିଷୟରେ ସେମାନେ ଅଜ୍ଞ ନଥିଲେ ମଧ୍ୟ ସେଗୁଡ଼ିକୁ ଆପଣାଛାଏଁ ଗ୍ରହଣ କରିବା ଲାଗି ସେମାନ ଆର୍ଥିକ ଦୃଷ୍ଟିରୁ ଅକ୍ଷମ । ଲଣ୍ଡନର 'ଦି ଟାଇମସ୍' ଉଚ୍ଚ ପଦାଧିକାରୀ ଡାକ୍ତରଙ୍କ ଦ୍ୱାରା ଲିଖିତ ତଥା ରଏଟର ଦ୍ୱାରା ତାର ବାର୍ତ୍ତା ଯୋଗେ ପ୍ରେରିତ ଗୋଟିଏ ପତ୍ରରୁ ଏହା ସ୍ପଷ୍ଟ ଜଣାପଡେ ଯେ ସମ୍ମିଳନୀ ବିବରଣୀର ସାରାଂଶରେ ମୋତିଲାଲଙ୍କ ଦ୍ୱାରା ଉତ୍‌ଥାପିତ ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟ ବ୍ୟବସ୍ଥାଗୁଡ଼ିକ ସଂପର୍କରେ କୌଣସି ଉଲ୍ଲେଖ ନଥିଲା । ତେବେ ତାଙ୍କର ଟିପ୍ପଣୀଗୁଡ଼ିକ କିଛିଟା ପ୍ରଭାବ ପକାଇଥିଲା । କାରଣ ତତ୍‌ପରବର୍ତ୍ତୀ ବର୍ଷ ରାଜକୀୟ ତଥା ପ୍ରାଦେଶିକ ବଜେଟ୍‌ରେ ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟ ସେବା ପାଇଁ କିଛିଟା ଅର୍ଥ ବରାଦ କରାଯାଇଥିଲା ଏବଂ ସେସବୁ ଆଦାୟ ହେଉଥିବା ଅର୍ଥ ଜିଲ୍ଲା ବୋର୍ଡମାନଙ୍କୁ ଦିଆଯିବାର ବ୍ୟବସ୍ଥା ହୋଇଥିଲା ।

ସଂସ୍କାରଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଉଦ୍ୟମ ଆରମ୍ଭ ହେବାପରେ ସାଧାରଣ ସେବାଗୁଡ଼ିକର ସଂସ୍କାର ପାଇଁ 1912 ମସିହାରେ ଏକ ରୟଲ କମିଶନ୍ ଗଠିତ ହୋଇଥିଲା । ସେଥିରେ ଆଠଜଣ ବ୍ରିଟିଶ ନାଗରିକ ଓ ତିନିଜଣ ଭାରତୀୟ ସଭ୍ୟ ଥିଲେ । ବ୍ରିଟେନ୍‌ର ସଭ୍ୟମାନଙ୍କ ମଧ୍ୟରେ ଥିଲେ ଲର୍ଡ ରୋନାଲଡ୍‌ସେ ଯିଏ କି କାର୍ମିଚେଲ୍‌ଙ୍କ ପରେ ବଙ୍ଗଳାର ଗଭର୍ଣ୍ଣର ରୂପେ ଉତ୍ତରାଧିକାରୀ ହୋଇ ଆସିବାର ଥିଲା; ଥିଓଡର ମରିସନ୍- ମୁସଲିମ୍ ବିଭାଗୀକରଣର ଜଣେ ଖ୍ୟାତନାମା ଦୃଢ ସମର୍ଥକ; ମିଃ ରାମ୍‌ସେ ମେକ୍‌ଡୋନାଲଡ୍- ସେତେବେଳେ କଂଗ୍ରେସର ଲଣ୍ଡନ କମିଟିର ସଭ୍ୟ ଏବଂ ଆଉ ଦୁଇଜଣ ସରକାରୀ କର୍ମଚାରୀ- ଫିସ୍‌ର ଏବଂ ସ୍ଲାଇ ନାମରେ କୌତୁହଳଜନକ ଭାବେ ଜଣାଶୁଣା ଥିଲେ । ଯେତେବେଳେ ସେହି କମିଶନ 1913 ମସିହା ଜାନୁଆରୀ ମାସରେ କଲିକତା ଆସିଥିଲା ସେତେବେଳକୁ ମୋତିଲାଲ ଏଭଳିଭାବରେ ପୀଡ଼ିତ ଥିଲେ ଯେ ତାଙ୍କ ନିକଟରେ ସାକ୍ଷ୍ୟ ଦେବାକୁ ଯିବାପାଇଁ ଶକ୍ତି ନଥିଲା । କିନ୍ତୁ ସେ ଗୋଟିଏ ଲିଖିତ ସ୍ମାରକ ପତ୍ର ପଠାଇଥିଲେ ଏବଂ ପତ୍ରିକାରେ କେତେଗୁଡ଼ିଏ ଲେଖା କ୍ରମାଗତଭାବେ ରଚନା କରିଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେଃ

1858 ରେ ରାଣୀ ଭିକ୍ଟୋରିଆଙ୍କ ଘୋଷଣାର ବିରୋଧାଚରଣ କରାଯାଇ ଭାରତୀୟମାନଙ୍କୁ, ଭାରତୀୟ ତଥା ପ୍ରାଦେଶିକ ସେବାମୂଳକ ଉଚ୍ଚ ପଦ ପଦବୀରେ ନିଯୁକ୍ତି ଦିଆଯିବାରୁ ବଞ୍ଚିତ କରାଯାଇଥିଲା;

ସାଧାରଣ ସେବା କ୍ଷେତ୍ରରେ ଅଙ୍ଗୀକାରବଦ୍ଧ ପ୍ରବେଶ ପାଇଁ ଏକା ସମୟରେ ଇଂଲଣ୍ଡ ଓ ଭାରତରେ ପରୀକ୍ଷା କରାଯିବା ଉଚିତ;

ଜିଲ୍ଲା କଲେକ୍ଟରମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଓ ଜିଲ୍ଲା ବିଚାରପତିମାନଙ୍କ ମଧ୍ୟରୁ ତିନି ଚତୁର୍ଥାଂଶ ଭାରତୀୟମାନଙ୍କ ପାଇଁ ସଂରକ୍ଷିତ ହେବା ଉଚିତ;

ପ୍ରାଦେଶିକ ସରକାରଙ୍କ ସଚିବମାନଙ୍କ ମଧ୍ୟରୁ ଦୁଇଜଣ ଏବଂ ସମସ୍ତ ଉପସଚିବ ଭାରତୀୟ ହେବା ଉଚିତ;

ପୁଲିସ୍ ବିଭାଗର ଜଣେ ଉପମହାନିର୍ଦ୍ଦେଶକ ଭାରତୀୟ ହେବା ଉଚିତ ଏବଂ ଜିଲ୍ଲା ପୁଲିସ ସୁପରିଟେଣ୍ଡେଣ୍ଟମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଭାରତୀୟ ହେବା ଉଚିତ ।

ସେ ମଧ୍ୟ ସରକାରୀ କର୍ମଚାରୀମାନଙ୍କ ଲାଗି କମ୍ ଦରମାହାର ଅନୁମୋଦନ କରିଥିଲେ ଏବଂ ବିଦେଶାଗତ ବ୍ରିଟିଶ ବିଶ୍ୱବିଦ୍ୟାଳୟଗୁଡ଼ିକର "ସୁନ୍ଦରତମ ପୁଷ୍ପ" ମାନଙ୍କର ସଂଖ୍ୟା କମ୍ କରାଇବା ଲାଗି ମଧ୍ୟ ମତ ପ୍ରକାଶ କରିଥିଲେ । ସେହି ସ୍ମାରକ ପତ୍ର ତଥା ମନ୍ତବ୍ୟଗୁଡ଼ିକ ପରକାଳରେ ଏକ ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା ଏବଂ ତାହା ଅତିଶୀଘ୍ର ବଜାରରୁ ବିକ୍ରୀ ହୋଇ ଯାଇଥିଲା । ତେବେ ସେହି କମିଟିର ସୁପାରିଶଗୁଡ଼ିକ ଯଥେଷ୍ଟ ରୂପେ ଉଦାର ମନୋବୃତ୍ତିର ପରିପ୍ରକାଶ କରାଇଥିଲେ ମଧ୍ୟ ପୁଣି 1920 ମସିହାରେ ଶାସନଗତ ସଂସ୍କାର ଉଦ୍ଦେଶ୍ୟରେ ପରାମର୍ଶ ଦେବାପାଇଁ ଆଉ ଗୋଟିଏ କମିଟି, ଯାହା ମଣ୍ଟେଗୁ ଚେମସ୍‌ଫୋର୍ଡ କମିଟି ରୂପେ ପରିଚିତ, ତାହା ଗଠିତ ହେବା ପର୍ଯ୍ୟନ୍ତ ଆଠବର୍ଷ କାଳ ସେଗୁଡ଼ିକୁ ଚପାଇ ରଖି ଦିଆଯାଇଥିଲା । ସେ ଯାହା ହେଲେ ବି, ଏପରିକି ସ୍ୱାଧୀନତା ପରେ ମଧ୍ୟ ଭାରତୀୟ ସରକାରୀ କର୍ମଚାରୀମାନଙ୍କ ଲାଗି ଉଚ୍ଚ ଦରମାହାର ଏବଂ ଅନ୍ୟାନ୍ୟ ସୁବିଧା ସୁଯୋଗ ସବୁ ଯୋଗାଇ ଦିଆଯାଇଥିଲା ।

୨

# ବାରଃ ପର୍ବତର ମୂଷିକ ପ୍ରସବ

1912 ମସିହା ବେଳକୁ ଗୋପନୀୟ ଭାବେ ହେଉଥିବା ବିଦ୍ରୋହାତ୍ମକ କାର୍ଯ୍ୟକଳାପଗୁଡିକ ସରକାରଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାରେ ପରିଣତ ହୋଇ ଯାଇଥିଲା । ଭାଇସରାୟ ଲର୍ଡ ହାର୍ଡିଞ୍ଜଙ୍କ ଉପରେ ବୋମା ଆକ୍ରମଣ ଯେ ସେହି ସମସ୍ତ କାର୍ଯ୍ୟକଳାପର ଶେଷ କିମ୍ବା ତାହା ଯେ ଶେଷ ଲକ୍ଷ୍ୟବିନ୍ଦୁ ହାସଲ କରିବା ଦିଗରେ ସମର୍ଥ ହୋଇଥିଲା ତାହା ନୁହେଁ, ଅପରାଧୀମାନେ ମଧ୍ୟ ସେହି ଘଟଣାର କୌଣସି ସୂତ୍ର ପୁଲିସ ପାଇଁ ନଛାଡି ଉଭେଇ ଯାଇଥିଲେ । ସେମାନଙ୍କୁ ଧରିବା ପାଇଁ ଗୋଇନ୍ଦା ପୁଲିସଙ୍କୁ ଆପାତତଃ ଦୁଇ ବର୍ଷ ସମୟ ଲାଗି ଯାଇଥିଲା । ଇତି ମଧ୍ୟରେ ବଙ୍ଗଳାରେ ରାଜନୈତିକ ଡକାୟତିମାନ ସଂଗଠିତ ହୋଇ ଯାଇଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଚିହ୍ନଟ କରାଯାଇ ପାରି ନଥିଲା । ଭାରତ ସରକାର ଏତେ ମାତ୍ରାରେ ପ୍ରଚଣ୍ଡ ହୋଇ ଉଠିଥିଲେ ଯେ ଏପରିକି ସୁରେନ୍ଦ୍ରନାଥ ବାନର୍ଜୀଙ୍କୁ ବାଦ ନ ଦେଇ ପ୍ରତ୍ୟେକ ବଙ୍ଗାଳୀ ଲୋକଙ୍କୁ ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ପରୋକ୍ଷ କିମ୍ବା ପ୍ରତ୍ୟକ୍ଷ ଭାବେ ଜଡିତ ଥିବାର ସନ୍ଦେହ କରିଥିଲେ । କ୍ରେଡକ୍‌ଙ୍କ ନିର୍ଦ୍ଦିଷ୍ଟ ମତାମତ, ଯାହା ତତ୍‌କାଳୀନ ଉଚ୍ଚ କ୍ଷମତାଧାରୀମାନଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଥିଲା, ସେଥିରେ ଧାରଣା ପୋଷଣ କରାଯାଇ ଥିଲା ଯେ ସେଗୁଡିକ ସବୁ ବେକାର ଯୁବକମାନଙ୍କ କୌଣସି କାର୍ଯ୍ୟ ହାସଲ କରିବା ଦିଗରେ ବିଫଳତା-ଜନିତ ପରିଣାମ ଏବଂ ସେସବୁର ଦୃଢ ମୁକାବିଲା ଫଳରେ ତାହାକୁ ନିଶ୍ଚିହ୍ନ କରାଯାଇ ପାରିବ । ସ୍ୱଦେଶୀ ଆନ୍ଦୋଳନର ଦଳଗୁଡିକରେ ଗୁପ୍ତ ଷଡଯନ୍ତ୍ର ପାଇଁ ଉଦ୍ଦିଷ୍ଟ ବିଚାର ଭଳି ଦମନମୂଳକ ପଦକ୍ଷେପଗୁଡିକ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ ଶାରୀରିକ ଏବଂ ନୈତିକ ସଂସ୍କୃତିର ପରିପୁଷ୍ଟତା ପାଇଁ ଗଠିତ ହୋଇଥିବା ଯୁବ ଅନୁଷ୍ଠାନଗୁଡିକୁ ବେଆଇନ ଘୋଷଣା କରାଯାଇଥିଲା । ପରିଣାମ ସ୍ୱରୂପ ବିଦ୍ରୋହାତ୍ମକ ଅନୁଷ୍ଠାନଗୁଡିକ ଗୋପନୀୟ ଭାବେ ବିସ୍ତାର ଲାଭ କରିଥିଲା । ଆନ୍ଦୋଳନର ଆଦର୍ଶଗତ ଭିତ୍ତିଗୁଡିକ ପ୍ରତି ସ୍ୱୀକୃତି ପ୍ରଦାନ କରୁଥିବା କାର୍ମିଚେଲଙ୍କୁ କୌଣସି ଗୁରୁତ୍ୱ ଦିଆଯାଇ ନଥିଲା । ତେଣୁ ତାହାଙ୍କ ପରାମର୍ଶର ବ୍ୟତିକ୍ରମ କରି ପୁଲିସର ଗୋଇନ୍ଦା ବିଭାଗ ପ୍ରାୟତଃ ଅଖଣ୍ଡ କ୍ଷମତାର ଅଧିକାରୀଭାବେ ବ୍ୟାପକ ଗିରଫଦାରୀ ଚଳାଇଥିଲେ । ଯେଉଁମାନଙ୍କର ଅପରାଧ କଚେରୀରେ ଗ୍ରହଣ-ଯୋଗ୍ୟ ସାକ୍ଷ୍ୟ ଦ୍ୱାରା ପ୍ରମାଣିତ ହୋଇ ପାରିବାର ସମ୍ଭାବନା ନଥିଲା ସେହିଭଳି ସନ୍ଦେହଯୁକ୍ତ ବ୍ୟକ୍ତି-ମାନଙ୍କୁ ଦୀର୍ଘକାଳ ବିଚାରାଧୀନ ବନ୍ଦୀ ରୂପେ ରଖୁଥିଲେ । ଏହି ବେନିୟମମୂଳକ କାର୍ଯ୍ୟକଳାପଗୁଡିକ ଏଭଳି ଭାବରେ ସୁସ୍ପଷ୍ଟ ଏବଂ ସୁନିର୍ଦ୍ଦିଷ୍ଟ ଥିଲା ଯେ ଅପରାଧୀମାନଙ୍କ ଆଇନ ପରାମର୍ଶଦାତା ରୂପେ ଥିବା

ଓକିଲ ସଂଘର ବରିଷ୍ଠ ନେତାମାନେ ନିର୍ଦ୍ଦୋଷରେ ସେମାନଙ୍କୁ ଖଲାସ କରାଇଦେବା ଦିଗରେ ବିଶେଷ କଷ୍ଟ ସ୍ୱୀକାର କରିବାକୁ ପଡୁନଥିଲା । ସେହିଭଳି ଗୋଟିଏ ଉଦାହରଣ ଥିଲା 1910 ମସିହାରେ ହାଓଡା ଷଡଯନ୍ତ୍ର ମକଦ୍ଦମା । ସେହି ଘଟଣାରେ ପଶ୍ଚିମ ଓ ଉତ୍ତର ବଂଗଳାର ବିସ୍ତୃତ ଅଞ୍ଚଳରୁ ସନ୍ଦେହ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ଏକତ୍ରିତ କରାଯାଇଥିଲା । ସରକାରଙ୍କ ସେଭଳି କାର୍ଯ୍ୟକଳାପ ଯତୀନ୍ ମୁଖାର୍ଜୀଙ୍କ ନେତୃତ୍ୱରେ ବିଦ୍ରୋହାତ୍ମକ ସଂଗଠନକୁ ଘନୀକରଣ କରିବାରେ ସହାୟକ ହୋଇଥିଲା । ପରେ ପରେ – ପ୍ରଥମ ବିଶ୍ୱ ଯୁଦ୍ଧ ସମୟରେ ଜର୍ମାନର ଅର୍ଥ ତଥା ଅସ୍ତ୍ରଶସ୍ତ୍ର ସହାୟତା କ୍ରମେ ତାହା ସୁପରିକଳ୍ପିତ ଏକ ବିଦ୍ରୋହ କରିବା ପାଇଁ ଉଦ୍ୟମ କରିଥିଲା ।

1913 ମସିହା ମଇ ମାସରେ ବଙ୍ଗଳା ଗୋଇନ୍ଦା ବିଭାଗର ସମ୍ବାଦ ସଂଗ୍ରହ ଶାଖା ବରିଶାଲ ଜିଲ୍ଲାରେ କେତେକ ଡକାୟତଙ୍କ ଅନୁଗମନକରି ସମ୍ରାଟଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ଯୋଜନା କରୁଥିବା ଏକ ବିରାଟ ଷଡଯନ୍ତ୍ରକୁ ପ୍ରକାଶ କରାଇ ଦେଇଥିଲେ ବୋଲି ଦାବୀ କରିଥିଲା । ଏକ ସ୍ଥାନୀୟ ବିଚାରାଳୟରେ ସେଇ ସଂପର୍କରେ ଗୋଟିଏ ମକଦ୍ଦମା ଦାଏର ହୋଇଥିଲା । ସେହି ଦୁଷ୍କର୍ମର ସହଯୋଗୀ ରୂପେ ଅଭିଯୁକ୍ତ କରାଯାଇ ସମଗ୍ର ପୂର୍ବ ବଙ୍ଗର ପ୍ରାୟ ସବୁ ଜିଲ୍ଲାରୁ ତଥା କଲିକତାରୁ ଚଉରାଳିଶ ଜଣ ଯୁବକଙ୍କୁ ଗିରଫ କରାଯାଇଥିଲା । ସେହି ମକଦ୍ଦମାର ବିଚାର ପାଇଁ ସହଜରେ ପ୍ରବେଶ କରି ନପାରିବା ଭଳି ଏକ କ୍ଷୁଦ୍ର ସହରର ନିର୍ବାଚନ ହିଁ ଥିଲା ବିଶେଷ ଉଲ୍ଲେଖଯୋଗ୍ୟ । ପୁଣି କହିବାକୁ ଗଲେ, ବିଚାରର ପଦ୍ଧତି ମଧ୍ୟ ଥିଲା ଅତି ଅସାଧାରଣ ଭାବେ ସ୍ୱତନ୍ତ୍ର । ଏଥିରେ ସନ୍ଦେହ ନଥିଲା ଯେ ପୁଲିସ ପ୍ରକୃତରେ ବିଦ୍ରୋହୀ ଗୋଷ୍ଠୀଗୁଡ଼ିକର କେତେକ ସଭ୍ୟଙ୍କୁ ଗିରଫ କରି ନେଇଥିଲେ । କିନ୍ତୁ ପ୍ରକାଶ୍ୟ ଭାବେ ଗୋଟିଏ ହାନିଜନକ କାର୍ଯ୍ୟକଳାପ ସହିତ ସେମାନଙ୍କ ସଂପର୍କ ପ୍ରମାଣିତ କରିବା, ମକଦ୍ଦମା ଦୃଷ୍ଟିରୁ ସହଜସାଧ୍ୟ ନଥିଲା । ଅଭିଯୁକ୍ତମାନଙ୍କ ମଧ୍ୟରେ ଥିଲେ ନବଯୁବକ ଛାତ୍ରଗଣ । ସେମାନଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ଦରଖାସ୍ତର ନକଲ କିମ୍ବା ଅଭିଯୋଗ ବିବୃତିର ନକଲ ସେମାନଙ୍କୁ ଦିଆ ଯାଇନଥିଲା ଏବଂ ସେମାନଙ୍କ ହାତରେ ହାତକଡା ପିନ୍ଧାଇ ତଥା ରସି ଲଗାଇ ସହରର ପରିକ୍ରମା କରାଯାଇଥିଲା । ନ୍ୟାୟମୂଳକ ନୀତିଗୁଡ଼ିକର ସଂପୂର୍ଣ୍ଣ ବିରୁଦ୍ଧାଚରଣ କରୁଥିବା ତଥା "ବର୍ତ୍ତମାନ ଗୋଇନ୍ଦା ବିଭାଗର କାର୍ଯ୍ୟକଳାପଗୁଡ଼ିକ ଲୋମହର୍ଷଣକାରୀ ଏବଂ ଭୟ ସଂଚାରକ ହେଉଥିବା" ପୁଲିସର ଗତିବିଧିଗୁଡ଼ିକୁ 'ପତ୍ରିକା' ତୀବ୍ର ସମାଲୋଚନା କରିଥିଲା । "ଜଣେ ଆଶ୍ଚର୍ଯ୍ୟ ହେବ" – ଏହା ଅଧିକତର ଭାବେ ଲକ୍ଷ୍ୟ କରିଥିଲା ଯେ– "ଯଦିଓ ସମଗ୍ର ଜାତି ନୁହେଁ, ତଥାପି ଅଧିକ ସଂଖ୍ୟକ ଲୋକ କ୍ରମଶଃ ସେହି ଷଡଯନ୍ତ୍ରରେ ଜଡିତ ହେବାଁଲାଗି ଆକାଂକ୍ଷିତ ହୋଇ ଉଠିବେ ଏବଂ ସମଗ୍ର ଦେଶର ଅବସ୍ଥା ପରିବର୍ତ୍ତିତ ହେବ ।" ପତ୍ରିକା କାର୍ମିକେଲ୍ଙ୍କ ହୃଦବୋଧ କରାଇବା ପାଇଁ ଅନୁରୋଧ ଜଣାଇ ଥିଲା ଯେ ଅଭିଯୁକ୍ତମାନଙ୍କ ବିରୁଦ୍ଧରେ ଆପାତତଃ ଦୃଶ୍ୟମାନ ଗୋଟିଏ ମକଦ୍ଦମା ଦାଏର କରାଯାଇଥିଲା ଏବଂ ସେହି ଦୃଷ୍ଟିରୁ ସେମାନଙ୍କୁ ନିଜ ନିଜର ଆତ୍ମରକ୍ଷା ପାଇଁ ସମସ୍ତ ସୁବିଧା ଦିଆଯିବା ଆବଶ୍ୟକ । "ସେହି ଅଭିଯୋଗର ଅନୁସନ୍ଧାନ ପାଇଁ ସରକାର ସୀମାହୀନ ଭାବେ ସମ୍ବଳଗତ ସମର୍ଥନ ଯୋଗାଇ ଦେଇ ପାରିବେ । କିନ୍ତୁ ସେହି ଗରିବ ହତଭାଗ୍ୟ ପ୍ରତିବାଦୀଗଣ କେବଳ ଧନ ଏବଂ ବନ୍ଧୁତ୍ୱର ଅଭାବ ଅନୁଭବ କରୁ ନାହାନ୍ତି,

ସେମାନଙ୍କ ନିକଟରୁ ବ୍ୟକ୍ତିଗତ ସ୍ୱାଧୀନତାସବୁକୁ ମଧ୍ୟ ଅପହରଣ କରି ନିଆଯାଇଛି । ସେହି କାରଣରୁ ଏହି ଯୁଦ୍ଧ ଅତିମାତ୍ରାରେ ଅସମାନ ପକ୍ଷଙ୍କ ମଧ୍ୟରେ ଅନୁଷ୍ଠିତ ହେଉଛି ଏବଂ ଯଦି ପ୍ରକୃତରେ ସେମାନେ ନିରୀହ ତାହେଲେ ସରକାର ସେମାନଙ୍କୁ ସେମାନଙ୍କ ଚରିତ୍ରଗତ ସାଧୁତା ପ୍ରତିପାଦନ କରିବାପାଇଁ ଯଥାଯୋଗ୍ୟ ସୁଯୋଗ ଦେବା ଉଚିତ ।'' ନ୍ୟାୟଯୁକ୍ତ, ବ୍ରିଟିଶ ଆଇନକାନୁନ୍‌ର ଭିତ୍ତିଭୂମି ଦୃଷ୍ଟିରୁ ମୋତିଲାଲ ତାହାଙ୍କର ଯୁକ୍ତି ଉପସ୍ଥାପିତ କରିଥିଲେ ଯେଉଁଥିରେ ଥିଲା, ଗୋଟିଏ ଲୋକ ଦୋଷୀ ସାବ୍ୟସ୍ତ ହେବା ପର୍ଯ୍ୟନ୍ତ ତାହାକୁ ନିରୀହ ଭାବରେ ଗ୍ରହଣ କରାଯିବା ଉଚିତ । ଭାରତୀୟ ସାଧାରଣ ଜନମତ ସ୍ପଷ୍ଟ ଏବଂ ସାମଗ୍ରିକ ଭାବରେ ମୋତିଲାଲଙ୍କ ସପକ୍ଷରେ ଥିବାବେଳେ ଲୋହିତ ଭାରତୀୟ ଖବରକାଗଜଗୁଡିକ କ୍ରୋଧାନ୍ୱିତ ହୋଇ ଆକ୍ଷେପ କରିଥିଲେ ଯେ ପୁଲିସ୍‌ର ଚରିତ୍ର ସମାଲୋଚନା କରି ମୋତିଲାଲ ସରକାରଙ୍କ ଅବମାନନା କରିଛନ୍ତି ।

ଏହି ସୁଯୋଗକୁ ସରକାର ସଙ୍ଗେ ସଙ୍ଗେ ଗ୍ରହଣକରି ମୋତିଲାଲ ଏବଂ ପତ୍ରିକାର ପ୍ରକାଶକ ତଥା ମୁଦ୍ରକଙ୍କ ଉପରେ ବିଚାରାଳୟ ଅବମାନନା କରିବା ଅଭିଯୋଗ ଆରୋପ କରିଥିଲେ । ସେହି ମକଦ୍ଦମାର ବିଚାର ପାଇଁ କଲିକତା ହାଇକୋର୍ଟର ଏକ ସ୍ୱତନ୍ତ୍ର ବେଞ୍ଚ ଗଠନ କରାଯାଇଥିଲା । ସେଥିରେ ଅନ୍ତର୍ଭୁକ୍ତ ଥିଲେ ମୁଖ୍ୟ ବିଚାରପତି ରୂପେ ମିଃ ଜେନ୍‌କିନ୍‌ସ ଏବଂ ବିଚାରପତିରୂପେ ମି. ଷ୍ଟିଫେନ୍ ଏବଂ ଆଶୁତୋଷ ମୁଖାର୍ଜୀ । ଆଡଭୋକେଟ୍ ଜେନେରାଲ୍ କେନେରିକ୍ ସରକାରଙ୍କ ପ୍ରତିନିଧିତ୍ୱ କରୁଥିବାବେଳେ ପ୍ରତିବାଦୀମାନଙ୍କ ତରଫରୁ ପ୍ରତିଷ୍ଠିତ ଆଇନଜ୍ଞମାନେ ପ୍ରତିନିଧିତ୍ୱ କରୁଥିଲେ । ଗୋଟିଏ ପତ୍ରିକାର ସଂପାଦକଙ୍କ ନାମ ସେଥିରେ ବାଧ୍ୟବାଧକତା ରୂପେ ଘୋଷଣା କରାଯିବାଲାଗି ସେତେବେଳେ କୌଣସି ଆଇନକାନୁନ୍ ନଥିବାରୁ ମୋତିଲାଲଙ୍କୁ ପତ୍ରିକାର ସଂପାଦକ ତଥା ପ୍ରଚାରକରୂପେ ପ୍ରତିଷ୍ଠିତ କରାଇବା ପାଇଁ ମୁଖ୍ୟ ବିଚାରପତି ଅନୁସନ୍ଧାନକାରୀମାନଙ୍କଠାରୁ ପ୍ରମାଣ ଦାବୀ କରିଥିଲେ । ସେଭଳି ପ୍ରମାଣ ଯୋଗାଇ ଦିଆଯାଇ ନ ପାରିବାରୁ କୋର୍ଟ ମକଦ୍ଦମାଟିକୁ କ୍ଷତିପୂରଣ ଦିଆଯିବା ଲାଗି ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ଖାରଜ କରି ଦେଇଥିଲା । ବିଚାରପତିମାନେ ଦୃଢ଼ମତ ପ୍ରକାଶ କରିଥିଲେ ଯେ ''ତାହାଙ୍କ (ମୋତିଲାଲଙ୍କ) ଉପରେ ଦାୟିତ୍ୱ ଦୃଢ଼ କରିବା ପାଇଁ ଆବଶ୍ୟକ ତଥ୍ୟାବଳୀର ସଂପୂର୍ଣ୍ଣ ଅଭାବ ଥିଲା ।'' ମୁଦ୍ରକ ତଥା ପ୍ରକାଶକଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମା ମଧ୍ୟ ଠିକ୍ ସେହିଭଳି ଭାବରେ ଖାରଜ ହୋଇଥିଲା, କାରଣ ''କୌଣସି ପ୍ରକାର ଅବମାନନାମୂଳକ କାର୍ଯ୍ୟକଳାପର ସାରାଂଶ ଆମ୍ଭମାନଙ୍କ ନିକଟରେ ପ୍ରତିପାଦିତ ହୋଇ ପାରିନଥିଲା ।'' ଜଷ୍ଟିସ୍ ମୁଖାର୍ଜୀ ମତ ଦେଇଥିଲେ ଯେ କୌଣସି ପ୍ରକାର ଅବମାନନା ସେମାନଙ୍କ ଦ୍ୱାରା କରାଯାଇ ନଥିଲା ।

ତାପରେ ସର୍ବୋଚ୍ଚ ସରକାର କୋର୍ଟ ଅବମାନନା ବିଲ୍ ପ୍ରୟୋଗ କରିଥିଲେ । ଅନ୍ୟାନ୍ୟ ଧାରା ମଧ୍ୟରେ ପ୍ରତ୍ୟେକ ଖବରକାଗଜର ପ୍ରତିଲିପିରେ ତାହାର ସଂପାଦକଙ୍କ ନାମ ପ୍ରକାଶ କରିବାପାଇଁ କୁହା-ଯାଇଥିଲା । ତେବେ ବିଭିନ୍ନ କାରଣରୁ ସେହି ବିଲ୍‌ଟି ପାସ୍ ହେବାଲାଗି ବାରବର୍ଷ କାଳ ଲାଗି ଯାଇଥିଲା । ହାଇକୋର୍ଟର ରାୟ ଭାରତୀୟ ଜାତୀୟବାଦୀମାନଙ୍କ ପାଇଁ ଏକ ବୈଧାନିକ ବିଜୟ ଥିଲା । ତେବେ 'ଦି ଇଙ୍ଗଲିସ୍‌ମ୍ୟାନ୍' ଦ୍ୱାରା ପ୍ରତିନିଧିତ୍ୱ ହେଉଥିବା ବିରୋଧିକାରୀ ଶକ୍ତି - ବିଶେଷ କରି

ବ୍ରିଟିଶମାନଙ୍କ ନିକଟରେ ଏହା "ସରକାରଙ୍କ ଲାଗି ଏକ ଦାରୁଣ ଧକ୍କା ଥିଲା – ଯେଉଁମାନେ ଏହାକୁ (ହାଇକୋର୍ଟକୁ) ପ୍ରତିଷ୍ଠା କରିଥିଲେ ।" ଏହା ଅଧିକତର ଭାବେ ଉତ୍ସାହ "ଜାତୀୟବାଦୀ ତଥା ଚରମପନ୍ଥୀମାନଙ୍କ ପାଇଁ ସ୍ୱାଭାବିକ ଲାଭ କରାଇ ଦେଇଥିଲା ଯାହା ସେମାନଙ୍କ ଦ୍ୱାରା ପ୍ରତ୍ୟେକଥର ବିଜୟ ବେଳେ ଲାଭ ହେଉଥିଲା ।"

"ପତ୍ରିକା'ର ସମ୍ପାଦକ" ଏଥିରେ ଯୋଗ ହୋଇଥିଲା, "ଜଣେ ଖଳ ପ୍ରକୃତିର ଭୂତ ଭଳି ମନେ ହୋଇଥାନ୍ତି – ହାଇକୋର୍ଟ ଅନୁଯାୟୀ ସେ ମଧ୍ୟ କୌଣସି ନାମବିହୀନ ଗୋଟିଏ ଅପଛାୟା; ଯେହେତୁ ତୀର ନିକ୍ଷେପ କରିବା ପରେ ସେ ବିଶେଷ ଆନନ୍ଦିତ ହୋଇନଥାନ୍ତି ଏବଂ ସେଇ ତୀରଗୁଡ଼ିକ ମିତ୍ର କିମ୍ବା ଶତ୍ରୁଙ୍କୁ ବିଦ୍ଧ କଲା କି ନାହିଁ ସେହି ବିଷୟରେ ମଧ୍ୟ ବେଶ ଉଦାସୀନ ରହିଥାନ୍ତି ।"

ତଥାପି, ଉଦାରପନ୍ଥୀ ବ୍ରିଟିଶ ଭାରତୀୟ ମତାମତଗୁଡ଼ିକ ସେହି ଫଳାଫଳର ପ୍ରଶଂସା କରିଥିଲା । ସାପ୍ତାହିକ ପତ୍ରିକା 'ଦି କ୍ୟାପିଟାଲ୍' ଟିପ୍ପଣୀ ଦେଇଥିଲା ଯେ ପର୍ବତଟି ଗୋଟିଏ ବିକୃତାକାର ମୂଷିକ ପ୍ରସବ କରିଥିଲା । ସରକାରୀ ନୀତିସମୂହକୁ ଅସ୍ୱୀକାର କରି ଅତି ମାରାତ୍ମକ ଭାବେ ମତାମତ ପ୍ରକାଶ କରି ମଧ୍ୟ ବ୍ରିଟେନ୍‌ର ସମ୍ବାଦପତ୍ରଗୁଡ଼ିକ ଉପଭୋଗ କରୁଥିବା ସ୍ୱାଧୀନତା ତଥା ବିଭିନ୍ନ ଅବ୍ୟାହତି ବିଷୟ ତାହା ଉଦ୍ଧାର କରିଥିଲା ଏବଂ ଉଲ୍ଲେଖ କରିଥିଲା –

"ଆୟାର୍ଲାଣ୍ଡର ସ୍ୱାୟତ୍ତ ଶାସନ ପାଇଁ ଇଂଲଣ୍ଡର ରକ୍ଷଣଶୀଳ ଖବରକାଗଜଗୁଡ଼ିକ ଦ୍ୱାରା ହେଉଥିବା ସାମ୍ପ୍ରଦାୟିକତାମୂଳକ ବିରୋଧ; ତଥା ସେମାନଙ୍କ ଅନୁକରଣକାରୀ ଲୋହିତ ଭାରତୀୟମାନଙ୍କଠାରୁ ଭାରତୀୟ ଖବରକାଗଜଗୁଡ଼ିକ ଅନେକ କିଛି ଶିକ୍ଷା ଲାଭ କରି ପାରିଛନ୍ତି । ଏମାନେ ଅଭିଶାପ ଏବଂ ଈଶ୍ୱର ନିନ୍ଦା କରିବା ଦଣ୍ଡରୁ କେବେ ଅବ୍ୟାହତି ପାଇବେ କେଜାଣି; କାରଣ କମନ୍‌ସ ସଭାର ଅଧିକାଂଶ ସଭ୍ୟଙ୍କ ସମର୍ଥନ ଥିବା ଗୋଟିଏ ନିର୍ଦ୍ଦିଷ୍ଟ ନୀତିକୁ ମଧ୍ୟ ସେମାନେ ଚାହାନ୍ତି ନାହିଁ ଏବଂ ଏପରିକି ଆହୁରି ଅଧିକ ଦୂର ଅଗ୍ରସର ହୋଇ ସଶସ୍ତ୍ର ବିଦ୍ରୋହ ଲାଗି ମଧ୍ୟ ଉତ୍ସାହିତ କରିପାରନ୍ତି । ସେହିଭଳି କ୍ଷେତ୍ରରେ, ଉତ୍ତେଜିତ ଭାବେ ଏବଂ ବାଗ୍ମୀତାପୂର୍ଣ୍ଣ ବିରୋଧାତ୍ମକ ପଦକ୍ଷେପ ନେଉଥିବା ଗୋଟିଏ ଭାରତୀୟ ଖବରକାଗଜକୁ ନିନ୍ଦା କରାଯିବା ଉଚିତ ନୁହେଁ । କାରଣ, ସଠିକ୍ ଭାବରେ ହେଉ କିମ୍ବା ଭ୍ରମାତ୍ମକ ଭାବରେ ହେଲେ ମଧ୍ୟ ନିଷ୍ଠାପର ଭାବରେ ତାହା ଚିନ୍ତା କରିଥାଏ ଯେ ସେହିଭଳି ସରକାରୀ କାର୍ଯ୍ୟକଳାପଗୁଡ଼ିକ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଶାନ୍ତିର ବିପର୍ଯ୍ୟୟ ସାଧନ କରିବ - - - ମୁଖ୍ୟ ବିଚାରପତି ତଥା ତାଙ୍କ ସହକର୍ମୀମାନଙ୍କ ଯୁକ୍ତିଯୁକ୍ତ ତଥା ଆଇନଗତ ନ୍ୟାୟ ବିଚାରକୁ ଆମେ ଆନନ୍ଦର ସହିତ ଗ୍ରହଣ କରୁଛୁ । ଆହୁରି ମଧ୍ୟ; ଖବରକାଗଜଗୁଡ଼ିକ ପାଇଁ ଏଇଥି ଲାଗି ଏକ ଶକ୍ତିଶାଳୀ, ସମର୍ଥନାତ୍ମକ ନିଦର୍ଶନ ଯେ ସେଗୁଡ଼ିକ ପ୍ରତି ଭାରତୀୟ ଅମଲାତନ୍ତ୍ର ବିଶେଷ ରୂପେ ପରଶ୍ରୀକାତର ତଥା ତାହାର ଉଚ୍ଛେଦ ପାଇଁ ବିଶେଷ ଯତ୍ନଶୀଳ । ସେସବୁ ଦୃଷ୍ଟିରୁ ଆମ୍ଭେ ସେହି ସାମ୍ବାଦିକଙ୍କ ପ୍ରତି ଦୟାର୍ଦ୍ର ଯିଏ ସାରା ରେଜିନାଲ୍ଡ କ୍ରେଡକ୍, ଘରୋଇ ବିଭାଗର ଦାୟିତ୍ୱରେ ଥିବା ପର୍ଯ୍ୟନ୍ତ ସିମଳା କିମ୍ବା ଦିଲ୍ଲୀରେ ଗୋଟିଏ ସ୍ପଷ୍ଟବାଦୀ ଖବରକାଗଜ ଔଦ୍ଧତ୍ୟପୂର୍ଣ୍ଣ ଭାବେ ଚଳାଇ ପାରିବ । ହୁଏତ ସେଭଳି

କୌଣସି ଲୋକ ଜନ୍ମ ହୋଇ ନାହାନ୍ତି ବୋଲି କହିବା ଉଚିତ ହେବ ।''

କର୍ଜନ୍‌ଙ୍କ ଭଳି କ୍ରେଡକ୍ ମଧ୍ୟ ବଙ୍ଗଳାରେ ଶୃଙ୍ଖଳା ରକ୍ଷା କରିବାଲାଗି ପନ୍ଥା ସ୍ୱରୂପ ସେନା ବାହିନୀ ଉପରେ ହିଁ ନିର୍ଭର କରିଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ କଲିକତା ବିଶ୍ୱବିଦ୍ୟାଳୟ ବିଦ୍ରୋହାତ୍ମକ ଜୀବାଣୁଗୁଡ଼ିକୁ ପରିବ୍ୟାପ୍ତ କରାଇବା ଲାଗି ଦାୟୀ । କାରଣ ତାହାର ପରିସୀମା ଗୌହାଟି-ଠାରୁ ଆରମ୍ଭକରି ଲାହୋର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ଏବଂ ତାହା ଜାତୀୟବାଦୀ ଚିନ୍ତାଧାରା ସମ୍ପନ୍ନ ଅଧ୍ୟାପକମାନଙ୍କୁ ନିଯୁକ୍ତି ଦେବା ନୀତି ଗ୍ରହଣ କରିଥିଲା । ବିଶ୍ୱବିଦ୍ୟାଳୟଟି ସେତେବେଳେ ସର୍ବୋଚ୍ଚ ସରକାରଙ୍କ କର୍ତ୍ତୃତ୍ୱାଧୀନ ଥିଲା । ତେଣୁ 1913 ମସିହାର ମଧ୍ୟଭାଗରେ ଗୋଟିଏ ପ୍ରସ୍ତାବ ଦିଆଯାଇଥିଲା ଯେ ମାଧ୍ୟମିକ ସ୍କୁଲଗୁଡ଼ିକୁ ସ୍ୱୀକୃତି ଦେବା କ୍ଷମତା ବିଶ୍ୱବିଦ୍ୟାଳୟ ଅଧୀନରୁ ପ୍ରତ୍ୟାହାର କରି ନିଆଯାଇ ତାହା ସରକାରଙ୍କ ହାତରେ ଅର୍ପଣ କରାଯାଉ । ବଙ୍ଗଳା ପାଇଁ ଜଣେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଇଂଲଣ୍ଡରୁ ଆସିଥିଲେ । ବଙ୍ଗ ସରକାରଙ୍କ ସମ୍ମତିକ୍ରମେ ବିଶ୍ୱବିଦ୍ୟାଳୟର ତିନିଜଣ ପ୍ରଖ୍ୟାତ ଶିକ୍ଷାବିତ୍ - ଅବ୍‌ଦୁଲ୍ଲ ରସୁଲ, ଅବ୍‌ଦୁଲାଲ୍ଲ ମାମୁନ୍ ସୁହ୍ରାୱର୍ଦ୍ଦି ଏବଂ କେ.ପି. ଜୟସ୍ୱାଲଙ୍କ ନିଯୁକ୍ତିକୁ ବାତିଲ କରି ଦିଆ ଯାଇଥିଲା । କାରଣ ସ୍ୱରୂପ ଦର୍ଶାଇ ଦିଆଯାଇ ଥିଲା ଯେ ସେମାନେ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । 'ପତ୍ରିକା' ମନ୍ତବ୍ୟକ୍ତ କରିଥିଲା – ''ନୂତନ ଶିକ୍ଷା ନୀତିର ଅର୍ଥ, ସରକାରୀ କଳ ତଥା ଅଫିସରମାନଙ୍କ ଇସ୍ପାତ ଭଳି ହାତମୁଠାକୁ ଆହୁରି ଅଧିକ ଶକ୍ତିଶାଳୀ କରିବା ବ୍ୟତୀତ ଅନ୍ୟ କିଛି ହୋଇ ନପାରେ । ଏହା ସମ୍ପୂର୍ଣ୍ଣରୂପେ ଆମ୍ଭମାନଙ୍କର ପିଲାମାନଙ୍କ ପାଇଁ ଶିକ୍ଷା କ୍ଷେତ୍ରରେ ଦାରୁଣ ଦୁର୍ବିପାକ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ପରମ୍ପରାକୁ ମଧ୍ୟ ବ୍ୟାହତ କରୁଛି ।'' – ଏହା ଯଥାର୍ଥଭାବେ ଐକ୍ୟତାନ ରକ୍ଷା କରିପାରୁଥିବା ଜନମତକୁ ପ୍ରତିଫଳିତ କରିଥିଲା । ଏକ ବିଶାଳ ଜନସଭା କଲିକତାର ଟାଉନ୍ ହଲଠାରେ ଅନୁଷ୍ଠିତ ହୋଇଥିଲା ଯେଉଁଥିରେ ସବୁ ମତବାଦର ନେତୃବୃନ୍ଦ ଯୋଗ ଦେଇଥିଲେ । ସେଥିରେ ଯଥାର୍ଥଭାବେ ବଙ୍ଗଳାର ପ୍ରତିବାଦ ପ୍ରକାଶ ପାଇଥିଲା । ସେହି ସମ୍ମିଳନୀରେ ଗୃହୀତ ପ୍ରସ୍ତାବରେ ଘୋଷଣା କରା ଯାଇଥିଲା ଯେ ''ତଥାପି ବିଭାଗୀକରଣ ମନୋବୃତ୍ତିର ପ୍ରାଚୁର୍ଯ୍ୟ'' ପରିଲକ୍ଷିତ ହେଉଛି । ସେହି ସାଧାରଣ ସଭାରେ ମୋତିଲାଲଙ୍କ ଭାଷଣ ଥିଲା ସ୍ପଷ୍ଟ, ଯଦି ତାହାଙ୍କୁ କୌଣସି ବିଦ୍ରୋହାତ୍ମକ କାର୍ଯ୍ୟକଳାପଜନିତ ମକଦ୍ଦମାରେ ଜଡ଼ିତ କରାଯାଇ ନଥିଲା, ଏହାର କାରଣ ଥିଲା ଯେ କର୍ମକର୍ତ୍ତାମାନେ ତାହାର ସମ୍ଭାବନାମୟ ପରିଣତି ପ୍ରତି ଭୟଭୀତ ହୋଇ ପଡ଼ିଥିଲେ । ମୋତିଲାଲ ଲକ୍ଷ୍ୟ କରିଥିଲେ :

''ଯେଉଁ ସ୍ତ୍ରୀ ଲୋକ ଗୋଟିଏ ଛୁଆକୁ ତା' ନିଜର ମାଆ ଆପେକ୍ଷା ଅଧିକ ସ୍ନେହ ପ୍ରଦର୍ଶନ କରେ ତାହାକୁ ଡାହାଣୀ କହନ୍ତି । ଏହା କଣ ଅତି ଅସାଧାରଣ ବିସ୍ମୟ ନୁହେଁକି ଯେ ବୈଦେଶିକ କର୍ମଚାରୀ-ମାନେ ସ୍ୱାଭାବିକ ଅଭିଭାବକରୂପେ ସେମାନଙ୍କ ପିଲାମାନଙ୍କ ତୁଳନାରେ ଆମ୍ଭରି ପିଲାମାନଙ୍କ ପାଇଁ ଅଧିକତର ଭାବେ ବ୍ୟାକୁଳତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସମ୍ବେଦନଶୀଳ ହେବେ ? ଯଦି, ମନେ କରାଯାଉ ଯେ ଜାପାନୀ କର୍ମଚାରୀମାନେ ଇଂରେଜ ପିଲାମାନଙ୍କ ଶିକ୍ଷା ପ୍ରାପ୍ତି ପାଇଁ ସେମାନଙ୍କୁ ଇଂରାଜୀ ବିଶ୍ୱବିଦ୍ୟାଳୟଗୁଡ଼ିକରେ ନଦେଇ ଜାପାନୀମାନଙ୍କ ନିକଟରେ ଅର୍ପଣ କରିବା ପାଇଁ କହନ୍ତି ତା' ହେଲେ ଇଂରେଜ ଲୋକେ କିପରି ଏହାକୁ ଗ୍ରହଣ କରିବେ ସେ ନେଇ ଆମ୍ଭେ ଆଶ୍ଚର୍ଯ୍ୟ ହେଉ । କିନ୍ତୁ ଭାରତରେ ସବୁକଥା ସମ୍ଭବ ।''

୦

କାର୍ମିଚେଲ୍‌ଙ୍କ ପ୍ରରୋଚନା କ୍ରମେ କଲିକତା ବିଶ୍ୱବିଦ୍ୟାଳୟରେ ଗଭୀର ପ୍ରଭାବ ବିସ୍ତାର କରି ପାରିଥିବା ତଥା ଉପ-କୁଳପତିରୂପେ ଥିବା ଆଶୁତୋଷ ମୁଖାର୍ଜୀଙ୍କ ସ୍ଥାନରେ ଅନ୍ୟଜଣେ ଇଂରେଜ ବ୍ୟକ୍ତିଙ୍କୁ ନିଯୁକ୍ତି ଦିଆଯିବାକୁ ଥିବା ଯୋଜନା ପ୍ରତ୍ୟାହର କରି ନିଆଯାଇଥିଲା । ତେବେ କେବଳ ଆଠବର୍ଷ ପରେ ବିଶ୍ୱବିଦ୍ୟାଳୟକୁ ବିକେନ୍ଦ୍ରୀକରଣ କରାଯିବା ଅବସରରେ ତାହାର ପୁନର୍ବିନ୍ୟାସ କରାଯାଇଥିଲା ।

1913 ମସିହା ଅଗଷ୍ଟ ମାସରେ "ବଙ୍ଗଳା ବିଷାଦର ନଦୀ" ଦାମୋଦରରେ ଏକ ଅଭୂତପୂର୍ବ ବନ୍ୟାର ପ୍ରକୋପ ସୃଷ୍ଟି ହୋଇଥିଲା । ତାହା ବର୍ଦ୍ଧମାନ ଜିଲ୍ଲା ତଥା ହୁଗୁଳି ଓ ମେଦିନାପୁରର ନିକଟବର୍ତ୍ତୀ ଜିଲ୍ଲାଗୁଡ଼ିକରେ ଦାରୁଣ ବିପର୍ଯ୍ୟୟ ସୃଷ୍ଟି କରିଥିଲା । ବଙ୍ଗଳାର ଜନଗଣ ବନ୍ୟା ପ୍ରପୀଡ଼ିତଙ୍କୁ ସାହାଯ୍ୟ କରିବା ଲାଗି ତତ୍‌ପର ହୋଇ ଉଠିଥିଲେ । ବନ୍ୟା ସାହାଯ୍ୟ କାର୍ଯ୍ୟ ସଂଗଠିତ କରାଇବା ଉଦ୍ଦେଶ୍ୟରେ ତଥା ବନ୍ୟା ସାହାଯ୍ୟର ପାଣ୍ଠି ଗଠନ ଲାଗି ଅନେକଗୁଡ଼ିଏ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଲର୍ଡ କାର୍ମିଚେଲଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସେହିଭଳି ଗୋଟିଏ ସାଧାରଣ ସଭାରେ ଜନସାଧାରଣଙ୍କ ମଧ୍ୟରୁ ଗୋଟିଏ ପ୍ରତିନିଧିମୂଳକ କମିଟି ଗଠିତ ହୋଇଥିଲା ଯାହାର ମୁଖ୍ୟ ଥିଲେ ପ୍ରଧାନ ବିଚାରପତି ଜେନ୍‌କିନ୍‌ସ୍ । ସେହି କମିଟିକୁ ନିର୍ବାଚିତ ହୋଇଥିବା ମୋତିଲାଲ ସେହି ସଭାରେ ବନ୍ୟା ସାହାଯ୍ୟ କାର୍ଯ୍ୟ ଲାଗି ଯଥେଷ୍ଟ ଅର୍ଥ ସହାୟତା କରିବା ପାଇଁ ସରକାରଙ୍କୁ ଏକ ମର୍ମସ୍ପର୍ଶୀ ଅନୁରୋଧ ଜଣାଇ ଥିଲେ ।

ଗଭର୍ଣ୍ଣରଙ୍କୁ ସମ୍ବୋଧନ କରି ସେ କହିଥିଲେ, "ଆମେ ଯଦି ଏକଲକ୍ଷ ଟଙ୍କା ସଂଗ୍ରହ କରିପାରୁ ତାହାହେଲେ ସରକାର ଦୟାପରବଶ ହୋଇ ଏଥିରେ ଆଉ ଅଧିକ ନଅଲକ୍ଷ ଟଙ୍କା ସରକାରୀ ଖଜଣାରୁ ମିଶାଇବେ ବୋଲି ଆମ୍ଭେମାନେ ଆଶା କରିପାରୁଁ କି? ଯେଉଁମାନେ କୁହନ୍ତି ଯେ ବିଭିନ୍ନ କର ବାବଦରେ ସାଧାରଣଭାବେ ଆଦାୟ ହୋଇଥିବା ଅର୍ଥ ସରକାର ଏହିଭଳି କାର୍ଯ୍ୟକଳାପ ଦିଗରେ ଖର୍ଚ୍ଚ କରି ପାରିବେ ନାହିଁ । ସେମାନଙ୍କୁ ମୋର ଉତ୍ତର ହେଉଛି କରଦାତାମାନଙ୍କୁ ପଚରାଯାଉ, ସେମାନଙ୍କ ନିକଟରୁ ପ୍ରତ୍ୟକ୍ଷ ମତ ନିଆଯାଉ ଏବଂ ମୁଁ ପ୍ରତିଶ୍ରୁତି ଦେଇପାରେ ଯେ ସେମାନଙ୍କ ମଧ୍ୟରୁ ଶତକଡ଼ା ଅନେଶତ ଭାଗ ବ୍ୟକ୍ତି ସେମାନଙ୍କ ଅର୍ଥର ସଂରକ୍ଷକ ସରକାରଙ୍କୁ ଏହିଭଳି ଉତ୍ତମ ତଥା ଲୋକହିତକର କାର୍ଯ୍ୟ ଲାଗି ଖର୍ଚ୍ଚ କରିବାପାଇଁ ଆନନ୍ଦର ସହିତ ଅନୁମତି ଦେବେ ।"

ସମଗ୍ର ଭାରତରେ ସେଥିପାଇଁ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଦେଶର ଚତୁର୍ଦ୍ଦିଗରୁ ଆର୍ଥିକ ତଥା ଅନ୍ୟାନ୍ୟ ପ୍ରକାର ସାହାଯ୍ୟ ସବୁ ଆସି ସେଠାରେ ପହଞ୍ଚିଥିଲା । ବଙ୍ଗଳା ବାହାରୁ ମଧ୍ୟ ଅନେକ ସ୍ୱେଚ୍ଛାସେବକ ଟ୍ରସଇଥିପାଇଁ ଆସିଥିଲେ । ଯୁବ ସଂପ୍ରଦାୟଗୁଡ଼ିକ ନିକଟରୁ ସେମାନଙ୍କ ସଂଗଠନ ଅଧିକାର ବିଚ୍ୟୁତ କରାଯିବା ଦୀର୍ଘକାଳ ପରେ ପ୍ରଥମଥର ପାଇଁ ବଙ୍ଗାଳୀ ଯୁବକମାନେ ମାନବସେବା କାରଣକୁ କେନ୍ଦ୍ରକରି ଗୋଟିଏ ବିଶାଳ ସଂଗଠନ କରିବାପାଇଁ ସୁଯୋଗ ଲାଭ କରିଥିଲେ । ରାମକୃଷ୍ଣ ମିଶନକୁ ବାଦ ଦେଲେ, ଗୋପନ ଆନ୍ଦୋଳନରି ନେତୃତ୍ୱ ନେଉଥିବା ଗୋଷ୍ଠୀ, ସାଂଗଠନିକ ଭାବେ

ବନ୍ୟା ସାହାଯ୍ୟ କାର୍ଯ୍ୟ ଗ୍ରହଣ କରିଥିଲା ଏବଂ ସେମାନଙ୍କ ସହଯୋଗୀ ହେବା ପାଇଁ ଅନେକ ଲୋକଙ୍କୁ ନିଯୁକ୍ତି ଦେଇଥିଲା । ତା'ର ଚାରିବର୍ଷ ପରେ କେବଳ ଦାମୋଦର ବନ୍ୟା ସାହାଯ୍ୟ କାର୍ଯ୍ୟ ସହ ସଂପୃକ୍ତ ଥିବା କାରଣକୁ କେନ୍ଦ୍ର କରି ଏବଂ ତାହାକୁ ହିଁ ଯଥେଷ୍ଟ ପ୍ରମାଣ ବୋଲି ମନେକରାଯାଇ ଜଣେ ଯୁବକଙ୍କୁ ବିନା ବିଚାରରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଅଟକ ରଖାଯାଇଥିଲା ।

ରାଜନୈତିକ ତଥା ସାମ୍ବାଦିକତାମୂଳକ କାର୍ଯ୍ୟକଳାପ ବ୍ୟତୀତ ସେହି ସମୟରେ ମୋତିଲାଲ ବିଭିନ୍ନ ପ୍ରକାରର ସାଂସ୍କୃତିକ କାର୍ଯ୍ୟକଳାପରେ ଯୋଗ ଦେବାପାଇଁ ଆହୂତ ହୋଇଥିଲେ । ସଂଗୀତ ପ୍ରତି ପିଲାଟି ଦିନରୁ ତାଙ୍କର ଆଗ୍ରହ ଥିଲା । ତେଣୁ ଯେତେବେଳେ ସମୟ ପାଉଥିଲେ ସେ ସଂଗୀତ ଆସରଗୁଡ଼ିକରେ ଯୋଗ ଦେଉଥିଲେ । ଉଚ୍ଚକୋଟୀର ଧ୍ରୁପଦ ଏବଂ ଖେୟାଲ ସାଙ୍ଗକୁ ବୈଷ୍ଣବ ପଦାବଳୀ କୀର୍ତ୍ତନ ତାହାଙ୍କର ଅତି ପ୍ରିୟ ଥିଲା । ରବୀନ୍ଦ୍ରନାଥ ଠାକୁରଙ୍କ ଦ୍ୱାରା ପ୍ରବର୍ତ୍ତିତ, ନୂତନ ଭାବରେ ସଂଗଠିତ ସଂଗୀତମୟ କବିତାଗୁଡ଼ିକ ପାଇଁ ତାହାଙ୍କର ବିଶେଷ ଆଗ୍ରହ ନଥିଲା । ସେ ମଧ୍ୟ ସମ୍ମାନପ୍ରଦ ଖେଳକୁଦ ରୂପେ ପରିଚିତ ଫୁଟବଲ୍ ଏବଂ କ୍ରିକେଟ୍ ଖେଳ ପ୍ରତି ଆଗ୍ରହୀ ନଥିଲେ । ତେବେ ଜଣେ ଦେଶପ୍ରେମୀ ହିସାବରେ 1911 ମସିହାରେ ଯେତେବେଳେ ମୋହନବାଗାନ କ୍ଲବ୍ ଗୋଟିଏ ଇଂରେଜ ମିଲିଟାରୀ ଦଳକୁ ଆକସ୍ମିକ ଭାବେ ପରାଜିତ କରି ଆଇ.ଏଫ୍.ଏ. ପଦକୁ ଜିଣି ପାରିଥିଲା, ସେ ଦେଶର ଗର୍ବ ସହିତ ଆପଣାକୁ ସାମିଲ୍ କରାଇ ଦେଇଥିଲେ । ଅନ୍ୟ ପକ୍ଷରେ କବାଡି ଭଳି ଭାରତୀୟ ଖେଳଗୁଡ଼ିକର ଉନ୍ନତି ପାଇଁ ସେ ଉତ୍ସାହ ପ୍ରଦାନ କରୁଥିଲେ କାରଣ ସେଗୁଡ଼ିକ ଶକ୍ତି, ବୁଦ୍ଧିମତା ତଥା ଗୋଷ୍ଠୀଗତ କାର୍ଯ୍ୟକଳାପ ଉପରେ ଗୁରୁତ୍ୱ ଦେଇଥାଏ । ପୁଣି ସେଥିରେ ଦାମିକା ଖେଳ ସାମଗ୍ରୀ ମଧ୍ୟ ବ୍ୟବହାର କରିବା ପାଇଁ ଆବଶ୍ୟକ ପଡେ ନାହିଁ । ଏହା ପଛରେ ସେ ଗ୍ରାମାଞ୍ଚଳଗୁଡ଼ିକରେ ରହୁଥିବା ଶତକଡା ନବେ ଭାଗ ଲୋକଙ୍କୁ ଦୃଷ୍ଟି ସମ୍ମୁଖରେ ରଖିଥିଲେ । ସେହି ଦୃଷ୍ଟିକୋଣ ହିଁ ତାହାଙ୍କର ରାଜନୈତିକ ଦୃଷ୍ଟିଭଙ୍ଗୀକୁ ସବୁବେଳେ ସ୍ୱତନ୍ତ୍ର କରି ରଖିଥିଲା ।

# ତେର: ପ୍ରଥମ ବିଶ୍ୱଯୁଦ୍ଧ

ପ୍ରଥମ ବିଶ୍ୱଯୁଦ୍ଧ ରୂପେ ଅଭିହିତ କରାଯାଉଥିବା ମହାଯୁଦ୍ଧ 1914 ମସିହା ଅଗଷ୍ଟ ଚାରି ତାରିଖ ଦିନ ଆରମ୍ଭ ହୋଇଥିଲା । ଅଷ୍ଟ୍ରିଆ ଏବଂ ଜର୍ମାନୀ ବିରୁଦ୍ଧରେ ବ୍ରିଟେନ୍, ଫ୍ରାନସ ଏବଂ ରୁଷ ଗୋଷ୍ଠୀବଦ୍ଧ ହୋଇଥିଲେ । ସ୍ୱାଭାବିକ ଭାବେ ଭାରତ, ବ୍ରିଟେନ୍ ସପକ୍ଷରେ ଯୁକ୍ତ ହୋଇ ଯାଇଥିଲା । ତିନିମାସ ପରେ ପୃଥିବୀର ମୁସଲମାନ ଗୋଷ୍ଠୀର ଧର୍ମଗୁରୁ ବା ଖଲିଫାରୂପେ ପରିଚିତ ତୁର୍କୀର ଶାସନମୁଖ୍ୟ ବ୍ରିଟେନ୍ ବିରୁଦ୍ଧରେ ଯାଇ ଜର୍ମାନୀ ସହିତ ସହଯୋଗୀ ହୋଇଥିଲା । ଉଦାରପନ୍ଥୀମାନେ ସେହି ଆପତ୍‌କାଳୀନ ସମୟରେ ଶାସକମାନଙ୍କ ସହ ବିଶ୍ୱାସପୂର୍ଣ୍ଣ ସେବା ମନୋଭାବ ପୋଷଣ କଲେ ଯୁଦ୍ଧପରେ ଭାରତକୁ ସ୍ୱାୟତ୍ତମୂଳକ ଶାସନ ପାଇଁ ଅଧିକତର ସୁଯୋଗ ଉପହାର ମିଳିବାର ସମ୍ଭାବନା ଉପରେ ଅଧିକ ବିଶ୍ୱାସ ସ୍ଥାପନ କରିଥିଲେ । ସରକାରଙ୍କ ପୃଷ୍ଠପୋଷକତା ତଥା ସୁରକ୍ଷା ଭିତରେ ଉନ୍ନତି ଲାଭ କରୁଥିବା ନ୍ୟସ୍ତ ସ୍ୱାର୍ଥଗୁଡିକ ସ୍ୱାଭାବିକ ଭାବେ ବ୍ରିଟେନ୍‌ର ବିଜୟ ଲାଭ ପାଇଁ ତାହାକୁ ସାହାଯ୍ୟ କରିବାକୁ ଆଗ୍ରହୀ ହୋଇ ଉଠିଥିଲେ । ମୁସଲମାନମାନଙ୍କ ମଧ୍ୟରେ ଉତ୍‌ଥାନଶୀଳ ମଧ୍ୟବିତ୍ତ ଶ୍ରେଣୀ, ବଙ୍ଗ ବିଭାଜନକୁ ରଦ୍ଦ କରି ଦିଆଯାଇଥିବା କାରଣ ଯୋଗୁଁ ବ୍ରିଟେନ୍ ଉପରେ କିଛିଟା ପ୍ରତିକୂଳ ଭାବାପନ୍ନ ହୋଇ ଉଠିଥିଲେ । କାରଣ ତାହା ଫଳରେ ସେମାନେ ଗୋଟିଏ ରାଜ୍ୟରେ ସଂଖ୍ୟାବହୁଳ ଭାବରେ ରହିବା ସୁବିଧା ହରାଇ ବସିଥିଲେ ଏବଂ ବ୍ରିଟେନ୍ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ମନେ କରାଯାଇଥିଲା । 1911 ମସିହାରେ ଇଟାଲି ଏବଂ ତୁର୍କୀ ମଧ୍ୟରେ ସଂଗ୍ରାମ ସମୟରେ ମୁସଲମାନ ସାମ୍ରାଜ୍ୟ ସହିତ ସହଯୋଗ କରିବା ଲାଗି, ଏକ ଖ୍ରୀଷ୍ଟିୟାନ୍ ଶକ୍ତି – ବ୍ରିଟେନ୍ ନାସ୍ତି କରିଦେଇଥିଲା । ପୁଣି 1912 ମସିହାରେ ବଲକାନ୍ ଯୁଦ୍ଧବେଳେ ମୁସଲମାନ ଜନମତ ସବୁ ଆପଣାର ସ୍ୱତ୍ତ୍ୱ ବର୍ଜନ କରିଦେଇ ଥିଲା । କାରଣ ଭାରତୀୟ ମୁସଲମାନମାନଙ୍କ ତର୍ଜମା ଅନୁଯାୟୀ ତାହା ଥିଲା ବ୍ରିଟେନ୍ ସମେତ ଖ୍ରୀଷ୍ଟିୟାନ୍ ଶକ୍ତିଗୁଡିକର ମୁସଲମାନ ଗୋଷ୍ଠୀ ବିରୁଦ୍ଧର ଆନ୍ଦୋଳନ । ସେହି କାରଣରୁ କଂଗ୍ରେସ ତଥା ଇଂରେଜ ଶାସନ ବିରୁଦ୍ଧରେ ଆନ୍ଦୋଳନ ଚଳାଉଥିବା ଜାତୀୟତାବାଦୀମାନଙ୍କ ପ୍ରତି ସେମାନେ ଅତ୍ୟଧିକ ଶ୍ରଦ୍ଧାଶୀଳ ହେବାଭଳି ଧାରା ଅନୁଭବ କରାଯାଇଥିଲା । ମୌଲାନା ଆବୁଲ କାଲାମ୍ ଆଜାଦ୍, ମହମ୍ମଦ ଅଲ୍ଲୀ ଏବଂ ଶିବ୍ଲି ବୋମାନୀ ମୁସଲମାନ ମତବାଦର ନୂତନ ନେତାରୂପେ ଆତ୍ମ ପ୍ରକାଶ କରିଥିଲେ । ଆଲିଗଡ ସ୍କୁଲର ଲୋହିତ ଭାରତୀୟମାନଙ୍କର ଏକାଧିପତ୍ୟତା ଉଗ୍ର ହୋଇଥିଲା । 1913 ମସିହା ଅନୁଯାୟୀ ହୋଇଥିବା ଲଣ୍ଡନ ଚୁକ୍ତି ପାଇଁ ବ୍ରିଟେନ୍ ପ୍ରତି ଅବିଶ୍ୱାସ ଭାବ ଅଧିକତର ଭାବେ ବୃଦ୍ଧି ପାଇଥିଲା ।

କାରଣ ସେହି ଅନୁଯାୟୀ ତୁର୍କୀ ଅଧୀନରେ ଥିବା ତାର ସମଗ୍ର ଦକ୍ଷିଣାଞ୍ଚଳ ପ୍ରାୟ ଇଉରୋପୀୟ-ମାନଙ୍କ ହାତରେ ସମର୍ପଣ କରାଇ ଦିଆଯାଇଥିଲା । ମହମ୍ମଦ ଅଲ୍ଲି ଜିନ୍ନା ତଥାପି ସେତେବେଳ ଯାଏଁ ମୁସଲିମ୍ ଲିଗରେ ତଥା ଭାଇସରାୟଙ୍କ ପରିଷଦରେ ସଭ୍ୟ ଥିଲେ ଏବଂ ସେ ମୁସଲିମ୍ ଲିଗ୍ ତୁଳନାରେ ବୃହତ୍ତର ଭାବେ ଜାତୀୟବାଦୀ କାର୍ଯ୍ୟକଳାପ ପ୍ରତି ଅଧିକ ନିଷ୍ଠା ପ୍ରଦର୍ଶନ କରୁଥିଲେ ।

ବଙ୍ଗଳାରେ ଜାତୀୟବାଦୀ ମତାମତଧାରୀ ବିପ୍ଳବୀ ଗୋଷ୍ଠୀ ସେମାନଙ୍କ ସୁବିଧା ସୁଯୋଗ ହାସଲ କରିବା ଦିଗରେ ବ୍ରିଟେନ୍ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଲକ୍ଷ୍ୟ କରିଥିଲେ । ଇଉରୋପ ଓ ଆମେରିକାରେ ଥିବା ସେମାନଙ୍କ ସହକର୍ମୀମାନେ ବୈଦେଶିକ ସରକାରଙ୍କୁ ବିତାଡିତ କରିବା ଲାଗି ବିପୁଳ ପରିମାଣରେ ଅର୍ଥ ତଥା ଅସ୍ତ୍ରଶସ୍ତ୍ର ସହାୟତା ପାଇବାର ଉଦ୍ଦେଶ୍ୟରେ ଜର୍ମାନ ସରକାରଙ୍କ ସହିତ ସମ୍ପର୍କ ସ୍ଥାପନ କରିପାରିଥିଲେ । ଭାରତୀୟ ସୈନ୍ୟ ବିଭାଗର କେତେକ ୟୁନିଟ୍‌କୁ ସେହି ଯୋଜନାରେ ଅଙ୍ଗୀଭୂତ ହୋଇ ଅଂଶଗ୍ରହଣ କରିବା ପାଇଁ ଉଦ୍ୟମ କରାଯାଉଥିଲା । ସାଧାରଣ ରାଜନୈତିକ କ୍ଷେତ୍ରରେ ଥିବା ଚରମପନ୍ଥୀମାନେ ଲକ୍ଷ୍ୟ କରିଥିଲେ ଯେ ବହୁ ସଂଖ୍ୟାରେ ପୁଣି ଥରେ ସୈନ୍ୟ ବିଭାଗରେ ବଙ୍ଗାଳୀମାନଙ୍କୁ ନିଯୁକ୍ତି ଦିଆଯିବା ଲାଗି ସେହି ଯୁଦ୍ଧ ସମୟ ହିଁ ଥିଲା ଏକ ସୁଯୋଗ । କାରଣ ସମ୍ରାଟ ନିଜ ହାତକୁ ଶାସନ କ୍ଷମତା ନେବା ପରଠାରୁ ସୈନ୍ୟ ବିଭାଗରେ ବଙ୍ଗାଳୀମାନଙ୍କୁ ପରିହାର କରାଯାଇଥିଲା । ଗୋପନ କାର୍ଯ୍ୟକଳାପରେ ଲିପ୍ତ ରହିଥିବା ଗୋଷ୍ଠୀ ମଧ୍ୟ ସେମାନଙ୍କ ନିଜ ସ୍ୱାର୍ଥ ଦୃଷ୍ଟିରୁ ସେହି ମତକୁ ସମର୍ଥନ ଜଣାଇ ଥିଲେ । ବଙ୍ଗଳୀମାନେ ସୈନ୍ୟ ବିଭାଗରେ ଯୋଗ ଦେବା ସପକ୍ଷରେ ପ୍ରଚାର କରିବା ଦିଗରେ ମୋତିଲାଲ ଥିଲେ ଜଣେ ଅଗ୍ରଣୀ । ତାଙ୍କ ଜୀବନୀ ଲେଖକ ତଥା ଅଣନାତି ପରମାନନ୍ଦ ଦତ୍ତଙ୍କ ମତରେ ମୋତିଲାଲ "ମହାତ୍ମା ଗାନ୍ଧୀ ତଥା ଅନ୍ୟାନ୍ୟ ଅନେକ ଭାରତୀୟ ନେତାଙ୍କ ଭଳି ଦାୟିତ୍ୱପୂର୍ଣ୍ଣ ପଦ-ପଦବୀଗୁଡ଼ିକ ନିକଟରୁ ମିଳିଥିବା ପ୍ରତିଶ୍ରୁତିଗୁଡ଼ିକ ଉପରେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ । ସେଥିରେ ଥିଲା - ଯଦି ବ୍ରିଟେନର ଅତି ଆବଶ୍ୟକ ସମୟରେ ଭାରତ ତାହାକୁ ସାହାଯ୍ୟ କରେ ତାହାହେଲେ ସେହି ସହାୟତା ଅଣପୁରସ୍କୃତ ରହିବ ନାହିଁ ।" କିନ୍ତୁ ଲେଖକ (ଏହି ଗ୍ରନ୍ଥର) ଏଥି ସହିତ ସମ୍ମତ ନହେବା ସପକ୍ଷରେ ଆଗ୍ରହୀ । ଅକ୍ଷୟ ଉତ୍ସୁକତାର ସହିତ ପ୍ରତି·ସ୍ୱରରେ ମୋତିଲାଲ ସରକାରଙ୍କ ଉପରେ ଚାବୁକ ପ୍ରହାର କରି ଆସୁଥିଲେ । ଯଦିଚ ମଣିଷର ହୃଦୟରେ ଆଶାର ଝରଣା ଅବିରତ ଭାବରେ ବହିଚାଲେ, ତଥାପି ବ୍ରିଟିଶ ସରକାରଙ୍କ ଉଦ୍ଦେଶ୍ୟଗୁଡ଼ିକ ଉପରେ ତାହାଙ୍କର ଆସ୍ଥାହୀନ ଭାବକୁ ବ୍ରିଟିଶର ପ୍ରତିଶ୍ରୁତିଗୁଡ଼ିକ ଉଲ୍ଲେଖଯୋଗ୍ୟ ଭାବେ ଶାନ୍ତ କରିପାରି ନଥିଲା ।

ବସ୍ତୁତଃ, ପ୍ରାଦେଶିକ ସ୍ୱାୟତ୍ତ ଶାସନମୂଳକ କାର୍ଯ୍ୟକଳାପ ପରିସର ବୃଦ୍ଧି ଲାଗି ହେଉଥିବା ସମସ୍ତ ବୁଝାମଣା କିଭଳି ଭାବରେ ସଙ୍କୁଚିତ କରି ଦିଆଯାଉଛି ସେସବୁକୁ ଜାତୀୟବାଦୀମାନେ ଯଥାର୍ଥ ଭାବେ ଲକ୍ଷ୍ୟ କରିଥିଲେ । ପୁଣି କାର୍ମିଚେଲ କିଭଳି ଭାବରେ କ୍ରେତଙ୍କ ନିକଟରେ ଆସ୍ଥାହୀନ ହୋଇ ପଡୁଛନ୍ତି ତାହା ମଧ୍ୟ ସେମାନେ ଜାଣି ପାରିଥିଲେ । ଏପରିକି ଯୁଦ୍ଧ ପୂର୍ବରୁ ମଧ୍ୟ ବିପିନଚନ୍ଦ୍ର ପାଲ ଯୁକ୍ତି କରିଥିଲେ ଯେ "ଏ ଦେଶ ସହିତ ଥିବା ବ୍ରିଟିଶର ସମ୍ପର୍କ ଏବଂ ଜନମତ ସମ୍ପର୍କିତ ଅଧିକାର ମଧ୍ୟରେ

କୌଣସି ପ୍ରକାର ସଙ୍ଗତି ବିଧାନ ପ୍ରସ୍ତାବ ପ୍ରସ୍ତୁତ କରାଯାଇ ପାରିବା ଅସମ୍ଭବ ।'' 1916 ମସିହାରେ ମନ୍ତବ୍ୟ ପ୍ରକାଶ କରି 'ପତ୍ରିକା' ଲେଖିଥିଲା:

''ଯେତେବେଳେ ପୁର୍ନଗଠିତ କାଉନ୍‌ସିଲ୍‌ଗୁଡ଼ିକର ସ୍ୱାଦିଷ୍ଟତା ଜନସମ୍ମୁଖରେ ଝଲ୍‌ସି ଉଠୁଥିଲା ସେତେବେଳେ କଂଗ୍ରେସ ନେତାମାନଙ୍କ ଦ୍ୱାରା କିଭଳି ଏକ ଉତ୍ତେଜନାମୂଳକ ତଥା ସୁନ୍ଦର ଚିତ୍ର ଅଙ୍କନ କରାଯାଉଥିଲା ! କିନ୍ତୁ ବାସ୍ତବତା କେତେ ପରିମାଣରେ ଦୁଃଖଦାୟକ ଏବଂ ଶୋଚନୀୟ !''

ଯୁକ୍ତିମୂଳକ ଉପସିଦ୍ଧାନ୍ତର ଗୋଟିଏ ସ୍ତରରେ ଉପନୀତ ହୋଇ ଉଦାରପନ୍ଥୀମାନେ ପରିସ୍ଥିତିର ବାସ୍ତବତା ଦୃଷ୍ଟିରୁ ସ୍ୱାଧୀନତା ପାଇଁ ସାଧାରଣ ଉତ୍‌ଥାନ ହିଁ ଏକମାତ୍ର ବିକଳ୍ପ ପନ୍ଥା ମନେକରି ସଂଗ୍ରାମଶୀଳ ଥିଲେ । ତଥାପି ସେମାନେ ସେତେବେଳ ପର୍ଯ୍ୟନ୍ତ ଅନୁଭବ କରିନଥିଲେ ଯେ ଗୋଟିଏ ସମ୍ମିଳିତ ଜନମତ ହିଁ ବ୍ରିଟେନ୍ ଠାରୁ ସେହି ସାମ୍ରାଜ୍ୟ ଭିତରେ ରହି ନିର୍ଦ୍ଦିଷ୍ଟ ଦିନଠାରୁ ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଲାଗି ଦୃଢ ପ୍ରତିଶ୍ରୁତି ବଳପୂର୍ବକ ହାସଲ କରିବାପାଇଁ ଅତି ଉତ୍କୃଷ୍ଟ ସାମ୍ବିଧାନିକ ପନ୍ଥା । ଏତେବେଳ ପର୍ଯ୍ୟନ୍ତ ରାଜନୈତିକ ପରିସ୍ଥିତିକୁ ପରିପୁଷ୍ଟ କରାଇ ଦେଇଥିବା ଏହି ଅନୁଭୂତି ଆହୁରି ଅଧିକ ତୀବ୍ର ହୋଇ ଉଠିଥିଲା ଏବଂ ଉଦାରପନ୍ଥୀମାନେ ଏକ ଘରକିଆ ହୋଇ ଯାଇଥିବା ଅନୁଭବ କରିଥିଲେ ।

1914 ମସିହା ଡିସେମ୍ବର ମାସରେ ସର୍ବୋଚ୍ଚ ସରକାର ଶାସନ ବିରୁଦ୍ଧରେ ହେଉଥିବା ଚକ୍ରାନ୍ତ-ମୂଳକ ଘଟଣାଗୁଡ଼ିକର ଅନୁଶାସନଗତ କ୍ଷମତା ତଥା ଭାରତରେ ପ୍ରତିରକ୍ଷାମୂଳକ ଆଇନକୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱ ନିଜ ହାତକୁ ନେଇଥିଲେ । ପରିଣାମତଃ ଯେ କୌଣସି ଲୋକକୁ ଗିରଫ କରିବା ପାଇଁ ଏବଂ ବିନା ବିଚାରରେ ଅଟକ ରଖିବାପାଇଁ ସ୍ୱାଧୀନ କ୍ଷମତା ସରକାରଙ୍କୁ ଅର୍ପଣ କରାଯାଇଥିଲା । ସେଥିପାଇଁ ଏକ ପ୍ରସ୍ତାବ 1915 ମସିହା ମାର୍ଚ୍ଚ ମାସରେ ଭାଇସରାୟଙ୍କ ପରିଷଦରେ ଉପସ୍ଥାପିତ ହୋଇଥିଲା ଏବଂ ମାତ୍ର ଗୋଟିଏ ଦିନ ଭିତରେ ତାହା ଗୃହୀତ ହୋଇ ଯାଇଥିଲା । ତେବେ ତାହାକୁ ତତ୍‌କ୍ଷଣାତ୍ ସମଗ୍ର ଭାରତରେ ବିରୋଧ କରାଯାଇଥିଲା । ନିଶ୍ଚିତ ରୂପେ ସରକାରଙ୍କ ଅସଂଯମତା, ବିଶେଷ କରି ବଙ୍ଗଳା ଏବଂ ପଞ୍ଜାବରେ ଆଂଶିକ ରୂପେ ହେଲେ ମଧ୍ୟ ପୁନଶ୍ଚ ଯନ୍ତ୍ରଣାଦାୟକ ରୂପେ ସନ୍ତ୍ରାସବାଦୀ କାର୍ଯ୍ୟକଳାପର ସୃଷ୍ଟିକାରୀ ଥିଲା । ପୁଣି ବୈଦେଶିକ ସଂସ୍ଥାଗୁଡ଼ିକର ବିବରଣୀ ମାଧ୍ୟମରେ ଭାରତ ଓ ଜର୍ମାନୀ ମଧ୍ୟରେ ହୋଇଥିବା ଗୋପନ ଚୁକ୍ତିବିଷୟର ଆବିଷ୍କାର କରାଯାଇ ପାରିଥିଲା । ଆମେରିକାରେ ଥିବା ଭାରତୀୟ ବିପ୍ଳବୀମାନେ ସେହି ଗୋପନ ସମ୍ବାଦକୁ ସେଠାରେ କର୍ତ୍ତବ୍ୟରତ ଥିବା ଚେକୋସ୍ଲୋଭାକିଆର ବିଦ୍ରୋହୀମାନଙ୍କ ମଧ୍ୟରେ ଆବଦ୍ଧ ରଖିଥିଲେ । ଶେଷୋକ୍ତ ଗୋଷ୍ଠୀ ଅଷ୍ଟ୍ରୀୟ ଶାସନରୁ ମୁକ୍ତ ହେବାଲାଗି ସହଯୋଗୀ ସନ୍ଧିବଦ୍ଧ ରାଷ୍ଟ୍ରସମୂହଙ୍କ ନିକଟରେ ସେହି ସମ୍ବାଦ ସଙ୍ଗେ ସଙ୍ଗେ ପ୍ରଚାର କରି ଦେଇଥିଲେ । ଅସ୍ତ୍ରଶସ୍ତ୍ର ବୋଝେଇ ହୋଇ ଆସୁଥିବା ଦୁଇଟି ଜାହାଜକୁ ରାସ୍ତାରେ ଅଟକ କରି ରଖାଇ ଦିଆ ଯାଇଥିଲା । ପଞ୍ଜାବ ଓ ବଙ୍ଗଳାରେ ଆତଙ୍କମୂଳକ ଭାବେ ଶାସନ କାର୍ଯ୍ୟକାରୀ କରାଯାଇଥିଲା । ହଜାର ହଜାର ଲୋକଙ୍କୁ ବିଦ୍ରୋହାତ୍ମକ ଗୋଷ୍ଠୀଗୁଡ଼ିକ

ସହିତ ସମ୍ପର୍କ ରକ୍ଷା କରୁଥିବା ସନ୍ଦେହରେ ଗିରଫ କରାଯାଇଥିଲା । ଅବଶ୍ୟ ସେଇ କାହାଣୀ ଅନ୍ୟ ପର୍ଯ୍ୟାୟଭୁକ୍ତ ।

ବଙ୍ଗାଳୀ ଯୁବକମାନେ ସୈନ୍ୟ ବାହିନୀରେ ଅଂଶୀଦାର ହେବାଲାଗି ମୋତିଲାଲଙ୍କ ଉଦ୍ୟମ ମୁଖ୍ୟତଃ ନିର୍ଦ୍ଦେଶିତ ଥିଲା । ସେ ସଭାସମିତିରେ ମଞ୍ଚ ଉପରୁ ତଥା ପତ୍ରପତ୍ରିକା ମାଧ୍ୟମରେ ଯୁକ୍ତି କରିଥିଲେ ଯେ ବଙ୍ଗାଳୀ ସିପାହୀମାନେ ଇଷ୍ଟ ଇଣ୍ଡିଆ କମ୍ପାନୀର ସୈନ୍ୟ ବାହିନୀରେ ସେମାନଙ୍କର ସାହସିକତା ଯୋଗୁଁ ବିଶେଷ ଭାବେ ପରିଚିତ ଥିଲେ । ପରେ ପରେ ସୈନ୍ୟ ବାହିନୀରୁ ସେମାନଙ୍କର ବହିଷ୍କରଣ ଆପଣାର ଅକୃତକାର୍ଯ୍ୟତା ପାଇଁ ନଥିଲା, ବରଂ ସେମାନଙ୍କର ଉପରେ ଆସ୍ଥା ସ୍ଥାପନର ସନ୍ଦେହ ଯୋଗୁଁ ଏଭଳି ଘଟିଥିଲେ । ତେବେ ଯୁଦ୍ଧର ଦୀର୍ଘତା ଯୋଗୁଁ ସରକାର ଅଧିକ ଜନଶକ୍ତି କାମନା କରିଥିଲେ । ପ୍ରଥମେ ଗୋଟିଏ ବଙ୍ଗାଳୀ ସେବାମୂଳକ ଦଳ ପାଇଁ ଦୁଇ ହଜାର ଲୋକଙ୍କୁ ନିଯୁକ୍ତି ଦିଆଯିବା ଲାଗି ସେମାନେ ସମ୍ମତ ହୋଇଥିଲେ, କିନ୍ତୁ ପରିଶେଷରେ ଗୋଟିଏ ବଙ୍ଗାଳୀ ରେଜିମେଣ୍ଟ ଗଠନ କରାଯିବା ପାଇଁ ରାଜି ହୋଇଥିଲେ । ମୋତିଲାଲ ସୈନ୍ୟ ବାହିନୀରେ ସ୍ୱେଚ୍ଛାସେବକ ନିଯୁକ୍ତି ପାଇଁ ଉଦ୍ଦିଷ୍ଟ ଯୋଜନା ଦିଗରେ ନିଜର କଲମ ଚାଳନା କରିବା ସଙ୍ଗେ ସଙ୍ଗେ ଆପଣାର ସ୍ୱର ଉତ୍ତୋଳନ କରିଥିଲେ । ସେହି ଦିଗରେ ଯୁବକମାନଙ୍କର ଜବାବ ଉତ୍ସାହଜନକ ଥିଲା ।

ଇତି ମଧ୍ୟରେ, 1914 ମସିହାରେ ତିଳକ ବର୍ମା ଜେଲରୁ ମୁକ୍ତି ପାଇଥିଲେ । ସେତେବେଳକୁ ତାଙ୍କର 1907 ମସିହାର ସହକର୍ମୀମାନଙ୍କ ମଧ୍ୟରୁ ଅନେକ ଜେଲରେ ଥିଲେ । ମୋତିଲାଲଙ୍କ ସମେତ ଅନ୍ୟ ଯେଉଁ ବନ୍ଧୁମାନେ ଜେଲ ବାହାରେ ଥିଲେ, ସେମାନଙ୍କ ମଧ୍ୟରୁ ଅନେକଙ୍କ ସହିତ ସେ ସାକ୍ଷାତ କରଥିଲେ ଏବଂ ନିଜର ଆପେକ୍ଷିକ ସ୍ଥିତି ସମ୍ପର୍କରେ ପରିକଳ୍ପନା କରିଥିଲେ । ସେହି ବର୍ଷର କଂଗ୍ରେସ ସଭାପତି ରୂପେ ଆସନ ଅଳଂକୃତ କରିବାକୁ ଥିବା ଉପେନ୍ଦ୍ରନାଥ ବସୁ ମୋତିଲାଲଙ୍କ ସହିତ ସମ୍ମତ ହୋଇଥିଲେ ଯେ କଂଗ୍ରେସର ଉଦାରପନ୍ଥୀ, ଚରମପନ୍ଥୀ ଏବଂ ମସୁଲମାନ ନେତାମାନଙ୍କର ଏକ ମିଳିତ ଉଦ୍ୟମ ହେଲେ ତାହା ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଦାବୀ ଗ୍ରହଣ କରିବା ପ୍ରସ୍ତାବକୁ ସାକାର ରୂପ ଦିଆଯିବା ଲାଗି ସମର୍ଥ ହୋଇ ପାରିବ ଏବଂ ତାହାକୁ ବ୍ରିଟିଶ ଉପେକ୍ଷା କରି ପାରିବେ ନାହିଁ । କାରଣ ସେମାନେ ଯୁଦ୍ଧଜନିତ କାର୍ଯ୍ୟକଳାପଗୁଡ଼ିକରେ ସହଯୋଗ ମନୋଭାବାପନ୍ନ ହୋଇ ପାରିଥିବା ଯୋଗୁଁ ସେମାନଙ୍କ ସହ ନିକଟତର ଭାବେ ସଂଯୁକ୍ତ ହେବା ସୁଯୋଗ ହାସଲ କରିଥିଲେ । କଂଗ୍ରେସ ଦଳ ଭିତରକୁ ଚରମପନ୍ଥୀମାନଙ୍କର ପ୍ରବେଶ କରାଇବା ଭଳି ତାଙ୍କର ଦୁର୍ବହ ପଦକ୍ଷେପଗୁଡ଼ିକରେ ତାହାଙ୍କୁ ସାହାଯ୍ୟ କରିବା ପାଇଁ ମୋତିଲାଲଙ୍କୁ କ୍ରମାଗତ ଭାବେ କେତେଗୁଡ଼ିଏ ଲେଖା ଲେଖିବା ସହିତ ସେହି ପଦକ୍ଷେପକୁ ସାହାଯ୍ୟ କରିଥିଲେ । ସେତେବେଳେ 'ନ୍ୟୁ ଇଣ୍ଡିଆ' ର ସମ୍ପାଦନା କରୁଥିବା ଶ୍ରୀମତୀ ଆନି ବେଶାନ୍ତ ସେହି ଦିଗରେ ମଧ୍ୟ ତାଙ୍କର ସହଯୋଗୀ ହୋଇଥିଲେ । ଏପରିକି ସେ ତାହାଙ୍କୁ ସାହାଯ୍ୟ କରିବାପାଇଁ କଲିକତା ପର୍ଯ୍ୟନ୍ତ ଚାଲି ଆସିଥିଲେ । ବସୁ ଏବଂ ମୋତିଲାଲ କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଏକତ୍ର ମାନ୍ଦ୍ରାଜ ଯାଇଥିଲେ । କିନ୍ତୁ ସେମାନଙ୍କର ଉଦ୍ୟମ ଅକିଞ୍ଚିତ୍କର ହୋଇଥିଲା । କାରଣ ଫିରୋଜ ସାହ ମେହେଟ୍ଟା, ଗୋଖଲେ ଏବଂ ସୁରେନ୍ଦ୍ରନାଥ କଂଗ୍ରେସ

ଭିତରକୁ ତିଳକଙ୍କ ପୁନଃ ପ୍ରବେଶ ନେଇ ଉଦ୍ଦିଷ୍ଟ କୌଣସି ପ୍ରସ୍ତାବର ଅପ୍ରଶମ୍ୟ ବିରୋଧ କରିଥିଲେ । 1915 ମସିହାରେ ଗୋଖଲେ ଏବଂ ମେହେଟାଙ୍କ ମୃତ୍ୟୁ ପରେ ହିଁ ଲୋକପ୍ରିୟ ଜନମତ ଦ୍ୱାରା ଅନୁଷ୍ଠାନକୁ ବିସ୍ତାରିତ କରାଯାଇ ପାରିବା ଉଦ୍ୟମ ସଫଳତା ହାସଲ କରିଥିଲା । ଇତି ମଧ୍ୟରେ ମହାରାଷ୍ଟ୍ରରେ ତିଳକ ପୁଣି ତାହାଙ୍କର ନେତୃତ୍ୱ ପ୍ରତିଷ୍ଠା କରି ସାରିଥିଲେ । ତା'ର କାରଣ ଥିଲା ସେ ସରକାରଙ୍କ ଦ୍ୱାରା ଅଧିକତର ଭାବେ ନିଗୃହୀତ ହୋଇଥିଲେ । ଉତ୍ତମ ବ୍ୟବହାର ପ୍ରଦର୍ଶନର ଅଭାବ ଅଭିଯୁକ୍ତ ହୋଇ ବର୍ଷିକ ମଧ୍ୟରେ ଚାଳିଶ ହଜାର ଟଙ୍କା ସରକାରଙ୍କୁ ଦେବାପାଇଁ ବାଧ୍ୟ ହୋଇଥିଲେ । ତା'ପରେ ପରେ ସେ ଲୋକପ୍ରିୟ ଜନସମର୍ଥନ ଆକର୍ଷଣ କରିପାରିଥିଲେ ଏବଂ ତତ୍‌କ୍ଷଣାତ୍ ଦେଶପାଇଁ ତାହାଙ୍କର ସେବାଲାଗି ଏକ ଲକ୍ଷ ଟଙ୍କାର ଗୋଟିଏ ଥଳି ତାହାଙ୍କୁ ସର୍ବସାଧାରଣଙ୍କ ଦ୍ୱାରା ଉପହାର ଦିଆଯାଇଥିଲା । ସେଥିପାଇଁ ଉପଲକ୍ଷ୍ୟ ରଖା ଯାଇଥିଲା ହୋମ ରୁଲ୍ ବିଷୟ ନେଇ ତାହାଙ୍କ ଦ୍ୱାରା ପ୍ରଦତ୍ତ ତିନୋଟି ସାଧାରଣ ଭାଷଣ ପ୍ରଦାନ । ବମ୍ବେ ହାଇକୋର୍ଟ ତାହାଙ୍କ ଅପିଲ ଗ୍ରହଣ କରିଥିଲା ଏବଂ ତା'ର ଆଦେଶ ରଦ୍ଦ କରିଦେଇଥିଲା । କଂଗ୍ରେସ ସହିତ ପୁନଃ ସମ୍ମିଳିତ ହେବା ଅବସରରେ ତିଳକ 1916 ମସିହା ଅପ୍ରେଲ ମାସରେ ତାଙ୍କର ସ୍ୱରାଜ୍ୟ ସଂଘ (ହୋମ୍ ରୁଲ୍ ଲିଗ୍) ଆରମ୍ଭ କରିଥିଲେ । ଏବଂ ସେହି ବର୍ଷ ସେପ୍ଟେମ୍ବର ମାସରେ ଅନ୍ୟ ଏକ ନୂତନ ପଦକ୍ଷେପର ଅଗ୍ରିମାରମ୍ଭ କରିବାପାଇଁ ଶ୍ରୀମତୀ ଆନି ବେଶାନ୍ତ ମଧ୍ୟ ଆଉ ଗୋଟିଏ ହୋମ୍ ରୁଲ୍ ଲିଗ୍ ଗଠନ କରିଥିଲେ । ତତ୍ ପରବର୍ଷ ଜୁନ୍ ମାସରେ ମାଡ୍ରାଜ ସରକାରଙ୍କ ଅଟକ ଆଦେଶ ଯୋଗୁଁ ଏହି 69 ବର୍ଷ ବୟସ୍କା ବୃଦ୍ଧାଙ୍କ ପତି ଦେଶର ଜନସାଧାରଣଙ୍କ ମଧ୍ୟରେ ଗଭୀର ସମ୍ମାନ ଉଦ୍ରେକ କରାଇଥିଲା । ଇଂରେଜ ଶାସନର ସେ ଜଣେ କେବଳ ବିବାଦପ୍ରିୟ ସମାଲୋଚକ ନଥିଲେ, ଭାରତୀୟ ଆଧ୍ୟାତ୍ମିକ ପରମ୍ପରାର ଜଣେ ପ୍ରଶଂସକ ମଧ୍ୟ ଥିଲେ । ଜଣେ ସହବ୍ରହ୍ମବିଦ୍ୟାବିଦ୍ ବନ୍ଧୁ କଲିକତାର ହୀରେନ୍ଦ୍ରନାଥ ଦତ୍ତଙ୍କ ମାଧ୍ୟମରେ ଶ୍ରୀମତୀ ଆନି ବେଶାନ୍ତଙ୍କ ସଂଘରେ ଯୋଗ ଦେବା ଲାଗି ମୋତିଲାଲ ପ୍ରଭାବିତ ହୋଇଥିଲେ । 'ପତ୍ରିକା' ଲେଖିଥିଲା, "ଶ୍ରୀମତୀ ବେଶାନ୍ତ ଆଉ କେବଳ ଜଣେ ବ୍ୟକ୍ତିତ୍ୱ ନୁହନ୍ତି, ସେ ଗୋଟିଏ ନୀତି । ତାହାଙ୍କ ପ୍ରତି ଉଦ୍ଦିଷ୍ଟ ସ୍ୱରାଜ୍ୟ ସଂଘର ଉଦ୍ଦେଶ୍ୟ କିମ୍ବା ସ୍ୱାୟତ୍ତ ଶାସନ ପ୍ରତି ଆଘାତ ।" ଏଭଳି ପ୍ରବଳ କୋଳାହଳ ସୃଷ୍ଟି ହୋଇଥିଲା ଯେ ତାହାଙ୍କୁ ସେପ୍ଟେମ୍ବରରେ ସରକାର ଖଲାସ କରି ଦେଇଥିଲେ ଏବଂ ସେ ସେହି ବର୍ଷ କଂଗ୍ରେସର ସଭାନେତ୍ରୀ ନିର୍ବାଚିତା ହୋଇଥିଲେ ।

ପୁନର୍ମିଳନ ପ୍ରସ୍ତାବକୁ ଫେରିଗଲେ, 1916 ମସିହାରେ ଅତ୍ୟନ୍ତ ଅସୁସ୍ଥତାବଶତଃ ମୋତିଲାଲ ଲକ୍ଷ୍ନୌ ଯାଇ ପାରିନଥିଲେ । କିନ୍ତୁ ତିଳକ ବହୁସଂଖ୍ୟକ ଚରମପନ୍ଥୀ ପ୍ରତିନିଧିଙ୍କ ସହିତ ଆକସ୍ମିକ ଭାବେ ସେଠାରେ ପହଞ୍ଚିଥିଲେ । ବିଷୟ ନିର୍ବାଚନ କମିଟିରେ ତିଳକଙ୍କ ମିଳାମିଶା ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରାଯାଇଥିଲା । କିନ୍ତୁ ଖୋଲାଖୋଲି ଭାବେ ନିର୍ବାଚନରେ ଚରମପନ୍ଥୀମାନେ ବିଜୟୀ ହୋଇଥିଲେ । ଏପରିକି ଉଦାରପନ୍ଥୀମାନଙ୍କ ଦ୍ୱାରା ମନୋନୀତ ଗାନ୍ଧିଜୀ ମଧ୍ୟ ନିର୍ବାଚନରେ ପରାଜିତ ହୋଇଥିଲେ । ସେତେବେଳକୁ ସେ ବିଶେଷ ଭାବେ ଜଣାଶୁଣା ନଥିଲେ । ତେବେ ଗାନ୍ଧିଜୀ ବିଜୟୀ ହୋଇଥିବା କଥା ତିଳକ ଘୋଷଣା କରିଥିଲେ ।

ଭାରତୀୟ ଜାତୀୟବାଦୀ ଆନ୍ଦୋଳନର କ୍ରମବିକାଶରେ ଲକ୍ଷ୍ନୌ ଅଧିବେଶନ ବିଶେଷ ଉଲ୍ଲେଖ-ଯୋଗ୍ୟ ଥିଲା । ପ୍ରଥମତଃ କଂଗ୍ରେସ ସଂଗଠନ ମଧ୍ୟରେ ପ୍ରତିନିଧି ନିର୍ବାଚନମୂଳକ ଆଇନକାନୁନର ପ୍ରାଧାନ୍ୟ ସ୍ୱୀକୃତ ହୋଇଥିଲା । ତତ୍ ପରଠାରୁ ଏହା କେବଳ ସମ୍ମାନାସ୍ପଦ ଲୋକଙ୍କର ଗୋଟିଏ ଗୋଷ୍ଠୀ ହୋଇ ରହିନଥିଲା । ଦ୍ୱିତୀୟତଃ ଏହା କଂଗ୍ରେସର ରାଜନୀତି ସହିତ ଗାନ୍ଧିଜୀଙ୍କୁ ଜଡିତ କରାଇ ଦେଇଥିଲା ପରକାଳରେ, ଅଳ୍ପ କେତେ ବର୍ଷ ମଧ୍ୟରେ ଭାରତର ଭବିଷ୍ୟତ ନିର୍ଦ୍ଧାରଣ ଦିଗରେ ପରିଣାମ ସୃଷ୍ଟିକାରୀ ହୋଇ ପାରିଥିଲା । ତୃତୀୟତଃ ଏହା ଭାରତ ପାଇଁ ସ୍ୱଳ୍ପକାଳ ମଧ୍ୟରେ କଂଗ୍ରେସ ଓ ମୁସଲମାନମାନଙ୍କ ମିଳିତ ଉଦ୍ୟମରେ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଦାବୀ ଉପସ୍ଥାପିତ କରିଥିଲା । ଲକ୍ଷ୍ନୌ ଚୁକ୍ତି ଅନୁଯାୟୀ ମୁସଲମାନ ଭୋଟଦାତାମାନଙ୍କ ଲାଗି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ଗଠନ ସମେତ ଭାରତ ପାଇଁ ଗୋଟିଏ ପୂର୍ଣ୍ଣ ସମ୍ବିଧାନ ପ୍ରସ୍ତୁତ ପ୍ରସ୍ତାବ ହୋଇଥିଲା । ସେଥିରେ ଯେଉଁ ରାଜ୍ୟଗୁଡିକର ମୁସଲମାନମାନେ ସଂଖ୍ୟା ଲଘିଷ୍ଠ ଥିଲେ ସେଠାରେ ସେମାନଙ୍କୁ ଗୁରୁତ୍ୱ ଦିଆଯାଇଥିଲା ଏବଂ ହିନ୍ଦୁ ଲଘିଷ୍ଠମାନଙ୍କୁ ମଧ୍ୟ ଅନ୍ୟାନ୍ୟ ଅଞ୍ଚଳରେ ସେହିଭଳି ଭାବରେ ଗୁରୁତ୍ୱ ଦିଆଯାଇଥିଲା । ନେତାମାନେ ମନେକରିଥିଲେ ଯେ, ଅଳ୍ପ କେତେ ବର୍ଷପରେ ସେହିଭଳି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀଗୁଡିକର ଚାଲୁ ରହିବା ଆବଶ୍ୟକତା ରହିବ ନାହିଁ । ଲୋହିତ ଭାରତୀୟ ପତ୍ରପତ୍ରିକାଗୁଡିକ ମାଧ୍ୟମରେ ମୂର୍ଚ୍ଛାରୋଗ ବୃଦ୍ଧି ହେବାଭଳି କଟୂକ୍ତିପୂର୍ଣ୍ଣ ସରକାରୀ ମତାମତ ଯେତେ ଅଧିକ ମାତ୍ରାରେ ଏବଂ ଆକସ୍ମିକ ଭାବେ ପ୍ରକାଶ ପାଉଥିଲା, ମୋତିଲାଲ ସେତିକି ଆନନ୍ଦିତ ହେଉଥିଲେ ।

"ଆମେ ଦୁଃଖିତ ହେବା ସଙ୍ଗେ ସଙ୍ଗେ ଉଭୟ ଭାବେ, ଆନନ୍ଦିତ ମଧ୍ୟ ହେଉଛୁ" ଯେ – ଏକ ସଂପାଦକୀୟରେ ସେ ପ୍ରକାଶ କରିଥିଲେ –"ଆମ ଭାଇମାନେ ଦାନ୍ତ କାମୁଡିବା ସଙ୍ଗେ ସଙ୍ଗେ ଛାତିରେ ମଧ୍ୟ ହାତ ବାଡାଉଛନ୍ତି । ଏହା ତାଙ୍କର ପାଚନ ପ୍ରଣାଳୀରେ ଅନିଷ୍ଟ ସୃଷ୍ଟି କରିବା ବ୍ୟତୀତ ଏଭଳି ଚମତ୍କାର ରାତ୍ରିଗୁଡିକରେ ଶୟନଜନିତ ବ୍ୟାଘାତ ମଧ୍ୟ ସୃଷ୍ଟି କରିବ । - - - - ଆମର ବନ୍ଧୁଗଣ ଭାରତର ଶିକ୍ଷିତ ପ୍ରବକ୍ତାମାନଙ୍କ ପ୍ରତି ଘୃଣା ତଥା ଅଶ୍ରଦ୍ଧାର ବୀଜ ବପନ କରିଥିବାରୁ ସେ-ସବୁର ଫଳାଫଳ ସ୍ୱରୂପ ସେମାନଙ୍କର ସମସ୍ତ ପାର୍ଥିବ-ସଂପଦୀୟ ଜୀବନ ବର୍ତ୍ତମାନର ଯନ୍ତ୍ରଣା ଜର୍ଜରିତ ହୃଦୟରେ ସେମାନଙ୍କୁ ଭୋଗ କରିବାକୁ ପଡିବ ।"

ବହୁ ପୂର୍ବରୁ ସ୍ୱାୟତ୍ତ ଶାସନ ଦାବୀ ସମ୍ମିଳିତ ଭାବେ ଏବଂ ସଂଗଠିତ ଭାବେ ଭାରତରେ, ରାଜନୈତିକ ମତାମତ ଜରିଆରେ ପ୍ରକାଶ ପାଇସାରି ଥିବାରୁ ସେହି ଦିଗରେ ପ୍ରତିକ୍ରିୟାଶୀଳ ହେବାର ଆବଶ୍ୟକତା ବ୍ରିଟିଶ ସରକାର ହୁଏତ ଅନୁଭବ କରିଥିଲେ । ଉଦାରମତବାଦୀ ଏଡୱିନ୍ ମଣ୍ଟେଗୁ ଯେ କି 1917 ମସିହାରେ ଭାରତ ରାଜ୍ୟ ପାଇଁ ସେକ୍ରେଟରୀ ଥିଲେ, ସେ 1917 ମସିହା ଅଗଷ୍ଟ 14 ତାରଖ ଦିନ ଭାରତ ସଂପର୍କରେ ବ୍ରିଟିଶର ନୀତି ନିମ୍ନମତେ ଘୋଷଣା କରିଥିଲେଃ

ମହାମହିମ ସମ୍ରାଟଙ୍କ ସରକାରୀ ନୀତି ଯାହା ସହିତ ଭାରତ ସରକାରଙ୍କ ନୀତିଗୁଡିକର ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି ତାହା ହେଉଛି, ଶାସନର ସମସ୍ତ ବିଭାଗରେ ଭାରତୀୟମାନଙ୍କୁ ଅଧିକତର ଭାବେ

ସହଯୋଗୀ କରାଇବା ଏବଂ ବ୍ରିଟିଶ ସାମ୍ରାଜ୍ୟର ଏକ ଅତ୍ୟାବଶ୍ୟକ ଅଙ୍ଗ ରୂପେ ରହିବା ସଙ୍ଗେ ସଙ୍ଗେ ଭାରତରେ ଏକ ଦାୟିତ୍ୱମୂଳକ ସରକାର ଗଠନ କରିବା ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ସ୍ୱାୟତ୍ତ ଶାସନ-ମୂଳକ ଅନୁଷ୍ଠାନଗୁଡ଼ିକର କ୍ରମାଗତ ଭାବେ ଉନ୍ନତି ସାଧନ କରିବା ।

ସେହି ଘୋଷଣାନାମାଟି ପରୋକ୍ଷ ଭାବରେ ଅଥଚ କଠୋର ଭାବରେ ଭାରତର ରାଜ୍ୟପାହ୍ୟା ଦାବୀର ପ୍ରଚ୍ଛନ୍ନ ପ୍ରତ୍ୟାଖ୍ୟାନ ଥିଲା । ନିକଟରେ ହେଉ ବା ଡେରିରେ ହେଉ ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ଘୋଷଣା କରିବା ଲାଗି ବରାବର ଦାବୀ ହୋଇ ଆସୁଥିଲା । ସେହି ଘୋଷଣାକୁ ପୂର୍ଣ୍ଣ ବିଶ୍ୱାସର ସହିତ ଗ୍ରହଣ କରିବା ଲାଗି ତଥା ଧିରେ ଧିରେ ସ୍ୱାୟତ୍ତ ଶାସନ ପାଇବା ଲାଗି ଧୈର୍ଯ୍ୟର ସହିତ ଅପେକ୍ଷା କରିବା ଦିଗରେ ଭାରତର ନେତୃବର୍ଗଙ୍କୁ ପ୍ରଭାବିତ କରିବା ପାଇଁ 1917 ମସିହା ନଭେମ୍ବର ମାସରେ ମଣ୍ଟେଗୁ ଭାରତରେ ପହଞ୍ଚିଥିଲେ । କଂଗ୍ରେସ-ଲିଗ୍‌ର ପ୍ରସ୍ତାବିତ ଯୋଜନା ସହିତ ମୁକାବିଲା କରିବାପାଇଁ ସରକାରୀ କଳ ଅନେକଗୁଡ଼ିଏ ଅବାସ୍ତବ ଅନୁଷ୍ଠାନକୁ ଆଣି ଉପସ୍ଥାପିତ କରାଇଥିଲେ । ମଣ୍ଟେଗୁ ତତ୍ପରତାର ସହିତ ସେମାନଙ୍କୁ ଶୁଣୁଥିଲେ ମଧ୍ୟ ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ଭାବେ ଜାତୀୟ ନେତାମାନଙ୍କ ସହିତ କଥାବାର୍ତ୍ତା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସ୍ୱାର୍ଥ ବିଷୟରେ ମଧ୍ୟ ସେମାନଙ୍କଠାରୁ ମନ୍ତବ୍ୟ ସଂଗ୍ରହ କରିଥିଲେ । ଯଥା ସମୟରେ ସେ କଲିକତାରେ ମୋତିଲାଲଙ୍କ ସହିତ ସାକ୍ଷାତ କରିଥିଲେ । ତତ୍‌ପୂର୍ବରୁ, ସେହିବର୍ଷ ମୋତିଲାଲ ତାଙ୍କ ପୁରାତନ ବନ୍ଧୁ ତିଳକଙ୍କୁ ବନ୍ଧୁ-ସମାଦର କରିଥଲେ । ଉଭୟେ ମିଶି ଏକ ସାଧାରଣ କର୍ମଯୋଜନା ପ୍ରସ୍ତୁତ କରିଥିଲେ । ମୋତିଲାଲ କ୍ରମାଗତ ଭାବେ କେତେ ଗୁଡ଼ିଏ ରଚନା ଲେଖି, ଆମେରିକା ଶାସନାଧୀନ ଫିଲିପାଇନ୍‌ସର ପ୍ରଶଂସାମୂଳକ ଉଦାହରଣ ଦେଇଥିଲେ । ସେଥିରେ ସେ ଲେଖିଥିଲେ ଯେ ପନ୍ଦର ବର୍ଷ ସମୟ ମଧ୍ୟରେ ସେମାନେ ପ୍ରାୟତଃ ସମ୍ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଲାଭ କରିପାରିଥିଲେ । ମଣ୍ଟେଗୁଙ୍କ ସହିତ କଥାବାର୍ତ୍ତା ହେବାବେଳେ ଅଧିକାଂଶ ପରିଚିତ ନେତା ଦେଇଥିବା ମତାମତଗୁଡ଼ିକ ମଧ୍ୟରେ ତାହା ଏକ ଆଦର୍ଶ ରୂପେ ପରିଗଣିତ ହୋଇ ପାରିଥିଲା । 1917 ମସିହା ଡିସେମ୍ବର ଚାରି ତାରିଖଦିନ ମୋତିଲାଲଙ୍କ ସହିତ ହୋଇଥିବା ତାଙ୍କ କଥାବାର୍ତ୍ତା ବିଷୟରେ ବିବରଣୀ ସେ ତାଙ୍କ "ଭାରତୀୟ ଦିନଲିପି"ରେ ଲିପିବଦ୍ଧ କରିଛନ୍ତି:

"ଅମୃତ ବଜାର ପତ୍ରିକାରେ ବୃଦ୍ଧ ତଥା ବେଶ୍ ମଜାଦାର ସଂପାଦକ ମୋତିଲାଲ ଘୋଷଙ୍କ ସହିତ ଦୀର୍ଘ ସମୟ ଧରି ଆମ୍ଭମାନଙ୍କର ସାକ୍ଷାତକାର ହୋଇଥିଲା । ସେ ଜଣେ ଅତି ସୁନ୍ଦର ଲୋକ ଏବଂ ତାଙ୍କର ବ୍ୟବହାର ମଧ୍ୟ ଅତି ସୁନ୍ଦର । ପୁଣି ସେ ଚମତ୍କାର ଭାବେ ପରିହାସପ୍ରିୟ, ଭୟଙ୍କର ରାଜନୀତିଜ୍ଞ, ଅତି ମାତ୍ରାରେ କଟୁ ପ୍ରକୃତିର ଏବଂ ଆମ୍ଭମାନଙ୍କ ଶୁଭେଚ୍ଛାଗୁଡ଼ିକ ପ୍ରତି ଖୋଲାଖୋଲି ଭାବରେ ତୀବ୍ର ଅବିଶ୍ୱାସ ପୋଷଣ କରୁଥିଲେ ମଧ୍ୟ ବ୍ୟକ୍ତିଗତ ଭାବରେ ଆମ୍ଭମାନଙ୍କୁ ସମାଦର କରୁଥିବା ଜଣେ ଉତ୍ସର୍ଗୀକୃତ ବ୍ରାହ୍ମଣ । ସେ ମତେ ସ୍ମରଣ କରାଇ ଦେଇଥିଲେ ଯେ ଭାରତୀୟ ସାମ୍ରାଜ୍ୟ ଆମ୍ଭମାନଙ୍କ ହାତରୁ ଖସି ଯାଉଥିବା କଥା ସେ ବିଗତ ପାଞ୍ଚ ବର୍ଷତଳେ ମତେ କହିଥିଲେ । ଭୟଙ୍କର ମ୍ୟାଲେରିଆ ରୋଗ ବିଷୟରେ ସେ ଉଲ୍ଲେଖ କରିଥିଲେ ଏବଂ ସେ ନିଜର ବିଶ୍ୱାସ ବ୍ୟକ୍ତ କରିଥିଲେ ଯେ କେବଳ ଜନଗଣ ହିଁ ଉଦ୍ୟମ କରି ସେହି ରୋଗଜନିତ ଭୟାନକ ମୃତ୍ୟୁହାର କମାଇ

ଦେଇପାରିବେ, ଭୟାନକ ଭାବେ ବୃଦ୍ଧି ପାଉଥିବା ଘୃଣାର ଅବସ୍ଥା ସୁଧାରି ପାରିବେ । ମୋତିଲାଲ କଂଗ୍ରେସ - ଲିଗ୍ ଯୋଜନାକୁ ରାଜ୍ୟଗୁଡିକ ପାଇଁ ଅସ୍ୱୀକାର କରି ତାହା ଭାରତ ସରକାରଙ୍କ ପ୍ରତି ପ୍ରଯୁଜ୍ୟ କରାଯିବା ସପକ୍ଷରେ ମତ ଦେଇଥିଲେ । ରାଜ୍ୟଗୁଡିକ ସଂପୂର୍ଣ୍ଣ ଦାୟିତ୍ୱମୂଳକ ସ୍ୱାୟତ୍ତ ଶାସନ ପାଇବା ଉଚିତ ବୋଲି ସେ ମତ ଦେଇଥିଲେ । ସେ ସବୁ ବିଷୟର ଖୁବ୍ ଚଞ୍ଚଳ ସମାଧାନ ଚାହୁଁଥିଲେ, କିଛିଟା ଧୈର୍ଯ୍ୟଶୀଳ ହେବାପାଇଁ ମୁଁ ବୁଝାଇ ଥିଲି । ମୁଁ କହିଥିଲି ଯେ ଜଣେ ମଣିଷ ପାଇଁ ଦଶବର୍ଷ ସମୟ ଖୁବ୍ ଦୀର୍ଘ ହୋଇପାରେ କିନ୍ତୁ ଗୋଟିଏ ଦେଶପାଇଁ ଏହା ଅତି କମ୍ ।" ସୁସ୍ପଷ୍ଟରୂପେ ଜଣେ ବ୍ରାହ୍ମଣ ଭାବରେ ଅଭିହିତ କରି ମଣ୍ଟେଗୁ ଭୁଲ କରିଥିଲେ । ସେ ଥିଲେ ଜଣେ କାୟସ୍ଥ (ଗୋଟିଏ ନିମ୍ନତର ଜାତିର) । ଦ୍ୱିତୀୟତଃ ତାହାଙ୍କ ଗୁରୁ ଶିଶିର କୁମାରଙ୍କ ଦ୍ୱାରା ଉପଦେଶାବଳୀରେ ପରିପୁଷ୍ଟ ହୋଇ, ଏହା ତାଙ୍କର ମୌଳିକ ବିଶ୍ୱାସ ଥିଲା ଯେ ଭାରତକୁ ଆପଣାର ସାମ୍ରାଜ୍ୟ ଭିତରେ ଅଙ୍ଗୀଭୂତ କରାଇଥିବା ଇଂରେଜମାନଙ୍କ ଅଭିଳାଷ କଦାପି ଉତ୍ତମ ହୋଇନପାରେ । ତଥାପି ଏହା ଏଭଳି ଥିଲା ଯେ ସେ କାର୍ମିଚେଲଙ୍କ ଭଳି ମଣ୍ଟେଗୁଙ୍କ ଅକପଟତାକୁ ଗ୍ରହଣ କରି ନେଇଥିଲେ । ତେବେ ବ୍ରିଟିଶ ରାଜନୈତିକ ଜୀବନ କେବଳ ମଣ୍ଟେଗୁ କିମ୍ବା ତାଙ୍କଭଳି ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇନଥିଲା । ତୃତୀୟତଃ ଯେତେବେଳେ ମୋତିଲାଲ କହିଥିଲେ ଯେ କେବଳ ଜନସାଧାରଣହିଁ ସେହି ମୃତ୍ୟୁହାର କମାଇ ପାରିବେ, ସେତେବେଳେ ତାଙ୍କର ଉଦ୍ଦେଶ୍ୟ ଥିଲା ସେମାନେ ଲୋକଙ୍କର (ଜନସାଧାରଣଙ୍କର) ଜୀବନ ଓ ମୃତ୍ୟୁ ସଂପର୍କିତ ବିଷୟଗୁଡ଼ିକର ଦାୟିତ୍ୱ ନେବେ । ମଣ୍ଟେଗୁ ପରାମର୍ଶ ଦେଇଥିଲେ ଯେ ସ୍ୱାସ୍ଥ୍ୟ ଓ ଶିକ୍ଷା ବିଷୟଗୁଡ଼ିକ ଲୋକପ୍ରିୟ ପ୍ରତିନିଧିମାନଙ୍କ ହାତରେ ଅର୍ପିତ ହେବା ଆବଶ୍ୟକ । କିନ୍ତୁ ମୋତିଲାଲ ଯୁକ୍ତି କରିଥିଲେ ଯେ ପୁଲିସ ବିଭାଗକୁ ମଧ୍ୟ ସେମାନଙ୍କ ହାତରେ ଅର୍ପଣ କରାଯିବା ଆବଶ୍ୟକ । ମଣ୍ଟେଗୁ ଉତ୍ତର ଦେଇଥିଲେ ଯେ ଆଉ କିଛି ଅଧିକ କାଳ ଅତିବାହିତ ହେବାପରେ ତାହା କରାଯାଇ ପାରିବ । ତାର ପ୍ରତିବାଦ ସ୍ୱରୂପ ଗୋଟିଏ ବୁଭୁକ୍ଷୁ ବ୍ରାହ୍ମଣର ନୈତିକ ଦୃଷ୍ଟାନ୍ତ ଶୁଣାଇ କହିଥିଲେ ଯେ ସେ ଗୋଟିଏ ଅଛବ ଶୂଦ୍ରଠାରୁ ଖାଦ୍ୟ ଗ୍ରହଣ କରି ନିଜର ଜାତି ତ୍ୟାଗ କରିବାକୁ ସମ୍ମତ ହୋଇଥିଲା । ପରିଣାମତଃ ବ୍ରାହ୍ମଣଟି ଜାତି ହରାଇଥିଲା ସିନା, ସେ ତା'ର କ୍ଷୁଧା ନିବାରଣ କରି ପାରିଥିଲା । ତେବେ ଯବ ଚୂନାର ଜାଉ ଭଳି ତରଳ ଖାଦ୍ୟାଂଶ ବିନିମୟରେ ମୋତିଲାଲଙ୍କ ତାଙ୍କର ଜନ୍ମଗତ ଅଧିକାରକୁ ବିକ୍ରି କରିଦେବାକୁ ଚାହିଁ ନଥିଲେ ।

ବ୍ରିଟିଶ ଶାସକମାନଙ୍କର ଅକପଟତା ସଂପର୍କରେ ମୋତିଲାଲଙ୍କ ଜୀବନୀକାର ତଥା ତାଙ୍କ ନାତି ପରମାନନ୍ଦ ଦତ୍ତ, ସେମାନଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତା ସଂପର୍କରେ ଉଲ୍ଲେଖ କରିଥିଲେ:

"ମୁଁ ତାଙ୍କୁ ଥରେ ପଚାରିଲି, "ଆପଣ ସରକାରଙ୍କ ପ୍ରତି ପଦକ୍ଷେପକୁ କାହିଁକି ବିରୋଧ କରନ୍ତି ? ଆପଣ କଣ ଚିନ୍ତା କରନ୍ତି ନାହିଁ ଯେ ସେମାନେ ଆମ୍ଭମାନଙ୍କର କୌଣସି ଉପକାର କରିପାରିବେ ନାହିଁ? "ସେ କହିଥିଲେ, "ଯେଉଁ ପରିସ୍ଥିତିରେ ସେମାନେ ଅଛନ୍ତି, ମୁଁ ଭାବୁଛି ସେମାନେ କିଛି କରିପାରିବେ ନାହିଁ - ତେଣୁ ସେ ଭଲ ହେଉ, ଖରାପ ହେଉ ବା କୌଣସିଟି ନହେଉ - ମୁଁ ସରକାରଙ୍କ

ସମସ୍ତ ପଦକ୍ଷେପକୁ ସମାଲୋଚନା କରୁଛି ।'' ''ମନ୍ଦ ପଦକ୍ଷେପଗୁଡ଼ିକୁ ସବୁ ପ୍ରକାରର ସମାଲୋଚନା କରନ୍ତୁ । (ସେଭ଼ କହିଥିଲେ ) । କିନ୍ତୁ ଏପରିକି ଉତ୍ତମ ପଦକ୍ଷେପଗୁଡ଼ିକୁ କାହିଁକି ସମାଲୋଚନା କରିବେ ? ମନେ କରାଯାଉ ଭାରତୀୟମାନଙ୍କ ପାଇଁ ସରକାର ଗୋଟିଏ ନୂତନ ହସପିଟାଲ ଆରମ୍ଭ କରିବେ କିମ୍ବା ନୂତନ ପୋଲ କିମ୍ବା ରେଳରାସ୍ତା ତିଆରି କରିବା ପାଇଁ ସ୍ଥିର କରିବେ ଯାହା ସ୍ପଷ୍ଟ ରୂପେ ପ୍ରତୀୟମାନ ହେଉଥିବା ଉତ୍ତମ ପଦକ୍ଷେପ । ସେଗୁଡ଼ିକୁ ଆପଣ ସମାଲୋଚନା କରିବେ କେମିତି ?''

''ତୁମକୁ ଆହୁରି ଶିକ୍ଷାଲାଭ କରିବାକୁ ପଡ଼ିବ'' – ସେ କହିଥିଲେ । ''ଯଦି ଗୋଟିଏ ନୂତନ ହାସପାତାଳ ଖୋଲିବା ପାଇଁ ସରକାର ସ୍ଥିର କରନ୍ତି, ତାହେଲେ ଆମକୁ ଯତ୍ନବାନ ହୋଇ ଲକ୍ଷ୍ୟ କରିବାକୁ ପଡ଼ିବ ଯେ ଏହା ବ୍ରିଟିଶ ଡାକ୍ତର ଏବଂ ଲୋହିତ ଭାରତୀୟ ନର୍ସମାନଙ୍କୁ ନିଯୁକ୍ତି ଦେବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ନୁହେଁ କିମ୍ବା ଇଂଲଣ୍ଡରେ ପ୍ରସ୍ତୁତ ଔଷଧଗୁଡ଼ିକୁ ଭାରତରେ ବିକ୍ରି କରିବା ଲାଗି ନୁହେଁ । ପୁଣି ଯଦି ସରକାର ନୂତନ ପୋଲ କିମ୍ବା ରେଳରାସ୍ତା ନିର୍ମାଣ କରିବାକୁ ଯାଉଥାନ୍ତି ତା'ହେଲେ ମୁଁ ନିଶ୍ଚିତ ରୂପେ କହିପାରେ ଯେ ସେଥିପାଇଁ ବ୍ରିଟିଶ ଅନୁଷ୍ଠାନଗୁଡ଼ିକରୁ ଜିନିଷପତ୍ର ଖରିଦ ଲାଗି ଆଦେଶ ଦିଆଯିବ, ଯାହା ଫଳରେ ବ୍ରିଟିଶ ଇଞ୍ଜିନିୟର ଏବଂ ଠିକାଦାରମାନେ ନିଯୁକ୍ତି ପାଇବେ । ମୁଁ କଦାପି ଭୁଲି ପାରିବି ନାହିଁ ଯେ ବ୍ରିଟେନ୍ ଭାରତକୁ ଶାସନ କରୁଛି ଏହାର ସ୍ୱାର୍ଥ ସାଧନ ପାଇଁ ନୁହେଁ ବ୍ରିଟିଶ ଲୋକମାନଙ୍କର ସ୍ୱାର୍ଥ ସାଧନ ପାଇଁ । ତେଣୁ ଯେଉଁ ପଦକ୍ଷେପଗୁଡ଼ିକ ଆପାତ ଦୃଷ୍ଟିରୁ ଦେଖିଲେ ଲୋକହିତକର ଜଣାପଡେ ତାହା ପ୍ରକୃତରେ ଆମ ଦେଶଲାଗି କ୍ଷତିକାରକ ।''

1910 ମସିହାରେ ଅରବିନ୍ଦ ସାଧାରଣ ଜନଜୀବନରୁ ଓହରି ଯିବା ପରଠାରୁ ବଙ୍ଗ ରାଜନୀତିରେ ବିପିନ ଚନ୍ଦ୍ର ପାଲ ଓ ମୋତିଲାଲ ଘୋଷ ଜାତୀୟବାଦୀ ମତାମତ ପରିପ୍ରକାଶର ମୁଖପାତ୍ର ହୋଇ ପଡ଼ିଥିଲେ । ସେମାନେ କଂଗ୍ରେସର ପୁନର୍ଗଠନ ଲାଗି ଲକ୍ଷ୍ଣାବର ଚାପ ପକାଇ ଆସିଥିଲେ ଏବଂ ପରିଣାମ ସ୍ୱରୂପ 1916 ମସିହାରେ ତାହା ସମ୍ଭବ ହୋଇଥିଲା । 1915 ମସିହାରେ ବଙ୍ଗ ପ୍ରାଦେଶିକ ରାଜନୈତିକ ସମ୍ମିଳନୀର ସଭାପତିରୂପେ ମୋତିଲାଲଙ୍କ ନିର୍ବାଚନ; ସେ ରାଜନୈତିକ ଜୀବନରେ ଦଣ୍ଡାୟମାନ ହୋଇଥିବାର ଏକ ପ୍ରମାଣ ଏବଂ ତତ୍ ସଙ୍ଗେସଙ୍ଗେ ଜାତୀୟବାଦୀ ମତାମତକୁ ଗୁରୁତ୍ୱ ଦେଉଥିବାର ଏକ ନିଦର୍ଶନ । ଚରିତ୍ରଗତ ଭାବେ ସେ ତାଙ୍କ ଭାଷଣରେ ସନିର୍ବନ୍ଧ ଅନୁରୋଧ କରିଥିଲେ ଯେ ଜନଗଣଙ୍କ ପ୍ରଥମ କର୍ତ୍ତବ୍ୟ ଥିଲା ସେମାନେ ନିଜ ଘରକୁ ସଜାଇ ରଖିବା । ଆପଣାର ଚାହିଦା ତଥା ଅଭିଯୋଗଗୁଡ଼ିକର ସମାଧାନ ପାଇଁ ସରକାରଙ୍କ ଉପରେ ନିର୍ଭର କରାଯିବା ପରିବର୍ତ୍ତେ ସେମାନେ ନିଜର ଉଦ୍ୟମ ବଳରେ ସେଗୁଡ଼ିକର ଦୂରୀକରଣ କରିବା ଉଚିତ ଏବଂ ସେଭଳି କରିବା ଫଳରେ ବସ୍ତୁତଃ ସେମାନେ ମୁକ୍ତ ହୋଇ ପାରିବେ । ସେଥିପାଇଁ ସେମାନଙ୍କୁ ବ୍ରିଟିଶର ବିଚାରାଳୟ ତଥା ବିଦେଶୀ ଦ୍ରବ୍ୟଗୁଡ଼ିକର ସହାୟତା ପରିହାର କରାଯିବା ଆବଶ୍ୟକ । ସେ ଯେଉଁ କର୍ମ ଯୋଜନା କରିଥିଲେ ସେଥିରେ ଥିଲା:

1. ସ୍ୱଦେଶୀ ତଥା ଜାତୀୟ ଭାବନାଗୁଡ଼ିକର ପ୍ରଚାର ଏପରି କିଛି ଅଧିକ ତ୍ୟାଗ କରାଯାଇ ମଧ୍ୟ

ଭାରତରେ ତିଆରି ଜିନିଷଗୁଡ଼ିକର କ୍ରୟ; ଦେଶୀୟ ଘରୋଇ ଶିଳ୍ପଗୁଡ଼ିକର ଉନ୍ନତି କଲ୍ପେ ଉତ୍ସାହ ପ୍ରଦାନ ଏବଂ କୃଷିଗତ ସଂସ୍କାର;

2. ପ୍ରଚାର ପତ୍ର, ଭାଷଣ ତଥା ସଭା ସମ୍ମିଳନୀ ମାଧ୍ୟମରେ ଜନ ସାଧାରଣଙ୍କୁ ଶିକ୍ଷାଦାନ;

3.ଯେତେଦୂର ସମ୍ଭବ, ଅଭ୍ୟନ୍ତରୀଣ କନ୍ଦଳଗୁଡ଼ିକର ଆପୋଷ ସମାଧାନ ଜରିଆରେ ସମାପନ; ଅବୈତନିକ ଭାବେ ହେଉ କିମ୍ବା ଦରମା ଦେଇ ହେଉ ସେଥିପାଇଁ ପ୍ରଚାରକ ନିଯୁକ୍ତ କରାଯାଇ ସେମାନଙ୍କ ଦ୍ୱାରା ଜାତୀୟବାଦର ପ୍ରଚାର;

4. ଯେତେଦୂର ସମ୍ଭବ ହୋଇପାରିବ, ଉଚ୍ଚସ୍ତ ସାଧାରଣ ତଥା ଶିଳ୍ପ ବିଜ୍ଞାନ ସମ୍ବନ୍ଧୀୟ ଶିକ୍ଷାଦାନ;
5. ସ୍ୱାସ୍ଥ୍ୟ ବ୍ୟବସ୍ଥା;
6. ଆର୍ଥିକ ଚଳଣୀ ପାଇଁ ନିୟମାବଳୀ ପ୍ରଦାନ;
7. ସମ୍ଭାବିତ ସମାଜ ସଂସ୍କାର; ଏବଂ
8. ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଉତ୍ତମ ସମ୍ପର୍କର ବିକାଶ ।

ସେ ମନ୍ତବ୍ୟକ୍ତ କରିଥିଲେ ଯେ ସରକାରଙ୍କ ପ୍ରତି ମନୋଭାବ "ଆଇନାନୁମୋଦିତ ଭାବେ ସାମ୍ବିଧାନିକ ବିରୋଧାତ୍ମକ ହେବା ଉଚିତ ଏବଂ ଦେଶର ସର୍ବୋତ୍ତମ ସ୍ୱାର୍ଥ ଦୃଷ୍ଟିରୁ ହିଁ ସହଯୋଗମୂଳକ" ହେବା ଆବଶ୍ୟକ । ସେ କହିଥିଲେ; ଭାରତୀୟ ସମ୍ବାଦପତ୍ରଗୁଡ଼ିକ ସର୍ବଦା ବିରୋଧୀ ହୋଇରହିବା ଦରକାର । ତେବେ କେବଳ ନିଷ୍ଠାପରତାର ସହିତ ଏବଂ ଉଦାରଭାବେ ସେଗୁଡ଼ିକ ସେହି ବିରୋଧାତ୍ମକ ଦାୟିତ୍ୱ ନିର୍ବାହ କରିବା ଆବଶ୍ୟକ ।[୬]

ଭାରତୀୟ ରାଜନୀତିର ଜଣେ ନିଷ୍ଠାପର ଛାତ୍ର ସେହି ଯୋଜନା ଓ ସ୍ୱଦେଶୀ ଆନ୍ଦୋଳନର ଦିନ-ଗୁଡ଼ିକରେ ବିକାଶ ଲାଭ କରିଥିବା କାର୍ଯ୍ୟକ୍ରମ ତଥା ପରେ ପରେ ଗାନ୍ଧିଜୀଙ୍କ ଦ୍ୱାରା ବିକଶିତ କାର୍ଯ୍ୟାବଳୀ, ବିଶେଷକରି ସୃଜନଶୀଳ କାର୍ଯ୍ୟକଳାପଗୁଡ଼ିକ ମଧ୍ୟରେ ଗଭୀର ସାମ୍ୟ ଲକ୍ଷ୍ୟ କରିପାରିବେ । ଏହା କୌତୁହଳର ବିଷୟ ଯେ, ମୋତିଲାଲ ଚରଖାର ଜଣେ ଦୃଢ ସମର୍ଥକ ଥିଲେ ଯାହାକୁ "ଏକ ଚମତ୍କାର ଯନ୍ତ୍ର"[୭] ବୋଲି ସେ ବର୍ଣ୍ଣନା କରୁଥିଲେ ।

ପୁଣି 1915 ମସିହା ବେଳକୁ ସରକାର ନିର୍ଦ୍ଦୟ ଭାବରେ ହଜାର ହଜାର ଲୋକଙ୍କୁ ବିନା ବିଚାରରେ ଗିରଫ କରିବା ସଙ୍ଗେ ସଙ୍ଗେ ଖବରକାଗଜଗୁଡ଼ିକୁ ବିଭିନ୍ନ ଥରରେ ଦଣ୍ଡିତ କରି ଦମନମୂଳକ ଶାସନ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଭାରତୀୟ ପ୍ରତିରକ୍ଷାମୂଳକ ଆଇନକୁ ବ୍ୟବହାର କରାଯିବାରେ ଆଇନଗତ ଦୁର୍ବଳତା ଥିବା ବିଷୟ ନେଇ କାର୍ମିଚେଲଙ୍କ ବାରମ୍ବାର ସତର୍କତାକୁ ଉପେକ୍ଷା କରାଯାଇଥିଲା । 1910 ରୁ 1917 ମସିହା ମଧ୍ୟରେ ପ୍ରେସ ଆଇନ ବଳରେ ଦଣ୍ଡିତ କରାଯାଇଥିବା

ମୋଟ ପତ୍ରପତ୍ରିକା ତଥା ଛାପାକଳର ସଂଖ୍ୟା ଥିଲା 991 । ସେମାନଙ୍କ ମଧ୍ୟରୁ 705 ଟି ଘଟଣାରେ ଅଧିକତର ଭାବେ ଅମାନତ ଦେବାପାଇଁ କୁହାଯାଇଥିଲା । 173ରୁ ଅଧିକ ନୂତନ ଛାପାକଳ ତଥା 129ଟି ନୂତନ ସମ୍ବାଦପତ୍ରର ଜନ୍ମପୂର୍ବରୁ ହିଁ ଶ୍ୱାସରୋଧ କରାଯାଇଥିଲା । ବାଇଶିଟି ପୁରାତନ ସମ୍ବାଦପତ୍ର ମଧ୍ୟରୁ ଅଠରଟି ପ୍ରବଳ ଭାବରେ ଅମାନତ ଦାବୀ ପୂରଣକରି ନପାରି ପ୍ରକାଶନ ବନ୍ଦକରିବାକୁ ବାଧ୍ୟ ହୋଇଥିଲେ । ଏବଂ ସେହି କାରଣରୁହିଁ ଅଠାଅଶିଟି ସାଧାରଣ ଛାପାକଳ ମଧ୍ୟରୁ ଚାଳିଶିଟି ବନ୍ଦ କରିଦିଆଯାଇଥିଲା । ଆନି ବେଶାନ୍ତଙ୍କ 'ନିଉ ଇଣ୍ଡିଆ' 1917 ମସିହାରେ ଦଣ୍ଡିତ ହୋଇଥିଲା । ତେଣୁ ତାହାର ଅମାନତ ଜମାଥିବା ଦୁଇହଜାର ଟଙ୍କା ଉଚ୍ଛେଦ କରାଯିବା ସଙ୍ଗେ ସଙ୍ଗେ ପୁଣି ତାହାଠାରୁ ଦଶହଜାର ଟଙ୍କା ଅମାନତ ଦାବୀ କରାଯାଇଥିଲା । ସେହି ପରିପ୍ରେକ୍ଷୀରେ ମୋତିଲାଲଙ୍କ ମୁମୂର୍ଷୁ ଅବସ୍ଥା ଥିଲା ଅତି ଆଶ୍ଚର୍ଯ୍ୟର ବିଷୟ । ଅତି ସତର୍କମୂଳକ ଭାବରେ ତ୍ରୁଟିବିଚ୍ୟୁତିମୂଳକ ତଥ୍ୟଗୁଡ଼ିକୁ ପରୀକ୍ଷା ନିରୀକ୍ଷା କରି ସରକାରଙ୍କୁ ବିରୋଧ କରୁଥିଲେ ଏବଂ ଭୁଲଭ୍ରାନ୍ତିଗୁଡ଼ିକର ପୁନର୍ବିନ୍ୟାସ ଲାଗି କ୍ରାନ୍ତିକାରୀ ପଦକ୍ଷେପ ନେବା ଦିଗରେ କୌଣସି ପରାମର୍ଶ ଦେବା ଦୃଷ୍ଟିରୁ ବିରତ ରହିଥିଲେ ।

ହଜାର ହଜାର ଯୁବକଙ୍କୁ ଗିରଫ କରାଯିବା ଦିଗରେ ସରକାର ତଗବରିଆ ଭାବେ ହଠାତ୍ ସକ୍ରିୟ ହୋଇ ଉଠିଥିବା ନିଶ୍ଚିତ ଥିଲା । କାର୍ଯ୍ୟ ନିର୍ବାହ ପରିଷଦର ବରିଷ୍ଠ ସଭ୍ୟ ପି. ସି. ଲାୟନ୍ ବଙ୍ଗଳାରେ ସେତେବେଳକାର ବିଷମ ପରିସ୍ଥିତିର ମୂଳ ଉଦ୍‌ଘାଟନ କରିଥିଲେ ଯେ ତାହା କ୍ରେଡକଙ୍କ ଅର୍ଥନୈତିକ ମତବାଦର ବିରୋଧ କରିବା ପାଇଁ ରାଜନୈତିକ ପ୍ରକୃତିମୂଳକ ଥିଲା । ଏବଂ ସେହି ମୁକାବିଲାକୁ ସମ୍ଭବପର କରିବା ପାଇଁ ଦୃଢ଼ପରିକର ଭାବେ ଆକ୍ରମଣାତ୍ମକ ପୁଲିସ ଶକ୍ତିର ନିୟୋଜନ କରାଯାଇଥିଲା । 1917 ଅଗଷ୍ଟ ମାସରେ ସେ ଲେଖିଥିଲେ ଯେ "ଜାତୀୟତାବାଦର ତେଜସ୍ୱିତା, ବିଦ୍ରୋହିମାନଙ୍କ ପ୍ରଚାରର ମୂଳ ଭିତ୍ତିଭୂମି ଉପରେ ନିହିତ ଥିଲା, ଯେଉଁମାନଙ୍କ ସହିତ ବାସ୍ତବରେ ଆମ୍ଭେମାନେ ସଂଗ୍ରାମରତ । ଏହା ସେହି 'ଧାରଣା' ଯାହା ବଙ୍ଗଳାର ଅଧିକାଂଶ ସ୍କୁଲ କଲେଜମାନଙ୍କ ମାଧ୍ୟମରେ ପ୍ରସାରିତ କରାଯାଉଛି . . . ସେହି ଗୋଟିଏ ନିଶ୍ଚିତ ଭାବଧାରା ବଙ୍ଗଳାର ସବୁ ପ୍ରମୁଖ ଲେଖକମାନଙ୍କ ଦ୍ୱାରା ତଥା ବକ୍ତାଙ୍କ ଦ୍ୱାରା ଗୃହୀତ - - - - ଶିକ୍ଷିତ ଶ୍ରେଣୀର ବହୁସଂଖ୍ୟକ ଲୋକ ଏବଂ ପ୍ରାୟତଃ ସବୁ ଛାତ୍ର ଯେଉଁମାନେ ସାଧାରଣ ପ୍ରଶ୍ନଗୁଡ଼ିକ ବିଷୟରେ ଆପାତତଃ ଚିନ୍ତା କରନ୍ତି, ସେମାନେ ସମସ୍ତେ ଏହାଦ୍ୱାରା ପ୍ରଭାବିତ । ମୁଖ୍ୟତଃ ସେହିସବୁ ଗୋଷ୍ଠୀ ଅପାଙ୍କ୍ତେୟ ବୋଲି କିମ୍ବା ଜନଗଣଙ୍କ ମଧ୍ୟରେ ସଂଖ୍ୟାଲଘୁ ବୋଲି ଆଉ ଅଧିକ କାଳ ଉପେକ୍ଷା କରାଯାଇ ପାରିବ ନାହିଁ । ସେମାନେ ଜନଗଣଙ୍କ ମଧ୍ୟରେ ଆପଣାକୁ ଚିହ୍ନଟ କରିବା ଲାଗି ଶିକ୍ଷାଲାଭ କରି ସାରିଲେଣି ଏବଂ ବ୍ରିଟିଶ ଶାସନ ଉପରେ ସେମାନଙ୍କ ଅନାସ୍ଥାଭାବ ପ୍ରଚାର କରୁଛନ୍ତି । ପରିଶେଷରେ ଆପଣାର ଦାବୀ ଉପସ୍ଥାପିତ କରିବା ପାଇଁ ଜନଗଣଙ୍କୁ ନିଜ ସହିତ ସାମିଲ୍ କରାଇନେବେ ।

ଲାୟନ୍‌ଙ୍କ ବିଶ୍ଳେଷଣ କାର୍ମିଚେଲଙ୍କ ମତାମତ ସହ ସାମ୍ୟ ରକ୍ଷା କରିପାରୁଥିଲା । କାର୍ମିଚେଲ 1917 ମସିହା ମାର୍ଚ୍ଚରେ ଭାରତ ତ୍ୟାଗ କରିଥିଲେ । ଲାୟନ୍‌ଙ୍କୁ ମଧ୍ୟ ସମଦଶା ଭୋଗ କରିବାକୁ ପଡ଼ିଥିଲା । ତେବେ ଶେଷ ପର୍ଯ୍ୟନ୍ତ ସେ ବାଛବିଚାରହୀନ ଭାବେ ଅଟକ ରଖାଇବା ସଙ୍ଗେ ସଙ୍ଗେ

ଯୁବ ପୁଲିସମାନଙ୍କ ଦ୍ୱାରା ଅତ୍ୟାଚାର ଚଳାଇ ଥିଲେ । ଜନସାଧାରଣ ମନେ କରିଥିଲେ ଯେ ତାହାଙ୍କ ବିରୁଦ୍ଧରେ ଆରୋପିତ ଅଭିଯୋଗ କଚେରୀରେ ପ୍ରମାଣ କରାଯାଇ ପାରିବା ଅସମ୍ଭବ । ମୋତିଲାଲ ସବୁବେଳେ ପୁଲିସ ରାଜର ବିରୋଧ କରୁଥିଲେ ଏବଂ କାର୍ମିଚେଲଙ୍କ ସହ ମଧ୍ୟସ୍ଥ ଭାବେ ଆପୋଷ ଆଲୋଚନା କରିଥିଲେ ଯେ ଯେଉଁ ଅଧିକାଂଶ ଯୁବକ କେବଳ ସନ୍ଦେହରେ ଅଟକ ରହିଛନ୍ତି ସେମାନଙ୍କୁ ମୁକ୍ତି ଦିଆଯାଉ । କାର୍ମିଚେଲ୍ ଭାରତ ଛାଡିବା ବେଳକୁ, 'ପତ୍ରିକା'କୁ ଉଦ୍ଧାର କରାଗଲେ, ତଥାପି ପ୍ରାୟ "ଆଠଶହରୁ ଅଧିକ ଯୁବକ, ଯେଉଁମାନଙ୍କ ମଧ୍ୟରେ ଖୁବ୍ ଧୀଶକ୍ତିବାନ୍ ମଧ୍ୟ ଅଛନ୍ତି, ସେମାନେ ଜେଲ ଭିତରେ 1818 ମସିହାର 3ୟ ରେଗୁଲେସନ୍ ଦ୍ୱାରା ସଢୁଛନ୍ତି କିମ୍ବା ଦେଶର ବିଭିନ୍ନ ଅଞ୍ଚଳରେ ଅଟକ ରହିଛନ୍ତି ।"

ସାଧାରଣ ଅବିଶ୍ୱାସ, ହଣ୍ଡାଭିତରେ ପାକ ହେଉଥିବାଭଳି ଅବସ୍ଥା ମଧ୍ୟରେ କାର୍ମିଚେଲଙ୍କ ଉତ୍ତରାଧିକାରୀ ଭାବେ ଲର୍ଡ ରୋନାଲ୍ଡସେ (ପରକାଳୀନ ଜେଟ୍‌ଲ୍ୟାଣ୍ଡର ଜମିଦାର) ଆସିଥିଲେ । କର୍ଜନୀୟ ପରମ୍ପରାରେ ବର୍ଦ୍ଧିତ (କର୍ଜନ୍‌ଙ୍କ ଭାଇସରାୟ ହେବା ଦିନଗୁଡିକରେ ସେ ତାଙ୍କର ଦେହରକ୍ଷୀ [ଏ.ଡି.ସି] ଥିଲେ) ହୋଇ ସେ ବିଶ୍ୱାସ କରୁଥିଲେ ଯେ ଇଉରୋପୀୟ ଅନୁଷ୍ଠାନ ତଥା ମୂଲ୍ୟବୋଧ-ଗୁଡିକର ବିରୋଧାତ୍ମକ ପ୍ରତିକ୍ରିୟାର ପରିଣାମ ଥିଲା ସନ୍ତ୍ରାସବାଦ । ପୁଣି ଏକ ବୈଦେଶିକ ସଂସ୍କୃତିକୁ ଗ୍ରହଣ କରାଯିବା ଫଳରେ "ଭାରତ ତାର ଆତ୍ମାକୁ ଆପଣାଛାଏଁ ବଳି ଦେଉଛି " ବୋଲି ନିଶ୍ଚିତ ଭୟ ମଧ୍ୟ ଥିଲା ସେହିଭଳି ସୃଷ୍ଟିଗୁଡିକର ଏକ କାରଣ । ପୁଣି ସେମାନଙ୍କ ମାନସିକ ସ୍ତରରେ ଏହି ସୁ-ଗଭୀର ଗହ୍ୱର ସୃଷ୍ଟି ହୋଇ ସାରିଥିବା ଯୋଗୁଁ ସେମାନଙ୍କ ସହିତ କୌଣସି ପ୍ରକାର ଯୁକ୍ତିତର୍କ କରିବା ଅସମ୍ଭବ ଥିଲା । ସେହି କାରଣରୁ ଗୋଟିଏ ନିୟମିତ ସରକାର ପାଇଁ ସେହି ବିଦ୍ରୋହାତ୍ମକ ଆନ୍ଦୋଳନକୁ ଉଚ୍ଛେଦ କରିବାକୁ ପଡିବ । ତେଣୁ ସେ ଭାରତୀୟ ସରକାରୀ କର୍ମଚାରୀ, ବ୍ରିଟିଶ ବଣିକ ଗୋଷ୍ଠୀ ତଥା 'ରାଜଭକ୍ତ' ବଡବଡ ଜମିଦାରମାନଙ୍କ ସହିତ ଦୃଢ ସମ୍ପର୍କ ସ୍ଥାପନ କରି ସାମ୍ରାଜ୍ୟର ରକ୍ଷା କରିବା ପାଇଁ ସମର୍ଥ ହୋଇଥିଲେ। କାହିଁକି ବଙ୍ଗାଳୀ ମତାମତ ମଣ୍ଟେଗୁ ଚେମ୍‌ସଫୋର୍ଡ ସଂସ୍କାରମୂଳକ ପ୍ରସ୍ତାବର ସମାଲୋଚନା କରୁଥିଲା ତାହା ସହଜରେ ଅନୁମାନ କରାଯାଇ ପାରିବ ଏବଂ ପୁଣି ଅହିଂସା, ଅସହଯୋଗ ଏବଂ ଆଇନ ଅମାନ୍ୟ ପ୍ରସ୍ତାବ ନେଇ ଗାନ୍ଧୀଜୀଙ୍କ ଆବିର୍ଭାବ ସଙ୍ଗେ ସଙ୍ଗେ କାହିଁକି ବଙ୍ଗଳା ଆଗ୍ରହର ସହିତ ଏହାକୁ ଆବୋରି ନେଇଥିଲା ଯଦିଚ ସେଠାକାର ରାଜନୈତିକ ମତାମତ ଗୋଟିଏ ଧର୍ମ ବିଶ୍ୱାସ ରୂପେ ହିଂସାତ୍ମକ ମାର୍ଗକୁ ସମ୍ପୂର୍ଣ୍ଣ ପରିହାର କରିନଥିଲା ତାହା ମଧ୍ୟ ସହଜରେ ଅନୁମେୟ ।

୭

# ଚଉଦ: କୁଲକ୍ଷଣଯୁକ୍ତ ବର୍ଷଟିଏ

ମଣ୍ଟେଗୁଙ୍କ ଘୋଷଣାଗୁଡ଼ିକୁ ବାଦ ଦିଆଗଲେ ଉଣେଇଶି ଶହ ସତର ମସିହା ଅନେକଗୁଡ଼ିଏ କୁ-ଲକ୍ଷଣ ବହନ କରିଥିବା ବର୍ଷଟିଏ ଥିଲା । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଏହିବର୍ଷ ଦେଶରେ ସତ୍ୟାଗ୍ରହ ଭଳି ପ୍ରଥମ ଦୁଃସାହସିକ ପଦକ୍ଷେପ ଆରମ୍ଭ ହୋଇଥିଲା । ଭାରତରେ ବିଦ୍ରୋହାତ୍ମକ ଷଡଯନ୍ତ୍ରମୂଳକ କାର୍ଯ୍ୟକଳାପର ଗତିବିଧି ତଥା ପ୍ରକୃତିକୁ ଅନୁଧ୍ୟାନ କରି ତାହାର ନିରାକରଣ ଲାଗି ଉପଯୁକ୍ତ ପଦକ୍ଷେପଗୁଡ଼ିକ ସମ୍ପର୍କରେ ପରାମର୍ଶ ଦେବାପାଇଁ ସେହି ବର୍ଷ ବ୍ରିଟେନ୍‌ର ବିଚାରପତି ରଉଲଟଙ୍କ ଅଧ୍ୟକ୍ଷତାରେ ଏକ କମିଟି ନିଯୁକ୍ତ ହୋଇଥିଲେ । ଘଟଣାବଳୀ ଯେଉଁଭଳି ପ୍ରମାଣିତ କରିଥିଲା, ସେହି ଉଭୟ ପଦକ୍ଷେପ ପରସ୍ପର ଭାବେ ଜାତୀୟ ଆନ୍ଦୋଳନର ଧାରାକୁ ନିର୍ଦ୍ଦିଷ୍ଟ ଦିଗରେ ପରିଚାଳିତ କରାଇବା ପାଇଁ ସହାୟକ ହୋଇଥିଲା । ମୋତିଲାଲଙ୍କ ପାଇଁ ତଥା 'ପତ୍ରିକା' ପାଇଁ ଏହା ଥିଲା ଏକ ସଦ୍ୟ ନିଦାରୁଣ ବର୍ଷ । 1917 ମସିହା ମଇ 22 ତାରିଖ ଦିନ କଲିକତା ହାଇକୋର୍ଟରେ ଗଠିତ ହୋଇଥିବା ଏକ ସ୍ୱତନ୍ତ୍ର ବେଞ୍ଚର ଗଠନ ପ୍ରଣାଳୀ ଉପରେ 'ପତ୍ରିକା' କିଛିଟା ମନ୍ତବ୍ୟ ପ୍ରକାଶ କରିଥିଲା । କଲିକତା ଉନ୍ନୟନ ନିଗମର ନିଷ୍ପତ୍ତିଗୁଡ଼ିକ ବିରୁଦ୍ଧରେ ହେବାକୁ ଥିବା ଅପିଲଗୁଡ଼ିକର ଶୁଣାଣି ପାଇଁ ତାହା ଗଠିତ ହୋଇଥିଲା । ତାହା ପ୍ରତି ସେହି ପ୍ରକାଶିତ ସମ୍ବାଦ ଅବମାନନା କରିଥିଲା ବୋଲି କୋର୍ଟ ନିଷ୍ପତ୍ତି ଗ୍ରହଣ କରିଥିଲା । ସେହି କାରଣରୁ ମୋତିଲାଲ ତଥା ସେହି ସଂସ୍ଥାର ନିର୍ଦ୍ଦେଶକମାନଙ୍କ ସହିତ ପତ୍ରିକାର ମୁଦ୍ରକଙ୍କୁ ମଧ୍ୟ କୋର୍ଟର ପୂରା ବେଞ୍ଚ ସମାନାରେ ଉପସ୍ଥିତ କରାଯାଇଥିଲା । ଜେକସନ୍, ଏରଡଲେ ନୋରଟନ୍, ସି.ଆର. ଦାସ ଏବଂ ବି. ଚକ୍ରବର୍ତ୍ତି ଭଳି ନେତୃସ୍ଥାନୀୟ ଓକିଲମାନେ ସେମାନଙ୍କ ପକ୍ଷ ସମର୍ଥନର ଦାୟିତ୍ୱ ନେଇଥିଲେ । ଆକ୍ରମଣାତ୍ମକ ଭାବରେ ପ୍ରତିରକ୍ଷା ପାଇଁ ଯୁକ୍ତି କରି ଜେକସନ୍ ସେହି ମକଦ୍ଦମାକୁ ଓଲଟାଇ ଦେଇଥିଲେ ଏବଂ ସେଭଳି ଗୋଟିଏ ଅପରାଧ ଅଭିଯୋଗକୁ ବିଚାର କରିବା ଲାଗି କୋର୍ଟର କ୍ଷମତା ସମ୍ପର୍କରେ ପ୍ରଶ୍ନ ଉତ୍‌ଥାପିତ କରିଥିଲେ । କାରଣ ସେହି ଅଭିଯୁକ୍ତ ଅପରାଧ ମଧ୍ୟ ଥିଲା ଏକ ଅଭିଯୋକ୍ତା । ପୁଣି ସେ ପ୍ରଦର୍ଶନ କରାଇ ଦେଇଥିଲେ ଯେ ଆପତ୍ତିଜନକ ଟିପ୍ପଣୀ ସହିତ ମୋତିଲାଲଙ୍କୁ ସଂଯୁକ୍ତ କରାଇଦେବା ପାଇଁ କୌଣସି ଆଇନଗତ ସାକ୍ଷ୍ୟ ପ୍ରମାଣ ନଥିଲା । ତାଙ୍କର ଯୁକ୍ତି ଥିଲା - ନିର୍ଦ୍ଦେଶକମାନେ ଗୋଟିଏ ପ୍ରତିଷ୍ଠାନରେ ଘଟୁଥିବା ପ୍ରତ୍ୟେକ ଘଟଣା ବିଷୟରେ ଅବଗତ ହେବା ଅନାବଶ୍ୟକ । ପରିଶେଷରେ ସେମାନଙ୍କ ବିରୁଦ୍ଧରେ ପ୍ରମାଣଗତ ଅଭାବ ଯୋଗୁଁ ମୋତିଲାଲ ଏବଂ ନିର୍ଦ୍ଦେଶକମାନେ ନିର୍ଦ୍ଦୋଷରେ ଖଲାସ

ହୋଇଥିଲେ । ବିଷୟଗତ ଦୃଷ୍ଟିରୁ ତାହା ଥିଲା ସେମାନଙ୍କ ଲାଗି ଏକ ବିଜୟ । ତେବେ କେବଳ ମୁଦ୍ରକଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ତିନିଶହ ଟଙ୍କା ଜୋରିମାନା ଦଣ୍ଡ ଦିଆ ଯାଇଥିଲା । ମୁଖ୍ୟ ବିଚାରପତି ତାଙ୍କ ରାୟରେ ଦର୍ଶାଇ ଦେଇଥିଲେ ଯେ ଖବରକାଗଜର ସମ୍ପାଦକଙ୍କ ନାମ ରେଜିଷ୍ଟ୍ରିଭୁକ୍ତ କରିବା ଲାଗି ବିଧାନସଭା ବ୍ୟବସ୍ଥା କରିବା ଦରକାର । ତାହା ହେଲେ ଯାଇ ଖବରକାଗଜରେ ପ୍ରକାଶିତ ସମସ୍ତ ବିଷୟ ଲାଗି ଯଥାଯଥ ଲୋକଙ୍କ ଉପରେ ଦାୟିତ୍ୱ ଆରୋପିତ କରାଯାଇ ପାରିବ । ଏହି ବିଷୟ ସମ୍ପର୍କରେ ପତ୍ରିକା ମତାମତ ଦେଇଥିଲା;

'ପତ୍ରିକା'ର ଅବମାନନାଜନକ ମକଦ୍ଦମାର ବିଚାର କରିଥିବା ହାଇକୋର୍ଟର ପାଞ୍ଚଜଣ ବିଚାରପତିଙ୍କ ସୁପାରିଶକୁ ଯଦି ସରକାର ସମର୍ଥନ କରି ପ୍ରତ୍ୟେକ ପତ୍ରିକାର ସମ୍ପାଦକଙ୍କୁ ସେମାନଙ୍କ ନାମ ପ୍ରକାଶ କରିବା ଆଇନ ପ୍ରଣୟନ କରନ୍ତି, ତାହାହେଲେ ଆମ୍ଭେମାନେ ହୁଏତ ଜଣେ ଜଣେ ଜେଲଯାତ୍ରୀ ସମ୍ପାଦକର ସେବାକୁ ସ୍ୱାଗତ କରି ବାଧିତ କରିବାକୁ ହେବ ବୋଲି ଆଶଙ୍କା କରିପାରୁ ।

'ଦି ଷ୍ଟେଟସମ୍ୟାନ୍' ଯଥେଷ୍ଟ ଅବଜ୍ଞାର ସହିତ ଆପଣାର ରୋଷ ପ୍ରକାଶ କରିଥିଲା ଯେ ମୋତିଲାଲ ଆଇନଗତ ଯନ୍ତା ଭିତରୁ ମୁକ୍ତି ପାଇବା ପାଇଁ ଧିରେ ଧିରେ ବେଶ ଗୁଢ ଉପାୟ ସବୁ ଅବଲମ୍ବନ କରିଥିଲେ । ସେଥିରେ ଲେଖାଥିଲା:

ପ୍ରତିବାଦୀଙ୍କ ପାଇଁ ନିଯୁକ୍ତ ହୋଇଥିବା ଅସଂଖ୍ୟ ଓକିଲଙ୍କ ଅନୁଯାୟୀ ଏହି ଖବରକାଗଜଟି ('ପତ୍ରିକା') ଆକସ୍ମିକ ଭାବେ ଜନସମାଗମ କରାଇ ପାରିବା ଭଳି ରଚନାବଳୀ ତଥା ଅନୁଚ୍ଛେଦ-ଗୁଡ଼ିକରେ ପରିପୁଷ୍ଟ, ଯେଉଁସବୁଗୁଡ଼ିକ ଶୂନ୍ୟରୁ ସଂଗୃହୀତ ହୋଇ ଜଣେ ପ୍ରବଂଚନାହୀନ ମୁଦ୍ରକଙ୍କ ନିକଟରେ ପହଞ୍ଚି ଯାଏ; ଯିଏ ସେ ସବୁକୁ ଆଦୌ ପାଠ କରନ୍ତି ନାହିଁ । ଏହା ଏକ ରମ୍ୟ ବିଚାର ଧାରା ଯାହା ବାବୁ ମୋତିଲାଲ ଘୋଷଙ୍କ କିମ୍ଭୁତକିମାକାର କଳ୍ପନାର ଅନୁପଯୁକ୍ତ ନୁହେଁ ।

"ଅନ୍ୟ ପକ୍ଷରେ 'ଦି ବେଙ୍ଗଲି' ସେଥିପାଇଁ ମୋତିଲାଲଙ୍କୁ ବଧାଇ ଜଣାଇ ଥିଲା:

ବାବୁ ମୋତିଲାଲ ଘୋଷ ପ୍ରବଳ ପ୍ରତିବନ୍ଧକ ବିରୁଦ୍ଧରେ ମଧ୍ୟ ସଂଗ୍ରାମ କରି, ସେହି ମକଦ୍ଦମା ଲଢି ଏକ ମହାନ୍ ସାଧାରଣ ସେବାମୂଳକ କାର୍ଯ୍ୟ କରିଛନ୍ତି । କାରଣ, ଯାହା ହେଲେବି ନ୍ୟାୟର ପରିସମାପ୍ତିଗୁଡ଼ିକ କେବଳ ବ୍ୟକ୍ତିଗତ ବିଚାର ତୁଳନାରେ ସର୍ବସାଧାରଣଙ୍କ ପାଇଁ ଅତିପ୍ରିୟ ତଥା ନିକଟତର ।"

ସେହି ବିଷୟ ସମ୍ପର୍କରେ ମୂଳକଥାଟି ଥିଲା, ମୋତିଲାଲ ଦେଇଥିବା ଟିପ୍ପଣୀଗୁଡ଼ିକ ପାଇଁ ସମ୍ପାଦକୀୟ ଦାୟିତ୍ୱ ନିଜେ ବହନ କରିବାକୁ ଇଚ୍ଛୁକ ଥିଲେ । କିନ୍ତୁ ଯେଉଁ ଓକିଲମାନେ ତାଙ୍କ ମକଦ୍ଦମାର ଦାୟିତ୍ୱ ସ୍ୱେଚ୍ଛାମୂଳକ ଭାବେ ଗ୍ରହଣ କରିଥିଲେ ସେମାନେ ଆଇନଗତ ଦୃଷ୍ଟିରୁ ତାହାଙ୍କୁ ସେହି ମକଦ୍ଦମା ଲଢିବା ପାଇଁ ପ୍ରୋତ୍ସାହିତ କରିଥିଲେ ।

ମହାତ୍ମା ଗାନ୍ଧୀ 1915 ମସିହାର ଆଦ୍ୟ ଭାଗରେ, ତାହାଙ୍କର ବିଜ୍ଞ ଉପଦେଷ୍ଟା ଗୋଖଲେଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବରୁ, ଦକ୍ଷିଣ ଆଫ୍ରିକାରୁ ଭାରତ ଫେରି ଆସିଥିଲେ । ସେଇଠି ସେ ଦୀର୍ଘ ଏକୋଇଶି ବର୍ଷ କାଳ ଅତିବାହିତ କରିଥିଲେ, ଯେଉଁଠି ଜାତିଗତ କାରଣକୁ କେନ୍ଦ୍ରକରି ବିଚ୍ଛେଦ ହୋଇ ରହିଥିବା ଭାରତୀୟ ଗୋଷ୍ଠୀଦ୍ୱାରା ସଫଳତାର ସହିତ ସେ ସତ୍ୟାଗ୍ରହ ଯୋଜନାକୁ ସଂଗଠିତ କରାଇ ପାରିଥିଲେ । ଭାରତରୁ ଦେଶାନ୍ତର ଗମନ କରି ବାସ କରିବାପାଇଁ ଚାଲି ଯାଉଥିବା କାର୍ଯ୍ୟ ବିରୁଦ୍ଧରେ ତାହାଙ୍କ ଦ୍ୱାରା 1917 ମସିହାରେ ଭାରତରେ ହୋଇଥିବା ଉଦ୍ୟମ ସଫଳ ହୋଇଥିଲା । ଜଣେ ଉଦାରପନ୍ଥୀ ତଥା ସମାଜ ସଂସ୍କାରକ ରୂପେ ଜଣାଶୁଣା ବ୍ୟକ୍ତି ଗାନ୍ଧିଜୀ, ସାଧାରଣଙ୍କ ଲାଗି ଉଦ୍ଦିଷ୍ଟ କାର୍ଯ୍ୟକଳାପଗୁଡ଼ିକରେ ସମ୍ପୂର୍ଣ୍ଣ ସତ୍ୟବାଦୀତା ଭଳି ଅନୁପମ ଉପାଦାନ ପ୍ରବର୍ତ୍ତନ କରିଥିଲେ । ପରିସ୍ଥିତିର ଆବଶ୍ୟକତା ଦୃଷ୍ଟିରୁ ସଂପୂର୍ଣ୍ଣ ଖୋଲାଖୋଲି ଭାବରେ ବିଦ୍ରୋହ କରିବାପାଇଁ ସେ ଭୟଭୀତ ନଥିଲେ । ତାହାଙ୍କର କାର୍ଯ୍ୟପ୍ରଣାଳୀ ସଂପୂର୍ଣ୍ଣ ନିଷ୍ଠାପରତା, ସୁନିର୍ଦ୍ଦିଷ୍ଟ ଭାବେ ଅହିଂସାତ୍ମକ କାର୍ଯ୍ୟକଳାପ ଏବଂ ଜଣେ ବ୍ୟକ୍ତି ପକ୍ଷରେ ମୃତ୍ୟୁ ସମେତ ଯେତେ କଷ୍ଟଦାୟକ ହେଲେ ମଧ୍ୟ ପରିଣାମକୁ ଆଦରି ନେବାପାଇଁ ସାହସ ଦାବୀ କରିଥିଲା । ଏହି ସମୟରେ ତାହାଙ୍କ ଅହିଂସାତ୍ମକ ସଂଗ୍ରାମ କୌଶଳର କାଯ୍ୟକାରିତା ବିଷୟ ସଂପୂର୍ଣ୍ଣ ରୂପେ ଅବଗତ ନଥିଲା ଏବଂ ଏହା କାର୍ଯ୍ୟକାରୀ ହୋଇପାରିବ ବୋଲି ବିଚାର କରାଯାଉ ନଥିଲା । ତଥାପି ଅଢେଇ ହଜାର ବର୍ଷର ପୁରାତନ ଧର୍ମ ବିଶ୍ୱାସ ଅହିଂସା, ଯାହା ଭାରତୀୟଙ୍କ ବ୍ୟକ୍ତିଗତ ଜୀବନର ମୂଳ ଧର୍ମମତ ଥିଲା, ତାହାକୁ ଯେତେବେଳେ ଗାନ୍ଧିଜୀ ଜନଗଣଙ୍କ ସାମୁହିକ କାର୍ଯ୍ୟକଳାପ ପାଇଁ ଏକ ଅସ୍ତ୍ର ରୂପେ ରୂପାନ୍ତରିତ କରାଇ ଦେଇଥିଲେ, ତାହା ଜନସାଧାରଣଙ୍କ ପାଇଁ ଏକ ଦୁର୍ନିବାର ଆକର୍ଷଣ ସୃଷ୍ଟି କରିଥିଲା ।

1917 ମସିହା ଏପ୍ରିଲ ମାସରେ ବିହାରର ଚମ୍ପାରଣ ଜିଲ୍ଲାର ରାଜଧାନୀ ମୋତିହାରୀ ଆସିବାଲାଗି ଗାନ୍ଧିଜୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଉଦ୍ଦେଶ୍ୟ ଥିଲା ଇଉରୋପୀୟ ନୀଳଚାଷୀମାନଙ୍କ ଅଧୀନରେ ଥିବା ରୟତମାନଙ୍କ ଦୁଃଖଦୁର୍ଦ୍ଦଶା ଅନୁଧ୍ୟାନ କରିବା । ସେମାନେ ଏକ ପୁରାତନ ଆଇନ କାନୁନ୍‌ର ସୁଯୋଗ ନେଇ ନିଜର ସର୍ବୋତ୍କୃଷ୍ଟ ଜମିର ଏକ ଚତୁର୍ଥାଂଶରେ ନୀଳଚାଷ କରିବାପାଇଁ ଚାଷୀମାନଙ୍କୁ ବାଧ୍ୟ କରୁଥିଲେ ଏବଂ ସେଥିପାଇଁ ଅମାନୁଷିକ ଭାବରେ ଦମନ ଚଳାଇଥିଲେ । ସର୍ବ ପ୍ରଥମରୁ ହିଁ ଚମ୍ପାରଣ ତ୍ୟାଗ କରିବାଲାଗି ସରକାରଙ୍କ ଆଦେଶକୁ ସେ (ଗାନ୍ଧିଜୀ) ଅବମାନନା କରିଥିଲେ ଏବଂ ସେ ସେହି ଆଦେଶକୁ ଅବମାନନା କରୁଥିବା ଯୋଗୁଁ ତାହାର ବିଚାର କରିବାପାଇଁ ଆପଣାଛାଏଁ ଯାଇ କୋର୍ଟରେ ଉପସ୍ଥିତ ହୋଇଥିଲେ । ପୁଣି ତାହାଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଦଣ୍ଡ ପ୍ରଦାନ କରିବାପାଇଁ କଚେରୀରେ ଯୁକ୍ତି କରିଥିଲେ । ସେ ସେଠାରେ ଘୋଷଣା କରିଥିଲେ ଯେ ସରକାରଙ୍କ ସେହି ଆଦେଶ ଅନ୍ୟାୟମୂଳକ ଥିଲା ଏବଂ "ଆମ୍ଭମାନଙ୍କର ସ୍ଥିତି ଲାଗି ଉଚ୍ଚତର ଆଇନକାନୁନ୍ ତଥା ଆମ ବିବେକର ଆହ୍ୱାନକୁ ଏହା ବିରୋଧ କରୁଛି ।" ତାହାଙ୍କର ଏହିଭଳି ସୂକ୍ଷ୍ମ ବିଚାର ଧାରରେ ସେହି ମାଜିଷ୍ଟ୍ରେଟ୍ ଜଣକ ବିବ୍ରତ ହୋଇ ପଡିଥିଲେ ଏବଂ ତାଙ୍କ ରାୟକୁ ସ୍ଥଗିତ ରଖିଦେଇ, ଗଭର୍ଣ୍ଣରଙ୍କ ନିକଟରୁ ସେ ସଂପର୍କରେ ପରାମର୍ଶ ଚାହିଁଥିଲେ । ଗାନ୍ଧିଜୀଙ୍କ ନିର୍ଭୟ ଗୁଣ ତାହାଙ୍କୁ ଜଣେ ଜନପ୍ରିୟ ନେତାରେ ପରିଣତ କରାଇ ଦେଇଥିଲା । ସେହି ସାହସକତାଁ ଯୋଗୁଁ ଗଭର୍ଣ୍ଣର ବିଜ୍ଞତାର ସହିତ ବିଚାର କରି ତାଙ୍କ

ବିରୁଦ୍ଧରେ ଆଗତ କରାଯାଇଥିବା ମକଦ୍ଦମାକୁ ପ୍ରତ୍ୟାହାର କରାଇ ନେଇଥିଲେ । ଗାନ୍ଧିଜୀ ସେଠାରେ ତାଙ୍କର ଅନୁଧ୍ୟାନ ଚାଲୁ ରଖିଥିଲେ । ଜଣେ ସାଧାରଣ ଚାଷୀଭଳୀ ସେମାନଙ୍କ ସହିତ ବେଶ୍ ବୁଲାବୁଲି କରିଥିଲେ ଓ ସମସ୍ୟା ଅନୁଧ୍ୟାନ କରିଥିଲେ । ସେଥିପାଇଁ ସରକାର ମଧ୍ୟ ଗୋଟିଏ କମିଶନ୍ ନିଯୁକ୍ତ କରିଥିଲେ ଏବଂ ଚାଷୀ (ନୀଳ) ମାନଙ୍କର ପ୍ରଭୁତ୍ୱର ପରିସମାପ୍ତି ଘଟିଥିଲା । ସତ୍ୟାଗ୍ରହର ସମ୍ଭାବନାପୂର୍ଣ୍ଣ ଗୁରୁତ୍ୱ ଜନସାଧାରଣଙ୍କ ମଧ୍ୟରେ ଥିବା ଚେତନଶୀଳ ରାଜନୈତିକ ଗୋଷ୍ଠୀ ନିକଟରେ ବେଶ୍ ପ୍ରକଟିତ ହୋଇ ଯାଇଥିଲା । ଅଧିକତର ଭାବେ ସାଂସାରିକ ଅଭିଜ୍ଞ ଗୋଷ୍ଠୀ ଅହିଂସା ମଧ୍ୟରେ ଆଶ୍ଚର୍ଯ୍ୟଜନକ ସମ୍ଭାବନା ସବୁକୁ ଲକ୍ଷ୍ୟ କରିପାରିଥିଲେ । କିନ୍ତୁ ସାଂସାରିକ ବିଜ୍ଞ ଗୋଷ୍ଠୀ ଉଭୟ - ଆଶା ତଥା ଆଶଙ୍କାପୂର୍ଣ୍ଣ କାର୍ଯ୍ୟ ପନ୍ଥାକୁ ସ୍ୱାଗତ କରିବା ଆରମ୍ଭ କରିଦେଇଥିଲେ । କାରଣ ତାହା ହୁଏତ ଅତି ସହଜରେ ତଥା ଅତ୍ୟଧିକ ପରିଣାମଦାୟୀ ଭାବରେ ଜନସାଧାରଣଙ୍କ ନିକଟକୁ ପ୍ରସାରିତ ହୋଇଯାଇପାରେ ! ଅତ୍ୟଧିକ ପରିଣାମଦାୟୀ ହେବ ବୋଲି ଅନୁଭବ କରି ଯେଉଁମାନେ ଭୟଭୀତ ହୋଇ ପଡିଥିଲେ ସେମାନଙ୍କ ମଧ୍ୟରେ ଜଣେ ହୋଇ ମୋତିଲାଲ ନଥିଲେ । ସେ ବିଶ୍ୱାସ କରୁଥିଲେ ଯେ ଭାରତର ନିରସ୍ତ୍ର ଜନସାଧାରଣଙ୍କ ପ୍ରଥମ ଅନୁମୋଦନ ମୁଖ୍ୟତଃ ଅହିଂସାମୂଳକ ଏବଂ ସହନଶୀଳନତା ଗଠନକାରୀ ହୋଇପାରେ । ଜଣେ ଚାଷୀଭଳି ଏବଂ ସେହିଭାବରେ ସେ ନୂତନ ଉନ୍ନତି-ମୂଳକ ଭାବଧାରାକୁ ବିନା ଦ୍ୱିଧାରେ ସ୍ୱାଗତ କରିଥିଲେ । ଆକସ୍ମିକ ଭାବରେ, ଚମ୍ପାରଣଠାରେ ହିଁ ଗାନ୍ଧିଜୀଙ୍କ ପ୍ରଥମ ମହାନ୍ ଅନୁଗତ ବାବୁ ରାଜେନ୍ଦ୍ର ପ୍ରସାଦଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ ହୋଇଥିଲା । ସେ ପରକାଳରେ କଂଗ୍ରେସର ଜଣେ ଉଚ୍ଚତମ ନେତା ହେବା ସଙ୍ଗେ ସଙ୍ଗେ ସେ ମଧ୍ୟ ହୋଇପାରିଥିଲେ ଭାରତୀୟ ସାଧାରଣତନ୍ତ୍ରର ପ୍ରଥମ ରାଷ୍ଟ୍ରପତି ।

ଜାତୀୟ ଆନ୍ଦୋଳନର ପରପର୍ଯ୍ୟାୟ, ନୂତନ ଜୀବନ ଲାଭ କରିବାପାଇଁ ନିର୍ଦ୍ଦିଷ୍ଟ ଆକାର ଚମ୍ପାରଣଠାରେ ଗ୍ରହଣ କରିଥିବା ବେଳେ ଏବଂ ଆଗାମୀ ସଂସ୍କାରଗୁଡିକ ପାଇଁ ମଣ୍ଟେଗୁ ଯୋଜନା ପ୍ରସ୍ତୁତି କରିବାରେ ବ୍ୟସ୍ତ ରହିଥିବା ବେଳେ ଭାରତ ସରକାର ରଉଲଟ କମିଟି ଗଠନ କରିଥିଲେ । ବିଦ୍ରୋହମୂଳକ ଷଡଯନ୍ତ୍ର ବଙ୍ଗଳା ପାଇଁ କିଛି ଅଦ୍ଭୁତ ନଥିଲା । ସେଠାରେ ତାହା ଶିକ୍ଷିତ ମଧ୍ୟମିତ୍ତ ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ଥିଲା । ଯୁଦ୍ଧକାଳୀନ ବର୍ଷଗୁଡିକରେ ସେଭଳି କାର୍ଯ୍ୟକଳାପ ପଞ୍ଜାବରେ ବିଶେଷ ବିସ୍ତାର ଲାଭ କରିଥିଲା ଏବଂ ତାହା ଗୋପନ ଭାବେ ମଧ୍ୟ ରହିପାରି ନଥିଲା । ପଞ୍ଜାବର ଚାଷୀମାନେ ଏପରିକି ସୈନ୍ୟ ବାହିନୀରେ ଥିବା ଶିଖମାନେ ମଧ୍ୟ ସେସବୁ କାର୍ଯ୍ୟସହିତ ସଂଯୁକ୍ତ ହୋଇ ପଡିଥିଲେ । ଭାରତୀୟମାନେ, ମୁଖ୍ୟତଃ ପରବର୍ତ୍ତୀ ବର୍ଷଗୁଡିକରେ କାନାଡା ତଥା ଆମେରିକାକୁ ଚାଲି ଯାଉଥିବା ଶିଖମାନେ ଗୋଟିଏ ବିପ୍ଳବାତ୍ମକ ଦଳ- ଘାଦର - ଗଠନ କରିଥିଲେ ଯାହା ବଙ୍ଗଳାରେ ଯୁଗାନ୍ତର ଗୋଷ୍ଠୀ ସହିତ ସଂପର୍କ ରକ୍ଷା କରିଥିଲା ! ଯୁଦ୍ଧ ଆରମ୍ଭ ହେବା ପରେ ପରେ ସେମାନଙ୍କ ମଧ୍ୟରୁ ଅନେକ୍ ଶିଖ ଭାରତକୁ ଚାଲି ଆସିଥିଲେ, ବିଦେଶୀ ସହାୟତା କ୍ରମେ ଗୋଟିଏ ସଶସ୍ତ୍ର ବିଦ୍ରୋହ ସଂଗଠିତ କରାଇବା ପାଇଁ । ପୂର୍ବେ କୁହାଯାଇଥିବା ଭଳି ସେହି ବିରାଟ ଯୋଜନାଟି ପଣ୍ଡ ହୋଇ ଯାଇଥିଲା । ତଥାପି ସେହିଭଳି ଉଦ୍ୟମଗୁଡିକ ଚାଲୁ ରହିଥିଲା । 1916 ମସିହାର ଶେଷ ବେଳକୁ ସେହିଗୁଡିକ ପଞ୍ଜାବରେ ଏବଂ ସେହିଭଳି ଭାବରେ ବଙ୍ଗଳାରେ ମଧ୍ୟ ଉଚ୍ଛେଦ ହୋଇ ଯାଇଥିଲା । ଯୁଦ୍ଧରେ ସନ୍ଧିବଦ୍ଧ ମିଳିତ ରାଜ୍ୟ ଗୋଷ୍ଠୀର ଶେଷ

ବିଜୟ ଆପାତତଃ ନିଶ୍ଚିତ ମନେ ହୋଇଥିଲା । ନୂତନସଂସ୍କାର ଗୁଡିକ କାର୍ଯ୍ୟକାରୀ ହେବା ପର୍ଯ୍ୟନ୍ତ ବେଶ ଭଲ ଭାବରେ ସରକାର ହୁଏତ ଅପେକ୍ଷା କରିପାରିଥାନ୍ତେ, କିନ୍ତୁ ସକ୍ରିୟ ବିଦ୍ରୋହ ଯାହାର ମୂଳ ଭିତ୍ତିକୁ ସଠିକ୍ ଭାବରେ ଅନୁଧ୍ୟାନ କରାଯାଇ ନଥିଲା କିମ୍ବା ସେହି ବିଷୟରେ କୌଣସି ବିଚାର କରାଯାଇ ନଥିଲା, ତାହାକୁ କିମ୍ପିତ୍ କିମ୍ପିତ୍ କରି ଦୂର କରିବା ଲାଗି ଉଦ୍ୟମ ଅଧିକ ପରିମାଣରେ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହା ଅନୁଭବ କରାଯାଇଥିଲା ଯେ ଦୃଢଭାବରେ ଶାସନ କରାଯିବାର ପରିଣାମରେ ହିଁ ଭାରତରେ ଲୋକଙ୍କୁ ଶୃଙ୍ଖଳିତ ତଥା ରାଜଭକ୍ତ କରାଯାଇ ପାରିବ ।

ସେହି କମିଟି (ରଉଲଟ୍)ର ରିପୋର୍ଟଟି ଦିଲ୍ଲୀର ସବୁରି ହୃଦୟରେ (ସରକାରୀ ମହଲରେ) ବେଶ ଆନନ୍ଦ ସୃଷ୍ଟି କରିଥିଲା । ତାହା ଅନୁମୋଦନ କରିଥିଲା ଯେ ସରକାର ବିଦ୍ରୋହମୂଳକ କାର୍ଯ୍ୟକଳାପଗୁଡ଼ିକୁ ଆପଣାର ନିୟନ୍ତ୍ରଣାଧୀନ ରଖିବାକୁ ସମର୍ଥ ହେବାପାଇଁ ବସ୍ତୁତଃ ସାକ୍ଷ୍ୟ ପ୍ରମାଣାତ୍ମକ ଆଇନ କାନୁନ୍ ସବୁକୁ ପରିହାର କରି ଅନ୍ୟ ସ୍ଥାୟୀ ନିୟମମାନ ପ୍ରଣୟନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଆବେଦନ କରାଯିବା ଅଧିକାର ପରିହାର କରିନେଇ ଗୁରୁତର ଦଣ୍ଡର ଅନୁମୋଦନ କରିବା ଆବଶ୍ୟକ ।ସେହି ସୁପାରିଶଗୁଡ଼ିକ 1918 ମସିହା ଜୁଲାଇ ମାସରେ ପ୍ରକାଶ ପାଇବାକୁ ଥିବା ମଣ୍ଟେଗୁ-ଚେମସ୍‌ଫୋର୍ଡ ସୁପାରିଶର ଚାରିମାସ ପୂର୍ବରୁ 1918 ଏପ୍ରିଲ୍ ମାସରେ ମୁକ୍ତିଲାଭ କରିଥିଲା । ଏବଂ ସେହି କାରଣରୁ ସେହି ସଂସ୍କାରମୂଳକ ଯୋଜନା ପ୍ରତି ଲୋକମତକୁ ବିଶେଷଭାବେ ଆକର୍ଷିତ କରାଇ ପାରି ନଥିଲା । ବ୍ରିଟିଶ ସରକାରଙ୍କ ପ୍ରତି ଆନ୍ତରିକ ଭାବେ ସମର୍ଥନ କରୁଥିବା ବ୍ୟକ୍ତିବୃନ୍ଦଙ୍କ ପ୍ରତି ଜାତୀୟତାବାଦୀମାନଙ୍କ ସନ୍ଦେହଗୁଡ଼ିକ ବେଶ ଦୃଢ ହୋଇଥିଲା । ବମ୍ବେରେ ଅନୁଷ୍ଠିତ 1918 ମସିହାର ସ୍ୱତନ୍ତ୍ର କଂଗ୍ରେସ ଅଧିବେଶନରେ ଉଦାରପନ୍ଥୀମାନେ (ଗାନ୍ଧିଜୀଙ୍କ ସମେତ) କଂଗ୍ରେସରୁ ସ୍ୱତନ୍ତ୍ର ହୋଇଯାଇ ଜାତୀୟ ମୁକ୍ତି ସଂଘ (ନେସନାଲ୍ ଲିବରାଲ୍ ଫେଡେରେସନ୍) ଗଠନ କରିଥିଲେ । ଆସନ୍ତା ପନ୍ଦର ବର୍ଷ ମଧ୍ୟରେ ସ୍ୱାୟତ୍ତ ଶାସନ ଦାବୀ କଂଗ୍ରେସ ଉପସ୍ଥାପିତ କରିଥିଲା । ମଣ୍ଟେଗୁଙ୍କ ସମ୍ପର୍କରେ ମୋତିଲାଲ ପ୍ରକାଶ କରିଥିବା ଯୁକ୍ତିଗୁଡ଼ିକ, ଜାତୀୟବାଦୀମାନଙ୍କୁ ପ୍ରଭାବିତ କରିପାରିବା ଭଳି ମନେ ହୋଇଥିଲା । ସେମାନଙ୍କ ମଧ୍ୟରେ ସେତେବେଳେ ସର୍ବାଧିକ ପ୍ରଭାବଶାଳୀ ଥିଲେ ଶ୍ରୀମତୀ ଆନି ବେଶାନ୍ତ । ବମ୍ବେରୁ ଅନ୍ୟ କେତେକ ମୁଖ୍ୟ ବଙ୍ଗାଳୀ ଜାତୀୟବାଦୀଙ୍କ ସହିତ ମୋତିଲାଲ ପୁନା ଯାଇଥିଲେ ତିଳକଙ୍କୁ ସାକ୍ଷାତ କରିବାପାଇଁ ଏବଂ ସେଠାରେ ହୋମ୍ ରୁଲ୍ ଲିଗର ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ପ୍ରବଳ ଅସୁସ୍ଥତାବଶତଃ ମୋତିଲାଲ ପ୍ରଥମ ଦିନ ବୈଠକରେ ଉପସ୍ଥିତ ହୋଇପାରି ନଥିଲେ । ତିଳକଙ୍କ କାନ୍ଧରେ ଭରା ଦେଇ ଦେଇ ସେ ଦ୍ୱିତୀୟ ଦିନ ସଭାରେ ଯୋଗ ଦେଇଥିଲେ ଏବଂ ଖୁବ୍ କ୍ୱଚିତ କଥା କହି ପାରିଥିଲେ । କିନ୍ତୁ ଯେତେବେଳେ ମାନ୍ଦ୍ରାଜର ଦେଶପ୍ରେମୀ ତଥା ବିଦ୍ରୋହ-ମୂଳକ କାର୍ଯ୍ୟକଳାପରେ ଅଭିଯୁକ୍ତ ହୋଇ ସାତବର୍ଷ ଜେଲ୍ ଜୀବନ ଭୋଗ କରି ଅଳ୍ପ କିଛିଦିନ ତଳେ ମୁକ୍ତିଲାଭ କରିଥିବା ଚିଦାମ୍ବରମ୍ ପିଲ୍ଲାଇଙ୍କ ସହ ତାହାଙ୍କୁ ପରିଚିତ କରାଇ ଦିଆଯାଇଥିଲା ସତେ ଯେମିତି ତାହାଙ୍କ ସମସ୍ତ ଦୁର୍ବଳତା କୁଆଡେ ହଜେଇ ଯାଇଥିଲା ଏବଂ ସେ ତାଙ୍କ ବନ୍ଧୁଙ୍କୁ ଆଗ୍ରହର ସହିତ କୁଣ୍ଢାଇ ପକାଇଥିଲେ ।

ଏହିଭଳି ଭାବରେ, ତୁଳନାତ୍ମକ ଦୃଷ୍ଟିରୁ 1918 ମସିହା ଶାନ୍ତ ଭାବରେ ଅତିବାହିତ ହୋଇ ଯାଇଥିଲା ଯାହା ପ୍ରକୃତରେ ଝଡ ପୂର୍ବରୁ ଏକ ନୀରବ ବାତାବରଣ ସୃଷ୍ଟିହେବାର ଆଶଙ୍କା ପ୍ରମାଣିତ କରିଦେଇଥିଲା ।

୨

# ପନ୍ଦର: ତୁମୁଳ ଆନ୍ଦୋଳନ

1918 ମସିହା ନଭେମ୍ବର ମାସ ଏଗାର ତାରଖ ଦିନ ମହାଯୁଦ୍ଧ ଶେଷ ହୋଇଥିଲା । ସେଥିରେ ବ୍ରିଟେନ୍ ଏବଂ ତାହା ସହିତ ସନ୍ଧିବଦ୍ଧ ରାଜ୍ୟଗୋଷ୍ଠୀର ବିଜୟ ହୋଇଥିଲା । ଜର୍ମାନୀର ଔପନିବେଶିକ ସାମ୍ରାଜ୍ୟ ଇତରୋପରେ ଅଷ୍ଟ୍ରୀୟ-ହଙ୍ଗେରୀୟ ସାମ୍ରାଜ୍ୟ ଏବଂ ଏସିଆର ପଶ୍ଚିମାଞ୍ଚଳରେ ଥିବା ତୁର୍କୀ ସାମ୍ରାଜ୍ୟ ସମେତ ଜର୍ମାନୀ ଖଣ୍ଡ ବିଖଣ୍ଡିତ ହୋଇଯାଇ ଥିଲା । ଅଷ୍ଟ୍ରିଆ ଏବଂ ତୁର୍କୀର କ୍ଷମତାକୁ ହ୍ରାସ କରାଯାଇ ଗୋଟିଏ ଜାତୀୟବାଦୀ ରାଜ୍ୟ ସ୍ତରକୁ ଆନୀତ କରାଯାଇଥିଲା । ରୁଷରେ ବଲସେଭିକ୍ ଆନ୍ଦୋଳନର ବିଜୟ ହୋଇଥିଲା ଏବଂ ସେଠାରେ ତାଙ୍କ ପରିବାର ସହିତ ଜାର୍ ଶାସକ ତଥା ସେଠିକାର ଅଧିକାଂଶ 'ସମ୍ଭ୍ରାନ୍ତଶୀଳ ଗୋଷ୍ଠୀର ଉଚ୍ଛେଦ କରା ଯାଇଥିଲା । ବୈଦେଶିକ ସମ୍ପର୍କ ସ୍ଥାପନ ଦିଗରେ ଆଫଗାନିସ୍ଥାନ ତା'ର ସ୍ୱାଧୀନତା ଦାବୀକୁ ପ୍ରତିଷ୍ଠିତ କରାଇଥିଲା ଏବଂ ଦକ୍ଷିଣ-ପଶ୍ଚିମାଞ୍ଚଳର ସୀମାନ୍ତ ଅଞ୍ଚଳଗୁଡ଼ିକର ସରକାରଙ୍କୁ ବିଚଳିତ କରାଇ ଦେଇଥିଲା । ଏହିସବୁ ଘଟଣାଗୁଡ଼ିକର ଫଳାଫଳ ଭାରତ ସରକାରଙ୍କ ନୀତିଗୁଡ଼ିକରେ ପ୍ରତିଫଳିତ ହେଉଥିଲା ଏବଂ ଭାରତୀୟ ଜନସାଧାରଣଙ୍କ ପ୍ରତିକ୍ରିୟାରେ ମଧ୍ୟ ସରକାର ଭୟଭୀତ ହୋଇ ଯାଇଥିଲେ ଯେ ଯଦିଚ ଜର୍ମାନୀ ସହିତ ବିଦ୍ରୋହୀମାନଙ୍କର ହୋଇଥିବା ଷଡଯନ୍ତ୍ରକୁ ଧୂଳିସାତ୍ କରାଇ ଦିଆଯାଇଥିଲା, ସେମାନେ ଯେ ବଲସେଭିକ୍‌ମାନଙ୍କ ସହାୟତା ଲାଗି ଅନ୍ୟ ଏକ ଉଦ୍ୟମ ଆରମ୍ଭ ନ କରିବେ ତାହା କିପରି ବା ଜଣାପଡ଼ିବ ! ଆପାତତଃ ସେହି ଭୟ ଯୋଗୁଁ ରଉଲଟ କମିଟିର ସୁପାରିଶଗୁଡ଼ିକୁ ଭିତ୍ତିକରି ଆଉ ଦୁଇଟି ଆଇନ ଲାଗି ପ୍ରସ୍ତାବ ଆଗତ କରାଯାଇଥିଲା ଏବଂ ସେଗୁଡ଼ିକୁ କାର୍ଯ୍ୟକାରୀ କରାଯାଇଥିଲା । ସେଗୁଡ଼ିକରେ ଥିଲା ଯେ ପୁଲିସ ତଥା କାର୍ଯ୍ୟନିର୍ବାହୀ ଅଫିସରମାନେ ପ୍ରକୃତରେ ନିର୍ଦ୍ଧାରଣ କରିପାରିବେ ଯେ କେଉଁ କାର୍ଯ୍ୟଗୁଡ଼ିକ ବିଦ୍ରୋହମୂଳକ ଷଡଯନ୍ତ୍ର ରୂପେ ବିବେଚିତ ହୋଇ ପାରିବ । ତତ୍ ସହିତ ଥିଲା ମାଜିଷ୍ଟ୍ରେଟ୍‌ଙ୍କ ନିକଟରେ ଅର୍ପଣଜନିତ କାର୍ଯ୍ୟପନ୍ଥା ବିନା ମଧ୍ୟ ତତ୍‌କ୍ଷଣାତ୍ ବିଚାର, ଆଇନଗତ ଦୃଷ୍ଟିରୁ ଅଭିଯୁକ୍ତକୁ କୌଣସି ଆବେଦନ କରିବାଲାଗି ସୁଯୋଗ ନ ଦିଆଯିବା ତଥା କୌଣସି ଉଚ୍ଚତର ବିଚାରାଳୟରେ ଆବେଦନ କରିବାକୁ ଦିଆ ନଯିବା ଏବଂ ଯେ କୌଣସି ଲୋକକୁ ଗିରଫ କରିପାରିବା, ଅନ୍ତରୀଣ ବନ୍ଦୀ କରିପାରିବା ତଥା ବନ୍ଦୀକରି ବାହାରକୁ ପଠାଇଦେଇ ପାରିବା କାର୍ଯ୍ୟ ସମ୍ପୂର୍ଣ୍ଣ ରୂପେ ଶାସକମାନଙ୍କ ଇଚ୍ଛାଧୀନ ବିଷୟ ରଖାଯିବା ପ୍ରଭୃତି । ଭାଇସରାୟଙ୍କ ପରିଷଦର ସମସ୍ତ ନିର୍ବାଚିତ ବେସରକାରୀ ସଭ୍ୟ ଦୃଢ଼ ଭାବରେ ସେହି ବିଲ୍‌ଗୁଡ଼ିକର ବିରୋଧ କରିଥିଲେ । ତଥାପି ସରକାରୀ

ସଭ୍ୟଙ୍କ ଦ୍ୱାରା ସଂଖ୍ୟା ଗରିଷ୍ଠତା ହାସଲ କରି 1919 ମସିହା ମାର୍ଚ୍ଚ ତିନି ତାରଖ ଦିନ ସେଗୁଡିକ ଆଇନରେ ପରିଣତ ହୋଇଯାଇଥିଲା । କେତେଜଣ ସଭ୍ୟ ସେହି କାରଣରୁ ରାଜ ପରିଷଦରୁ ଇସ୍ତଫା ଦେଇଥିଲେ । ଜିନ୍ନା ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ସମଗ୍ର ଭାରତ ରୋଷପରାୟଣ ଭାବେ ସରକାରଙ୍କ ବିରୁଦ୍ଧରେ ଜାଗ୍ରତ ହୋଇ ଉଠିଥିଲା । ସର୍ବଶ୍ରେଷ୍ଠ ସରକାରୀ ସମର୍ଥନକାରୀ ମଧ୍ୟ ଏହାକୁ ଏକ ପରମ ବିଶ୍ୱାସ ଭଙ୍ଗକାରୀ କାର୍ଯ୍ୟ ରୂପେ ବିବେଚନା କରିଥିଲା ।

ସେହି ବିଲ୍‌ଗୁଡିକ ଗୃହୀତ ହେବା ପୂର୍ବରୁ ଫେବୃଆରୀ ତିନି ତାରିଖ ଦିନ ବଙ୍ଗଳାର ଜାତୀୟବାଦୀ-ମାନେ କଲିକତା ଟାଉନ ହଲଠାରେ ସାଧାରଣ ସଭାର ଆୟୋଜନ କରିଥିଲେ । ସେହି ସଭାରେ ଏତେ ମାତ୍ରାରେ ଜନସମାଗମ ହୋଇଥିଲା ଯେ ସେହି ଅତି ପ୍ରବଳ ଲୋକଙ୍କ ସମାବେଶକୁ ନେଇ ହଲ ବାହାରେ - ଖୋଲା ସ୍ଥାନରେ ସଭା କରିବାକୁ ହୋଇଥିଲା । ସେତେବେଳେ ବାସ୍ତରି ବର୍ଷ ବୟସ୍କ ମୋତିଲାଲ ଦୁର୍ବଳ ସ୍ୱାସ୍ଥ୍ୟରେ ମଧ୍ୟ ସେହି ସଭାରେ ଯୋଗ ଦେଇଥିଲେ । ତାଙ୍କର ଅନୁଗାମୀମାନଙ୍କ ଦ୍ୱାରା କାନ୍ଧରେ ବୁହାହୋଇ ସେ ହଲର ସିଢି ପର୍ଯ୍ୟନ୍ତ ଯାଇଥିଲେ । ଅଧିକାଂଶ ଉଦାରପନ୍ଥୀ ନେତା ସେଥିରେ ଯୋଗ ଦେଇଥିଲେ । ସେହି ବିଲ୍‌ଗୁଡିକୁ "ଗୁରୁତର ଭାବେ ବିରୋଧ" କରାଯାଇଥିବା ମୁଖ୍ୟ ପ୍ରସ୍ତାବଟି ମୋତିଲାଲଙ୍କ ଦ୍ୱାରା ଆଗତ କରାଯାଇଥିଲା । ସେଥିରେ ସେହି ଆଇନ ଗୁଡିକ ଥିଲା ଯାହାକି - "ଭାରତୀୟ କାର୍ଯ୍ୟ ନିର୍ବାହୀ ଅଫିସର ଏବଂ ପୁଲିସ୍ ହାତରେ ଏଭଳି ସ୍ୱେଚ୍ଛାମୂଳକ ତଥା ଦାୟିତ୍ୱହୀନ କ୍ଷମତା ପ୍ରଦାନ କରିବ, ଯାହା ବ୍ରିଟିଶ ଜନସାଧାରଣଙ୍କର ମୌଳିକ ଅଧିକାର ତଥା ସ୍ୱାଧୀନତାର ବିରୁଦ୍ଧାଚରଣ ଅଟେ । ପୁଣି ତାହା ଆଇନଗତ ତଥା ନ୍ୟାୟମୂଳକ ଶାସନ ସମ୍ବନ୍ଧୀୟ ସମସ୍ତ ଉନ୍ନତ ଚିନ୍ତାଧାରାର ପ୍ରତିକୂଳଜନକ - - - ଏହି ସମ୍ମିଳନୀ ମଧ୍ୟ ସନିର୍ବନ୍ଧ ଅନୁରୋଧ କରେ ଯେ ଭାରତରେ ଶୀଘ୍ର ପ୍ରତିନିଧିମୂଳକ ଶାସନ ପ୍ରବର୍ତ୍ତନ ହେବାକୁ ଥିବା ଦୃଷ୍ଟିରୁ ସରକାର ବର୍ତ୍ତମାନ ଯେଉଁ ବିଲ୍‌ଗୁଡିକ ଗ୍ରହଣ କରିବାକୁ ଯାଉଛନ୍ତି ସେଥିରୁ କ୍ଷାନ୍ତ ରହିବା ଉଚିତ କିମ୍ବା ଅତି ପକ୍ଷରେ ଲୋକପ୍ରିୟ ଜନମତ ଅନୁଯାୟୀ ଭାରତରେ ବିଧାନ ପରିଷଦ ଗଠିତ ହେବା ପର୍ଯ୍ୟନ୍ତ ସେଗୁଡିକୁ ସ୍ଥଗିତ ରଖିବା ଉଚିତ ।"

କିନ୍ତୁ ଗାନ୍ଧିଜୀ ସେହି ବିଲ୍ ଗୁଡିକୁ ଏକ "ଖୋଲାଖୋଲି ଆହ୍ୱାନ" ରୂପେ ଗ୍ରହଣ କରିଥିଲେ । କୌଣସି ବାକ୍ୟ ବ୍ୟୟ ନକରି ସତ୍ୟାଗ୍ରହ ଜରିଆରେ ତାହାର ପ୍ରତିରୋଧ କରାଯିବା ଆବଶ୍ୟକ ବୋଲି ମନେ କରିଥିଲେ । ସେ ତାଙ୍କର ଅଳ୍ପ କେତେକ ନିକଟତମ ବନ୍ଧୁଙ୍କୁ ଏକତ୍ର କରିଥିଲେ ଏବଂ ସତ୍ୟାଗ୍ରହୀ-ମାନଙ୍କର ଏକ ମୁଖ୍ୟ ତାଲିକା କରିବା ସଙ୍ଗେ ସଙ୍ଗେ ସେହି ଯୋଜନା ସମ୍ପର୍କରେ ଖବରକାଗଜ-ଗୁଡିକୁ ଜଣାଇ ଦେଇଥିଲେ । ସେ ତାଙ୍କର ବନ୍ଧୁମାନଙ୍କ ସହିତ ପରାମର୍ଶ କରି ସାରା ଦେଶରେ ଏକ ସାଧାରଣ ହରତାଳ ପାଳନ କରିବାପାଇଁ ଆହ୍ୱାନ ଦେଇଥିଲେ । ସେ କହିଥିଲେ "ଭାରତର ସମସ୍ତ ଲୋକ ସେମାନଙ୍କ ନିଜ ନିଜର ବ୍ୟବସାୟ ସେହି ଦିନକ ପାଇଁ ବନ୍ଦ ରଖନ୍ତୁ ଏବଂ ସେହି ଦିନକ ପାଇଁ ଉପବାସ ପାଳନ କରିବା ସଙ୍ଗେ ସଙ୍ଗେ ପ୍ରାର୍ଥନା କରନ୍ତୁ । ସବୁ ପ୍ରଦେଶଗୁଡିକ ସେଇ ଆହ୍ୱାନକୁ ଗ୍ରହଣ କରିବେ କି ନାହିଁ, ତାହା କହିବା କଷ୍ଟଦାୟକ - - - - କିନ୍ତୁ ବିଶେଷ ନିଶ୍ଚିତଭାବେ ମୁଁ ଅନୁଭବ କରେ ଯେ ବମ୍ବେ, ମାନ୍ଦ୍ରାଜ, ବିହାର ଏବଂ ସିନ୍ଧୁ ପ୍ରଦେଶର ଲୋକେ ତାହାକୁ ଗ୍ରହଣ

କରିବେ ।" ମନେହୁଏ ବଙ୍ଗଳା, ପଞ୍ଜାବ ଏବଂ ମହାରାଷ୍ଟ୍ର ସଂପର୍କରେ ଗାନ୍ଧିଜୀ ସମ୍ଭବତଃ ସନ୍ଦିହାନ ହୋଇ ଉଠିଥିଲେ, ସେଠିକାର ଜନଗଣଙ୍କର ବିଦ୍ରୋହାତ୍ମକ ପରମ୍ପରା ଯୋଗୁଁ । ପ୍ରଥମେ ସେହି ହରତାଳ ପାଇଁ ମାର୍ଚ୍ଚ ତିରିଶ ତାରିଖ ଦିନ ଧାର୍ଯ୍ୟ କରାଯାଇଥିଲା । କିନ୍ତୁ ପରେ ପରେ ତାହା ଏପ୍ରିଲ ଛଅ ତାରିଖକୁ ଘୁଞ୍ଚାଇ ଦିଆଯାଇଥିଲା । ଗାନ୍ଧିଜୀଙ୍କ ସନ୍ଦେହ ସେତେବେଳେ ଦୂରୀଭୂତ ହୋଇଥିଲା ଯେତେବେଳେ "ସମଗ୍ର ଭାରତରେ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତ ଗ୍ରାମ ତଥା ସହର-ଗୁଡ଼ିକରେ ସଂପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା ।" ଆପଣାର ଭିତ୍ତିଭୂମି ଉପରେ ତଥାପି ଅନିଶ୍ଚିତ ଥିବା ତାଙ୍କ ମତରେ ତାହା ଥିଲା "ଏକ ଅତି ଆଶ୍ଚର୍ଯ୍ୟଜନକ ଦିନ ।" ତାହା ମଧ୍ୟ ଭାରତ ପାଇଁ ଠିକ୍ ସେହିଭଳି ଆଶ୍ଚର୍ଯ୍ୟଜନକ ଥିଲା । କାରଣ ଗୋଟିଏ ଜାତୀୟ କାର୍ଯ୍ୟ ପାଇଁ ସାମୂହିକ ଭାବେ ଜନଗଣଙ୍କ ଯୋଗଦାନ ପ୍ରଥମ ଥର ପାଇଁ ଏହା ଅନୁଭବ କରିଥିଲା ।

୭

ଭୁଲ ବୁଝାମଣା ଯୋଗୁଁ ମାର୍ଚ୍ଚ 30 ତାରିଖ ଦିନ ଦିଲ୍ଲୀରେ ହରତାଳ ପାଳନ କରାଯାଇଥିଲା । ମାର୍ଚ୍ଚ 20 ତାରିଖ ଦିନ ହିନ୍ଦୁ ଓ ମୁସଲମାନମାନଙ୍କର ଏକ ମିଳିତ ଶୋଭାଯାତ୍ରା ଉପରକୁ ପୁଲିସ ପକ୍ଷରୁ ଗୁଳିଚାଳନା କରାଯାଇଥିଲା । ତାହା ସାଧାରଣ ଅସନ୍ତୋଷକୁ ଆହୁରି ତୀବ୍ର କରାଇ ଦେଇଥିଲା ଏବଂ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କ ନେତୃତ୍ୱରେ ଆହୁରି ଗୋଟିଏ ବିରାଟ ଶୋଭାଯାତ୍ରା ପୁଲିସକୁ ଅବମାନନା କରିଥିଲେ । ସେମାନେ, ସେହି ସମୟ ପର୍ଯ୍ୟନ୍ତ ଦେଖାଦେଇ ନଥିବା ହିନ୍ଦୁ-ମୁସଲମାନ ଏକତାର ପ୍ରଦର୍ଶନ କରିଥିଲେ । ବମ୍ବେ ଏବଂ ଅହମଦାବାଦରେ ପୁଲିସର ପ୍ରତିରୋଧ ଯୋଗୁଁ ସେହି ସହରଗୁଡ଼ିକରେ ପୁଲିସ ବିରୋଧୀ ଦଙ୍ଗା ସୃଷ୍ଟି ହୋଇଥିଲା । ତତ୍‌କ୍ଷଣାତ୍ ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରି ନେଇଥିଲେ । ତେବେ ଜନ ଅସନ୍ତୋଷ ସନ୍ତୁଳିତ ଅବସ୍ଥାରେ ରହିଥିବା ପଞ୍ଜାବରେ, ଶୋଭାଯାତ୍ରା ସମୟରେ ଉଗ୍ର ଜନଜାଗରଣ ହୋଇ ଏପ୍ରିଲ ଦଶ ତାରିଖ ଦିନ ପାଞ୍ଚଜଣ ଇଉରୋପୀୟ ବ୍ୟକ୍ତିଙ୍କୁ ହତ୍ୟା କରାଯାଇଥିଲା । ତତ୍‌କ୍ଷଣାତ୍ ସେହି ପ୍ରଦେଶରେ ମାର୍ଶାଲ ଆଇନ ଲାଗୁ କରାଯାଇଥିଲା ଏବଂ ସମସ୍ତ ପ୍ରକାର ଶୋଭାଯାତ୍ରାକୁ ବେଆଇନ ଘୋଷଣା କରାଯାଇଥିଲା । ସେହି ବେଆଇନ ଘୋଷଣାନାମାକୁ ଭଙ୍ଗ କରାଯିବା ଉଦ୍ଦେଶ୍ୟରେ, ସେଠାରୁ ବାହାରିବା ପାଇଁ କେବଳ ଗୋଟିଏ ମାତ୍ର ରାସ୍ତା ଥିବା ଜାଲିଆନାୱାଲା ବାଗଭଳି ଏକ ସାଧାରଣ ସ୍ଥାନରେ ଏପ୍ରିଲ୍ ତେର ତାରିଖ ଦିନ ଅମୃତସରର ଜନସାଧାରଣ ଗୋଟିଏ ସଭାର ଆୟୋଜନ କରିଥିଲେ । ପ୍ରାୟ କୋଡ଼ିଏ ହଜାର ଜନତାର ସମାବେଶ ଉପରକୁ ଜେନେରାଲ୍ ଡାୟର, ନବେ ଜଣ ସୈନ୍ୟଙ୍କ ବାହିନୀ ନେଇ ଗୁଳିଚାଳନା କରିଥିଲେ । ସେଥିରେ ପ୍ରାୟ ପାଞ୍ଚଶହ ଜଣଙ୍କ ମୃତ୍ୟୁ ହୋଇଥିଲା ଏବଂ ତା'ଠାରୁ ବହୁଗୁଣ ଅଧିକ ଲୋକ ଆହତ ହୋଇଥିଲେ । ଭାରତର ଜନଗଣଙ୍କୁ ଭୟଭୀତ କରାଇ ବଶ୍ୟତା ସ୍ୱୀକାର କରାଇବା ନୀତି ପୋଷଣ କରୁଥିବା ସରକାରଙ୍କ ପାଇଁ ଏହାର ଅମାନୁଷିକତା ଚରମସୀମା ଥିଲା । ଜୁନ୍ ମାସ ପର୍ଯ୍ୟନ୍ତ ଲାଗୁ କରାଯାଇଥିବା ସେହି ମାର୍ଶାଲ ଆଇନ ଯୋଗୁଁ ସେଠାରେ ସରକାରୀ ରାଜୁତି ଧାରାବାହିକ ଭାବେ ଆହୁରି ଅଧିକ ପରିମାଣରେ ଅମାନୁଷିକତାମୂଳକ କାର୍ଯ୍ୟକଳାପ ବୃଦ୍ଧି ପାଇଥିଲା । ବାଛବିଚାରହୀନ ଭାବେ ଜନସାଧାରଣଙ୍କୁ ଚାବୁକମାଡ ଦିଆ ଯାଇଥିଲା, ରାସ୍ତାରେ ଆଣ୍ଠେଇ ଆଣ୍ଠେଇ ଚାଲିବାପାଇଁ ବାଧ୍ୟ କରାଯାଇଥିଲା ଏବଂ ଇଂରେଜ

ପତାକାକୁ ସମ୍ମାନ ଦେଖାଇବା ପାଇଁ ମାଇଲ ମାଇଲ ଧରି ଚାଲିବା ପାଇଁ ବାଧ୍ୟ କରାଯାଇଥିଲା । କିନ୍ତୁ ସେସବୁ କାର୍ଯ୍ୟକଳାପ ଶକ୍ତିଶାଳୀ ବ୍ରିଟିଶ ରାଜକୁ ଘରମୁହାଁ କରାଇ ଦେଇଥିଲା । ଆମୂଳଚୂଳ ଭାବେ ସରକାରଙ୍କ ସେହି ଦୁର୍ବଳ ସୀମାନ୍ତକୁ ଉତ୍ଥାପିତ କରାଯାଇ ପଞ୍ଜାବର ଗଭର୍ଣ୍ଣର ସାର ମାଇକେଲ ଓ ଡାୟାରଙ୍କୁ ତାଙ୍କ ଦ୍ୱାରା କରାଯାଇଥିବା ସେଭଳି ଅଭୂତପୂର୍ବ ଅମାନୁଷିକତା ପ୍ରତିପାଦିତ କରିବାପାଇଁ ଚେଷ୍ଟା କରିବାକୁ କୁହାଯାଇଥିଲା । ପରକାଳରେ ସାମ୍ରାଜ୍ୟବାଦୀ ସରକାରଙ୍କ ପୁଲିସ ବିଭାଗର ସମ୍ବାଦ ସଂସ୍ଥା ତାହାକୁ ସଂପୂର୍ଣ୍ଣ ରୂପେ ପୌରାଣିକ ଉପାଖ୍ୟାନମୂଳକ ବୋଲି ଚିତ୍ରିତ କରିଥିଲେ ।

ଡାୟାରଙ୍କ ବୁଲେଟ୍ ଭାରତକୁ ଯେଉଁଭଳି ଭାବରେ ଏକତ୍ରିତ କରାଇ ପାରିଥିଲା ଅନ୍ୟ କୌଣସିଟି ସେଭଳି କରି ପାରିନଥାନ୍ତା । ସେହି ଅମାନୁଷିକ କାର୍ଯ୍ୟକଳାପ ସଂପର୍କରେ ବିବରଣୀ, କଡାକଡି ଭାବରେ ଯାଞ୍ଚ କରିଯିବା ବ୍ୟବସ୍ଥା ଭିତରୁ ମଧ୍ୟ ଯେତେବେଳେ ବାହାରକୁ ଚାଲିଯାଇଥିଲା, ସମଗ୍ର ଭାରତରେ କ୍ରୁଦ୍ଧ ପ୍ରତିବାଦ ଧ୍ୱନି ପ୍ରତିଧ୍ୱନିତ ହୋଇଥିଲା । ସେହି ଦାରୁଣ ଧକ୍କାଜନିତ ପ୍ରାଥମିକ କ୍ଷତତାକୁ ରବୀନ୍ଦ୍ରନାଥ ଠାକୁର ଉଦ୍ଦୀପନାମୟ ପ୍ରତିବାଦ କରି ଭଙ୍ଗ କରିଥିଲେ । ଚାରିବର୍ଷ ପୂର୍ବରୁ ତାହାଙ୍କୁ ପ୍ରଦତ୍ତ ହୋଇଥିବା 'ନାଇଟ' ପଦବୀକୁ ସରକାରଙ୍କୁ ପ୍ରତ୍ୟର୍ପଣ କରିଦେଇଥିଲେ । ଅକ୍ଟୋବର ମାସରେ ଭାଇସରାୟ ସେହି ଘଟଣାର ଅନୁସନ୍ଧାନ ପାଇଁ ଗୋଟିଏ କମିଟି ନିଯୁକ୍ତ କରିଥିଲେ । ସେଥିରେ ଲର୍ଡ ହଣ୍ଟର ଚେୟାରମ୍ୟାନ ଥିଲେ ଏବଂ ତିନି ଜଣ ଇଉରୋପୀୟ ସରକାରୀ କର୍ମଚାରୀଙ୍କ ସମେତ ଦୁଇଜଣ ଭାରତୀୟ ତାହାର ସଭ୍ୟ ଥିଲେ । ଅଫିସରମାନଙ୍କ ମାତ୍ରାଧିକ୍ୟ କାର୍ଯ୍ୟକଳାପ ଯୋଗୁଁ ହୋଇଥିବା କ୍ଷତି ପୂରଣ ଅନୁମୋଦନ କରିବାପାଇଁ ସେହି କମିଟିକୁ ଦାୟିତ୍ୱ ଦିଆ ଯାଇଥିଲା । ଭାରତର ସବୁ କୋଣରୁ ସେହିଭଳି ପଦକ୍ଷେପଗୁଡିକୁ ତୀବ୍ର ଭାବରେ ସମାଲୋଚନା କରାଯାଇଥିଲା । କଲିକତା ଟାଉନହଲରେ ଆୟୋଜିତ ହୋଇଥିବା ଗୋଟିଏ ବିରାଟ ଧରଣର ସାଧାରଣ ସଭାପାଇଁ ପୁଣିଥରେ ମୋତିଲାଲ ସମ୍ମାନିତ ସଭାପତି ମନୋନୀତ ହୋଇଥିଲେ । ସେତେବେଳକୁ ମୋତିଲାଲଙ୍କ ସ୍ୱାସ୍ଥ୍ୟରେ ଆହୁରି ଅଧିକ ଅବନତି ଘଟିଥିଲା । ସେ ଏତେ ଦୁର୍ବଳ ହୋଇ ପଡିଥିଲେ ଯେ ଭାଷଣ ଦେଇ ପାରିବାର ଶକ୍ତି ତାଙ୍କଠାରେ ନଥିଲା । ତେଣୁ ତାଙ୍କ ଭାଷଣଟି ପ୍ରଫେସର ଜେ.ଏଲ୍. ବନାର୍ଜୀ ପାଠ କରିଥିଲେ । ସେହି ବିପୁଳ ଜନସମାବେଶପୂର୍ଣ୍ଣ ସଭାରେ ଚିତ୍ତରଞ୍ଜନ ଦାସ ସଭାପତିତ୍ୱ କରିଥିଲେ ଏବଂ ଆଇ. ବି. ସେନ୍ ତାଙ୍କ ଭାଷଣ ପାଠ କରିଥିଲେ ।

ତାହାଙ୍କର ଭାଷଣ ପ୍ରସଙ୍ଗରେ ମୋତିଲାଲ ମତବ୍ୟକ୍ତ କରିଥିଲେ:

ଏହା ସ୍ୱୀକାର୍ଯ୍ୟ ଯେ ସାଂପ୍ରତିକ ଘଟଣାବଳୀ ସମୟରେ କୌଣସି ପ୍ରକାର ଅପରାଧରେ ସଂପୃକ୍ତ ନଥିବା ଶହଶହ ନିରୀହ ବ୍ୟକ୍ତି ପ୍ରାଣ ହରାଇଛନ୍ତି । ପୁଣି ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ସେହି ଅଶାନ୍ତି ବେଳେ ଶହଶହ ନିରୀହ ଏବଂ ସମ୍ମାନନୀୟ ବ୍ୟକ୍ତିଙ୍କୁ ସମସ୍ତ ପ୍ରକାର ମର୍ଯ୍ୟାଦାହୀନ ତଥା କଷ୍ଟଦାୟକ ବ୍ୟବହାର ପ୍ରଦର୍ଶନ କରାଯାଇଛି । କିନ୍ତୁ ସେହି ମହାମହିମ (ଭାଇସରାୟ)ଙ୍କ ଭାଷଣରେ ସେହି ଲୋକମାନଙ୍କ ମଧ୍ୟରୁ ଜଣକର ଦୁର୍ଭାଗ୍ୟ ପାଇଁ ଆଶ୍ୱାସନାମୂଳକ ପଦଟିଏ କଥାମଧ୍ୟ ଉଲ୍ଲେଖ କରାଯାଇ ନଥିଲା - - - - ।

" ଏହା ସୁସ୍ପଷ୍ଟ ଯେ କିଛିଟା ଅସ୍ପଷ୍ଟ ଏବଂ କୁଜ୍ଝଟିକାମୟ ମନୋଭାବ ଯୋଗୁଁ ସମସ୍ତ ବିଷୟକୁ ଅତି ନିଷ୍ଠୁର ଭାବରେ ବହୁଦୂର ଆଗେଇ ନିଆ ଯାଇଥିବା କାରଣରୁ ସରକାରୀ ମନୋଭାବ ମଧ୍ୟ କିଛିଟା ବିଚଳିତ ହୋଇଯାଇଛି । ଯେଉଁଭଳି ଭାବରେ ମିଲିଟାରୀ ତଥା ପଞ୍ଜାବରେ ଥିବା ସରକାରୀ କର୍ମକର୍ତ୍ତାମାନେ ନିୟମକାନୁନ୍ ତଥା ପ୍ରଚଳନରେ ଥିବା ଆଇନଗତ ପନ୍ଥାକୁ ପଦଦଳିତ ଭାବରେ ପରିଚାଳିତ କରିଛନ୍ତି; ସମ୍ଭବତଃ ସେଥିପାଇଁ ପ୍ରିଭି କାଉନ୍‌ସିଲ୍ କିଛିଟା କୁତ୍ସିତ ମନ୍ତବ୍ୟ ଦେଇପାରେ । ଅନ୍ୟଥା କ୍ଷତିପୂରଣ ବିଲ୍‌ପାଇଁ କାହିଁକି ଏପରି ବାଚାଳତା ପ୍ରକାଶ ପାଇଥାନ୍ତା ? ତଦନ୍ତ କମିଶନ୍ ତାର ଅନୁସନ୍ଧାନ ଶେଷକରି ତଦନ୍ତ ରିପୋର୍ଟ ଦେବାଯାଏଁ ଅପେକ୍ଷା କରିବା କଣ ଅଧିକ ସୁନ୍ଦର ପ୍ରତୀୟମାନ ହୁଅନ୍ତା ନାହିଁ ?"

କଂଗ୍ରେସ ତରଫରୁ, ବେସରକାରୀ ଭାବେ ଏକ ଅନୁସନ୍ଧାନ କମିଟି ଗଠନ କରାଯାଇଥିଲା । ଗାନ୍ଧିଜୀ ଏବଂ ଚିତ୍ତରଞ୍ଜନ ଦାସ ପରସ୍ପର ସହିତ ସାକ୍ଷାତ କରି ପଞ୍ଜାବରେ ଭାରତୀୟମାନଙ୍କ ଉପରେ ଧାରାବାହିକଭାବେ ହେଉଥିବା ଅମାନୁଷିକ ଅତ୍ୟାଚାରଗୁଡ଼ିକୁ ନଗ୍ନ ଭାବରେ ପ୍ରକାଶ କରିଥିଲେ । ଉଭୟଙ୍କ ମଧ୍ୟରେ ସେହି ସାକ୍ଷାତ ଅଳ୍ପକାଳ ମଧ୍ୟରେ ଉଲ୍ଲେଖଯୋଗ୍ୟ ପରିଣାମ ସୃଷ୍ଟି କରିବାଲାଗି ସମର୍ଥ ହୋଇଥିଲା ।

ପଞ୍ଜାବରେ ବର୍ବରତା ଏବଂ ଦମନମୂଳକ କାର୍ଯ୍ୟକଳାପ ସଂପର୍କରେ 'ପତ୍ରିକା'ର ସଂପାଦକୀୟଗୁଡ଼ିକ ଅତି ସିଧାସଳଖ ଭାବରେ ତୀବ୍ର କଟାକ୍ଷକର ଥିଲା । ଭାରତର ବ୍ରିଟିଶ ରାଜକର୍ମଚାରୀମାନଙ୍କ ବିରୁଦ୍ଧରେ ପ୍ରବଳ କ୍ଷୋଭ ସେଥିରେ ପ୍ରକାଶ ପାଇଥିଲା । ବାରମ୍ବାର ତାହା ପ୍ରକାଶ କରିଥିଲା ଯେ – ଏହି ଅଫିସରମାନେ "ପ୍ରଥମେ ଆପଣାର ସେବା କରନ୍ତି, ପରେ ସେମାନଙ୍କ ମାତୃଭୂମିର କଥା ଆସେ ।"

"ଅତି କମ୍‌ରେ ଜନଗଣ", ପୁଣି ତାହା ମଧ୍ୟ ଉଲ୍ଲେଖ କରିଥିଲା ଯେ, "ଅନୁଭବ କରିବା ଲାଗି ଜାଗ୍ରତ ହୋଇ ଯାଇଛନ୍ତି ଯେ, ଆଇନର ଶାସନ ଶେଷ ହୋଇ ଯାଇଛି ଏବଂ ଶାସକମାନଙ୍କ ଇଚ୍ଛା ଅନୁଯାୟୀ ଜନଗଣଙ୍କୁ ଗୁଳି କରାଯାଇ ପାରିବ । ପୁନଶ୍ଚ ସେମାନେ ମଧ୍ୟ ଅବଗତ ହୋଇ ପାରିଛନ୍ତି ଯେ ରଉଲଟ ଆଇନ ଗୋଟିଏ ଅତ୍ୟନ୍ତ ବିପଦପୂର୍ଣ୍ଣ ପଦକ୍ଷେପ, ଯାହା ଫଳରେ ଭାରତରେ ଥିବା ବ୍ରିଟିଶ ନାଗରିକମାନେ ଏ ଦେଶର ଲୋକଙ୍କ ନିକଟରୁ ଅନେକ ମୌଳିକ ଅଧିକାର ଛିନ୍ନ କରି ନେଇଛନ୍ତି । ତତ୍‌ସହିତ ହିନ୍ଦୁ ଓ ମୁସଲମାନମାନେ ସେମାନଙ୍କ ମଧ୍ୟରେ ଥିବା ଜାତିଗତ ବିଭେଦକୁ ଭୁଲିଯାଇଛନ୍ତି ଏବଂ ଗୋଟିଏ ମିଳିତ ଗୋଷ୍ଠୀ ଗଠନ କରିସାରିଛନ୍ତି । ସେହି କାରଣରୁ ପଞ୍ଜାବରେ ଯଥେଚ୍ଛାଚାରୀ କାର୍ଯ୍ୟକଳାପଦ୍ୱାରା ଏବଂ ରଉଲଟ୍ ଆଇନ ଭଳି ନିର୍ଦ୍ଦୟ କାନୁନକୁ ଅନୁମୋଦନ କରି ଅମଲାତନ୍ତ୍ର ନିଶ୍ଚୟ ଲକ୍ଷ୍ୟ କରିବେ ଯେ ସେମାନେ ନିଜର ସ୍ଥିତିକୁ ପ୍ରତିଷ୍ଠିତ କରିବା ପରିବର୍ତ୍ତେ ଅତ୍ୟନ୍ତ ଦୁର୍ବଳ କରିପକାଇଛନ୍ତି ।"

1913 ମସିହାରୁ ସରକାରଙ୍କ ନିକଟରେ ପତ୍ରିକାର ଅମାନତ ଭାବେ ଥିବା ପାଞ୍ଚ ହଜାର ଟଙ୍କା

ବାଜ୍ୟାପ୍ତ କରି ଦିଆ ଯାଇଥିଲା ଏବଂ ପୁଣି ଥରେ ନୂତନ ରୂପେ ଦଶହଜାର ଅମାନତ ଜମା କରିବା ଲାଗି ଦାବୀ କରାଯାଇଥିଲା । ମଇ ପନ୍ଦର ତାରିଖ ଦିନଠାରୁ ପଞ୍ଜାବ ରାଜ୍ୟ ସରକାରଙ୍କ ଦ୍ୱାରା ସେହି ପ୍ରଦେଶରେ 'ପତ୍ରିକା'ର ପ୍ରବେଶ ଅଧିକାରକୁ ବାତିଲ୍ କରାଇ ଦିଆଯାଇଥିଲା । 'ପତ୍ରିକା'ର ଗ୍ରାହକ ତଥା ଶୁଭେଚ୍ଛୁଗଣ ନୂତନ ଅମାନତ ଜମା ପାଇଁ ଅତି ଅଳ୍ପ ସମୟ ମଧ୍ୟରେ ଅର୍ଥ ସାହାଯ୍ୟ ଦାନ କରିଥିଲେ । ଆର୍ଥିକ ଦୃଷ୍ଟିରୁ ଖବରକାଗଜଟିକୁ ତଳିତଳାନ୍ତ କରିବା ଯୋଜନା ପଣ୍ଡ ହୋଇ ଯାଇଥିଲା । ଅନବଦମିତ ମୋତିଲାଲ ସଂପାଦକୀୟ ଭାବେ ଲକ୍ଷ୍ୟ କରିଥିଲେ "ଆମ୍ଭମାନଙ୍କ ଲାଗି ଜୀବନ ଏବଂ ସ୍ୱାଧୀନତା ସଂରକ୍ଷିତ ହୋଇ ରହିଥିବା ପର୍ଯ୍ୟନ୍ତ ଯଥାରୀତି ଆମେ ଆମର ଦାୟିତ୍ୱ ନିର୍ବାହ କରି ଚାଲିଥିବୁ । ବର୍ତ୍ତମାନ ପ୍ରେସ୍ ଆଇନରେ ଥିବାଭଳି ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେ ଅମଲାତାନ୍ତ୍ରିକ ପ୍ରବଣତାଗୁଡ଼ିକୁ ଆଘାତ ଦେବା କାର୍ଯ୍ୟ ପରିହାର କରିବା କାର୍ଯ୍ୟକୁ ଆମ୍ଭେମାନେ ଅସମ୍ଭବ ମନେକରୁ । ପୁଣି ଠିକ୍ ସେହିଭଳି ସାଧାରଣ ଘଟଣାବଳୀଗୁଡ଼ିକ ସଂପର୍କରେ ଅଥବା ସରକାରୀ ନୀତିଗୁଡ଼ିକ ଉପରେ ନିଷ୍ଠାପର ମନ୍ତବ୍ୟ ପ୍ରକାଶ କରୁ । ପ୍ରେସ ଆଇନ ଅନୁଯାୟୀ ଉପଯୁକ୍ତ ହେବାଭଳି ଆଦର୍ଶ ସ୍ଥାନୀୟ ଖବରକାଗଜ ହେବାକୁ ହେଲେ, ବର୍ତ୍ତମାନର ରାଜନୈତିକ ଘଟଣାବଳୀ ଅପେକ୍ଷା ଆଳୁ କିମ୍ବା କଦଳୀ ବିଷୟରେ ଆମ୍ଭମାନଙ୍କୁ ବର୍ତ୍ତମାନ ଆଳାପ ଆଲୋଚନା କରିବାକୁ ହେବ ।"

ଦେଶର ଅବସ୍ଥା ଚଞ୍ଚଳ ହୋଇ ଉଠିଥିଲା । ବିଶେଷ ରୂପେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ରବୀନ୍ଦ୍ରନାଥ ଠାକୁର ଜାଲିଆନାୱାଲା ବାଗ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ ସ୍ୱରୂପ ତାହାଙ୍କର 'ନାଇଟ' ପଦବୀ ମଇ ଅଣତିରିଶ ତାରିଖ ଦିନ ପରିତ୍ୟାଗ କରି ଦେଇଥିଲେ । ଖବରକାଗଜଗୁଡ଼ିକରେ ପ୍ରକାଶିତ ତାହାଙ୍କର ପତ୍ର ବିକ୍ଷୁବ୍‌ଧ ନେତାମାନଙ୍କୁ ଆହୁରି ଅଧିକ ଚଳଚଞ୍ଚଳ କରାଇ ଦେଇଥିଲା ଏବଂ କେବଳ କଥା ନୁହେଁ, ସଫଳ କାର୍ଯ୍ୟକ୍ରମର ଯଥାର୍ଥ ଆବଶ୍ୟକତା ସଂପର୍କରେ ସେମାନଙ୍କୁ ଅବଗତ କରାଇ ଦେଇଥିଲା । ବାଛବିଚାରହୀନ ଭାବେ ବନ୍ଧୁକ ଚଳାଇ ଆନନ୍ଦିତ ହେଉଥିବା (ଶାସନକଳ) ପରିବେଶ ଭିତରେ ସେହିଭଳି କାର୍ଯ୍ୟକ୍ରମ କିପରି ଗ୍ରହଣ କରାଯାଇ ପାରିବ ତାହା ଥିଲା ଏକ ବୌଦ୍ଧିକ ସମସ୍ୟା । ମଣ୍ଟେଗୁ-ଚେମସଫୋର୍ଡ ଶାସନ ସଂସ୍କାର ଆଇନ କମାରର ଲେହି ଉପରେ ଥିବା ସମୟରେ ଡିସେମ୍ବର ଏକ ତାରିଖ ଦିନ ପ୍ରକାଶିତ ମୋତିଲାଲଙ୍କ ମନ୍ତବ୍ୟରେ ବ୍ରିଟିଶ ସରକାରଙ୍କ ଉପରେ ଭାରତୀୟ ଅବିଶ୍ୱାସ ଯଥାର୍ଥରୂପେ ପ୍ରକାଶ ପାଇଥିଲା :

" ଯଦି ପାହାଡ଼ର ସ୍ଥିତି ପୂର୍ବବତ୍ ରହିଥାଏ ତେବେ ସେଥିରେ କେତୋଟି ଅଧିକ ଜଳ-ନାଳୀ ସଂଯୁକ୍ତ ହେଲେ ମଧ୍ୟ ସେହି ଜଳକୁ ପୂର୍ବଠାରୁ କୌଣସି ଅଧିକତର ଭାବେ ପାନୀୟ ଯୋଗ୍ୟ କରାଯାଇ ପାରିବ ନାହିଁ ।[୨୩]

ସେହିଭଳି ଭାବରେ ଭାରତ ସରକାରଙ୍କ ଆଇନ 1919 ମସିହା ଡିସେମ୍ବର ତେଇଶି ତାରିଖ ଦିନ ଗୃହୀତ ହୋଇଥିଲା ଏବଂ ତାହାକୁ ଜାତୀୟବାଦୀମାନେ ବିନା ଆଗ୍ରହରେ ଗ୍ରହଣ କରିଥିଲେ । ସେହି ଆଇନର ଅନ୍ତର୍ନିହିତ ଉଦ୍ଦେଶ୍ୟ ରୂପେ ଗ୍ରହଣ କରାଯାଇ ଥିଲା ଯେ ଭାରତୀୟମାନେ ଏ ଯାବତ୍

ସ୍ୱାୟତ୍ତ ଶାସନ ଲାଗି ଉପଯୁକ୍ତ ହୋଇ ପାରିନାହାନ୍ତି । ଏହି ଆଇନ ଦ୍ୱୈତ-ଶାସନ ନାମକ ଗୋଟିଏ ଧାରା ପ୍ରଚଳନ କରାଇଥିଲା । ତାହା ଫଳରେ ଶିକ୍ଷା, ସାଧାରଣ ସ୍ୱାସ୍ଥ୍ୟ ତଥା ପୂର୍ତ୍ତ ବିଭାଗର ଶାସନ ଦାୟିତ୍ୱ, ପ୍ରାଦେଶିକ ବିଧାନ ପରିଷଦରେ ଉତ୍ତରଦାୟୀ ରୂପେ ଥିବା ମନ୍ତ୍ରୀ (ଯାହାର ଦରମା ବାର୍ଷିକ ଚଉଷଠି ହଜାର ଟଙ୍କା ଥିଲା) ମାନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଗଭର୍ଣ୍ଣର ଏବଂ ତାଙ୍କ ସହଯୋଗୀମାନଙ୍କ ପାଇଁ ସଂରକ୍ଷିତ ଥିଲା ପୁଲିସ୍, ଆଇନକାନୁନ୍ ତଥା ରାଜସ୍ୱ ବିଭାଗର ପରିଚାଳନା ଭାର । କେନ୍ଦ୍ର ସରକାର ପୂର୍ବଭଳି ଭାରତୀୟ ବିଧାନ ପରିଷଦକୁ ଉତ୍ତରଦାୟୀ ହୋଇ ରହିନଥିଲେ । ମୁସଲମାନ, ଶିଖ (ପଞ୍ଜାବରେ) ଏବଂ ଖ୍ରୀଷ୍ଟିଆନ (ମାଡ୍ରାଜରେ) ମାନଙ୍କ ଲାଗି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା କରାଯାଇଥିଲା । ପରିସ୍ଥିତିକୁ ପ୍ରଥମେ ଦଶବର୍ଷ ଅନୁଧ୍ୟାନ କରାଯାଇ କ୍ରମେ କ୍ରମେ ଅଧିକ ଦାୟିତ୍ୱମୂଳକ ସରକାର ଗଠନ କରାଯିବା ଲାଗି ସେଥିରେ ଉଲ୍ଲେଖ ରହିଥିଲା ।

ଅଧିକତର ଭାବେ ସେହି ସଂସ୍କାରଗୁଡ଼ିକ ଭାରତୀୟ ଜନଗଣଙ୍କ ଦ୍ୱାରା ଗୃହୀତ ହେବାପାଇଁ ସେହି ଆଇନ୍ ସମେତ ସମ୍ରାଟ ପଞ୍ଚମ ଜର୍ଜଙ୍କ ଏକ ଆଦେଶନାମା ମଧ୍ୟ ଘୋଷଣା କରାଯାଇଥିଲା । ପରିଣାମ ସ୍ୱରୂପ ରାଜଦ୍ରୋହୀ ଅପରାଧୀମାନଙ୍କୁ କ୍ଷମାପ୍ରଦାନ କରାଯାଇ, ଘୋଷଣା ଅଟକ ରଖା ଯାଇଥିବା ବ୍ୟକ୍ତିବୃନ୍ଦଙ୍କ ସମେତ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରାଯାଇ ସମ୍ରାଟଙ୍କ ଅଭିଳାଷ ବ୍ୟକ୍ତ କରାଯାଇଥିଲା ଯେ "ଯେତେଦୂର ସମ୍ଭବ ମୋର ପ୍ରଜା ଏବଂ ମୋ ସରକାରଙ୍କ ଲାଗି ଯେଉଁମାନେ ଦାୟୀ ସେମାନଙ୍କ ମଧ୍ୟରେ ତିକ୍ତତାର ନିଦର୍ଶନ ଲୋପ ପାଇବା ଉଚିତ ।" ଏପରିକି ସମସ୍ତ ସୁଧାରବାଦୀ ମଧ୍ୟ ସେହି ଭାବପ୍ରବଣତାକୁ ବିଶ୍ୱାସ କରିପାରି ନଥିଲେ । ତେବେ ପ୍ରତିରୋଧ ଲାଗି ଗୋଟିଏ ଫଳପ୍ରଦ ଯୋଜନା ଓ କାର୍ଯ୍ୟସୂଚୀର ଅଭାବ ଯୋଗୁଁ ଜାତୀୟବାଦୀମାନେ 1919 ଡିସେମ୍ବର ଶେଷରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ସେହି ଆଇନକୁ ଗ୍ରହଣ କରାଯାଉ ବୋଲି ନିଷ୍ପତ୍ତି ନେଇଥିଲେ । ତେବେ ସେମାନଙ୍କ ମତ ଥିଲା -- ସେହି ସଂସ୍କାରଗୁଡ଼ିକ ଅପର୍ଯ୍ୟାପ୍ତ ଏବଂ ଅସନ୍ତୋଷଜନକ । ଏହା ଥିଲା ଏକ ଆପୋଷ ମିଳାମିଶାଜନିତ ନିଷ୍ପାରଣ । କାରଣ ଚିତ୍ତରଞ୍ଜନ ଦାସ ସେହି ଆଇନକୁ ପ୍ରତ୍ୟାଖ୍ୟାନ କରୁଥିବା ବଙ୍ଗଳାର ଦାବୀର ନେତୃତ୍ୱ ନେଉଥିଲେ ଏବଂ ତିଳକ ତଥା ଗାନ୍ଧିଜୀ ଏହାକୁ ପରୀକ୍ଷାମୂଳକ ଭାବେ ଗ୍ରହଣ କରାଯିବା ଲାଗି ମତ ପ୍ରଦାନ କରୁଥିଲେ ।

ତେବେ ମାସକ ମଧ୍ୟରେ ପରିସ୍ଥିତି ବିଶେଷ ଭାବରେ ପରିବର୍ତ୍ତିତ ହୋଇଥିଲା । 1920 ମସିହା ଜାନୁଆରୀ ମାସରେ ସେଭର୍ସ ଚୁକ୍ତି (Treaty of Severs) ଅନୁଯାୟୀ ପଶ୍ଚିମ ଏସିଆରେ ଥିବା ତୁର୍କୀ ସାମ୍ରାଜ୍ୟ ଅଧୀନସ୍ଥ ଅଞ୍ଚଳଗୁଡ଼ିକୁ ତାହା ଅଧୀନରୁ ବାହାର କରି ନିଆଯାଇ ବିଜୟ ଲାଭ କରିଥିବା ରାଜ୍ୟଗୋଷ୍ଠୀଙ୍କ ମଧ୍ୟରେ ବିତରଣ କରିଦିଆ ଯାଇଥିଲା । ସେହି ଘଟଣା ଭାରତୀୟ ମୁସଲମାନମାନଙ୍କୁ ଏତେମାତ୍ରାରେ କ୍ରୋଧଦୀପ୍ତ କରିଥିଲା ଯେ ମହମ୍ମଦ ଅଲ୍ଲୀ ଓ ସୌକତ ଅଲ୍ଲୀଙ୍କ ଭଳି ନେତାମାନେ ସଂଗ୍ରାମ ତଥା ରକ୍ତପାତ କରିବାପାଇଁ ଆଲୋଚନା ଆରମ୍ଭ କରି ଦେଇଥିଲେ । ବିଶେଷ କରି ଯେତେବେଳେ କଂଗ୍ରେସ ଦ୍ୱାରା ନିଯୁକ୍ତ ବେସରକାରୀ କମିଟି ପଞ୍ଜାବରେ ଘଟିଥିବା ଅତି ନୃଶଂସତା-ମୂଳକ ଘଟଣାର ଲୋମହର୍ଷଣକାରୀ ବିବରଣୀ ପ୍ରକାଶ କରିଥିଲା, ସେତେବେଳେ ବ୍ରିଟେନ୍‌କୁ ଫେରାଇ

ନିଆଯାଇଥିବା ଜେନେରାଲ୍ ଡାୟାରଙ୍କୁ ଜଣେ ମୁଖ୍ୟ ନାୟକ ହିସାବରେ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ବ୍ରିଟିଶ ଲର୍ଡ ସଭାରେ ଅଧିକାଂଶ ସଭ୍ୟ ତାହାଙ୍କୁ ସମର୍ଥନ କରୁଥିବାବେଳେ କମନ୍ସ ସଭାର ଅଧିକାଂଶ ସଭ୍ୟ ନିକଟରେ ସେ ହୋଇଥିଲେ ନିନ୍ଦାର ପାତ୍ର ।

୬

ଶିଖର ପ୍ରଦେଶରେ ବ୍ରିଟିଶ କ୍ଷମତାର ଭ୍ରଷ୍ଟାଚାର ଗାନ୍ଧିଜୀଙ୍କ ପାଇଁ ଶେଷ ଅକିଞ୍ଚିତ୍କର ବସ୍ତୁ ହୋଇ ପଡିଥିଲା । ସେ ଅହିଂସା ଅସହଯୋଗ ନୀତିକୁ ସରକାରଙ୍କ ପାଇଁ ସବୁ କ୍ଷେତ୍ରରେ ପ୍ରତିରୋଧମୂଳକ ଅସ୍ତ୍ରରୂପେ ବ୍ୟବହାର କରିବାପାଇଁ ସ୍ଥିର କରିଥିଲେ । ଅଖିଳ ଭାରତୀୟ ଖିଲାଫତ୍ କମିଟିର ମୁସଲମାନ ନେତାମାନଙ୍କୁ ତଥା ମୁସଲିମ୍ ଲିଗର ନେତାମାନଙ୍କୁ ପ୍ରଭାବିତ କରାଇଥିଲେ ଯେ ସେମାନେ ଅସହଯୋଗକୁ ଗୋଟିଏ ନୀତି ଭାବରେ ଗ୍ରହଣ କରନ୍ତୁ - କର୍ମ ପ୍ରଣାଳୀ ଭାବରେ ନୁହେଁ । ପଞ୍ଜାବ, ବମ୍ବେ, ଉତ୍ତର ପ୍ରଦେଶ, ବିହାର ଏବଂ ବଙ୍ଗଳାର ଅଧିକାଂଶ ଜାତୀୟବାଦୀ ତାଙ୍କ ସହିତ ଏକମତ ହୋଇଥିଲେ । କଲିକତାରେ ଅନୁଷ୍ଠିତ ସ୍ୱତନ୍ତ୍ର କଂଗ୍ରେସ ଅଧିବେଶନରେ ସେ ଅଳ୍ପ ସଂଖ୍ୟକ ଭୋଟରେ ଜୟଯୁକ୍ତ ହୋଇଥିଲେ । ଇତିମଧ୍ୟରେ ଅଗଷ୍ଟ ପହିଲା ଦିନ ତିଳକଙ୍କ ମୃତ୍ୟୁ ହୋଇଥିଲା । ବଙ୍ଗାଳୀ ଜାତୀୟବାଦୀ ଚିନ୍ତାଧାରାର ଦାର୍ଶନିକ ସି.ଆର୍.ଦାସ ଏବଂ ବିପିନ୍‌ଚନ୍ଦ୍ର ପାଲ୍ ପ୍ରତ୍ୟେକ କାର୍ଯ୍ୟକ୍ରମର ମୂଳ ରୂପେ ଗୃହୀତ ହୋଇଥିବା ଗାନ୍ଧୀଜୀଙ୍କ ଚରଖା ସହିତ ପ୍ରତିକୂଳ ମନୋଭାବ ପୋଷଣ କରିଥିଲେ । ସେମାନଙ୍କ ମତଥିଲା ଯେ ମଧ୍ୟ ଯୁଗୀୟ ଧାର୍ମିକ ଭାବପ୍ରବଣତା ଉପରେ ନିର୍ଭର କରୁଥିବା ଗୋଟିଏ ଉତ୍ସାହ, ଗଣତନ୍ତ୍ରର ଅଭିବୃଦ୍ଧି ପାଇଁ ପ୍ରାଥମିକ ସ୍ତରରେ ଅତ୍ୟନ୍ତ ମାରାତ୍ମକ । ଏହା ସେହି ଦାସତ୍ୱ ମନୋଭାବକୁ ପରିହାର କରେନାହିଁ "ଯାହା ଆମ୍ଭମାନଙ୍କର ଅଧୋପତନ ଏବଂ ଦୁର୍ଦ୍ଦଶାର ମୂଳ ।" କିନ୍ତୁ କୃଷକମାନେ ସେହି ଆନ୍ଦୋଳନରେ ଅଂଶୀଦାର ହେବାଲାଗି ଉତ୍କଣ୍ଠିତ ଥିଲେ କାରଣ ଗାନ୍ଧିଜୀ କେବଳ ରାଜନୈତିକ ସ୍ୱରାଜ୍ୟ ସପକ୍ଷରେ ମତ ଦେଉ ନଥିଲେ, ସେ ମଧ୍ୟ ଯୁକ୍ତି କରୁଥିଲେ ସାମାଜିକ ନ୍ୟାୟ ଏବ ଭାରୀଶିଳ୍ପ ପରିବର୍ତ୍ତେ ଗ୍ରାମାଞ୍ଚଳଗୁଡିକରେ କୁଟୀର ଶିଳ୍ପ ପ୍ରତି ଗୁରୁତ୍ୱ ଆରୋପ ମାଧ୍ୟମରେ ଆର୍ଥିକ ଉନ୍ନତି ପାଇଁ । ବଙ୍ଗଳାର ବିଦ୍ରୋହିଗଣ, ଯେଉଁମାନଙ୍କ ସହିତ ସି.ଆର୍.ଦାସ ପ୍ରାରମ୍ଭରୁ ହିଁ ଆତ୍ମୀୟ ଥିଲେ, ଆପାତତଃ 1920 ମସିହାର ତୃତୀୟ ଭାଗରେ ପ୍ରାୟତଃ ମୁକ୍ତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସଭ୍ୟ ଥିବା ଗୋଷ୍ଠୀ ଅହିଂସାମୂଳକ ଗୋଟିଏ କାର୍ଯ୍ୟସୂଚୀ ମାଧ୍ୟମରେ ଗଣଆନ୍ଦୋଳନର ପ୍ରଭୂତ ଶକ୍ତି ଉପଲବ୍ଧି କରିପାରିଥିଲେ । ସେମାନେ ଶ୍ରୀ ଦାସଙ୍କୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାଲାଗି ପ୍ରଭାବିତ କରାଇବା ପାଇଁ ସମର୍ଥ ହୋଇଥିଲେ । 1920 ମସିହା ଡିସେମ୍ବରରେ ନାଗପୁରଠାରେ ହୋଇଥିବା କଂଗ୍ରେସ ଅଧିବେଶନରେ ଅତିଅଧିକ ସଂଖ୍ୟାଗରିଷ୍ଠ ଭୋଟରେ ଗାନ୍ଧିଜୀଙ୍କ ଅହିଂସାମୂଳକ ପ୍ରତିରୋଧ ଯୋଜନା ଗୃହୀତ ହୋଇଥିଲା । ଶ୍ରୀଦାସ, ମୋତିଲାଲ ନେହେରୁ ଏବଂ ଜବାହରଲାଲ ନେହେରୁ ନୂତନ ମତ ପରିବର୍ତ୍ତନକାରୀମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ସେମାନଙ୍କ ବ୍ୟକ୍ତିଗତ ଜୀବନରେ ଅତି ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ଘଟିଥିଲା । ଜନ୍ମ ବେଳରୁ ହିଁ ଚଳଣିରେ ସେମାନେ ସମ୍ଭ୍ରାନ୍ତଶୀଳ ଗୋଷ୍ଠୀ ହୋଇଥିଲେ ମଧ୍ୟ ସେମାନେ ଅତି ସାଧାରଣତମ ବ୍ୟକ୍ତିର ସ୍ତରକୁ ଚାଲି ଆସିଥିଲେ । ପରିଣାମତଃ ଜନସାଧାରଣଙ୍କ ଆପଣାର ଲୋକ ହୋଇ ପାରିଥିଲେ । ଆନ୍ଦୋଳନ ସମୟରେ ସେମାନେ ସମାଜର ସମ୍ମାନାସ୍ପଦ ଲୋକଙ୍କ ଉପରେ

ପରିତୃପ୍ତିର ସହିତ ପ୍ରଗାଢ଼ ପ୍ରଭାବ ପକାଇଥିବା ସେହି ପ୍ରମାଣ ଆଜି ମଧ୍ୟ ଦଣ୍ଡାୟମାନ । ସେମାନଙ୍କ ମଧ୍ୟରୁ ଅନେକ ଲାଭଜନକ ବ୍ୟବସାୟ ତଥା ଚାକିରୀ ତ୍ୟାଗ କରି ଗ୍ରାମବାସୀମାନଙ୍କ ମଧ୍ୟରେ କାର୍ଯ୍ୟ କରିବାପାଇଁ ଆଗେଇ ଆସିଥିଲେ । ଜାତୀୟ ଆନ୍ଦୋଳନର ବାସ୍ତବିକ ଶକ୍ତି ପ୍ରକୃତରେ ଜନଗଣଙ୍କ ନିକଟରୁ ଆସିଥିଲା ଏବଂ ତା 'ପରେ ଆନ୍ଦୋଳନ ଆରମ୍ଭ ହୋଇଥିଲା ।

ଜାତୀୟ ଜୀବନ ଚରିତମାଳା

## ଷୋହଳ: ଗାନ୍ଧୀ ଏବଂ ମୋତିଲାଲ

1921 ମସିହା ଜାନୁଆରୀ ମାସରେ ଅସହଯୋଗ ଆନ୍ଦୋଳନ ପବନ ବେଗରେ ଆରମ୍ଭ ହୋଇଥିଲା । ଗୋଟିଏ ବର୍ଷ ଭିତରେ ସ୍ୱରାଜ୍ୟ ହାସଲ କରିବାପାଇଁ ସତ୍ୟାଗ୍ରହୀମାନେ କଠୋର ଶୃଙ୍ଖଳାର ସହିତ କାର୍ଯ୍ୟ କରିବା ଲାଗି ଗାନ୍ଧିଜୀ ଗୋଟିଏ ନିୟମାବଳୀ ପ୍ରସ୍ତୁତ କରିଥିଲେ । ଅହିଂସାର କାର୍ଯ୍ୟକାରିତା ନେଇ ପ୍ରଶିକ୍ଷଣ ଅଭାବରୁ ପ୍ରାଥମିକ ଅବସ୍ଥାରେ ତାହାର ଶୃଙ୍ଖଳାର ବୋଝ ଅଧିକାଂଶ ଲୋକଙ୍କ ନିକଟରେ ଅତ୍ୟନ୍ତ ଶକ୍ତିଶାଳୀ ମନେ ହୋଇଥିଲା । ତାଙ୍କର ଯୋଜନାର କେତେଗୁଡ଼ିଏ ଦିଗ, ଯଥା ଚରଖା ଏବଂ ପାଶ୍ଚାତ୍ୟ ଡାକ୍ତାର ଶିକ୍ଷା ବର୍ଜନ (ଯାହା ସେତେବେଳେ ଜାତୀୟବାଦୀ ଚିନ୍ତା ଓ ଚେତନା-ଗୁଡ଼ିକୁ ବ୍ୟାପ୍ତ କରିବା ଲାଗି ମାଧ୍ୟମରୂପେ ବ୍ୟବହୃତ ହେଉଥିଲା) ତଥା ଆଧୁନିକ ସଭ୍ୟତା ପ୍ରତି ତାଙ୍କର ସମ୍ପୂର୍ଣ୍ଣରୂପେ ନିନ୍ଦାମୂଳକ ମନୋଭାବ ପ୍ରଭୃତିଗୁଡ଼ିକ କେବଳ ଉଦାରପନ୍ଥୀମାନଙ୍କ ଦ୍ୱାରା ସମାଲୋଚିତ ହୋଇନଥିଲା, ଜାତୀୟତାବାଦର ଦାର୍ଶନିକ ରବୀନ୍ଦ୍ରନାଥ ଠାକୁରଙ୍କଭଳି ଲୋକେ ମଧ୍ୟ ତାହାକୁ ସମାଲୋଚନା କରିଥିଲେ । ତଥାପି ସେ କୌଣସିମତେ ଚରଖା ଉପରେ ଦିଆଯାଉଥିବା ଅତ୍ୟଧିକ ଗୁରୁତ୍ୱର ବିରୋଧ କରି ନଥିଲେ କିମ୍ବା ଆଧୁନିକ ପ୍ରଜ୍ଞାଶୀଳ ମୂଲ୍ୟବୋଧକୁ ପ୍ରତ୍ୟାଖ୍ୟାନ କରିନଥିଲେ । ସେ ସାରା ଜୀବନକାଳ ଧରି ଅହିଂସା ଆଦର୍ଶର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ ଏବଂ ସମସ୍ତ ନିର୍ଯ୍ୟାତନା ଭିତରେ ମଧ୍ୟ ବିଜୟ ଲାଭ କରିପାରିବେ ବୋଲି ଦୃଢ଼ମତ ପୋଷଣର ପକ୍ଷପାତୀ ଥିଲେ । ଧାର୍ମିକ ଉଦ୍ଦେଶ୍ୟଗୁଡ଼ିକ ସହିତ ରାଜନୈତିକ ଆନ୍ଦୋଳକୁ ଜଡ଼ିତ କରାଇ ଦିଆଯାଇଥିବା ଯୋଗୁଁ ଗୋଷ୍ଠୀଗତ ବିବାଦର ବିହନକୁ ଠାକୁର ଯଥାର୍ଥ ଭାବେ ଲକ୍ଷ୍ୟ କରିପାରିଥିଲେ । ବସ୍ତୁତଃ ଖିଲାଫତ୍ ଆନ୍ଦୋଳନର ପ୍ରଭାବ ହ୍ରାସ ପାଇବା ସହିତ ମୋପ୍ଲା (Moplah) ମୁସଲମାନମାନଙ୍କ ବିଦ୍ରୋହ ତଥା ଦେଶର ବିଭିନ୍ନ ପ୍ରାନ୍ତରରେ ହିଂସାର ପରିପ୍ରକାଶ ହୋଇଥିଲା । ତେଣୁ ଗାନ୍ଧିଜୀ 1922 ମସିହାରେ ସେହି ଆନ୍ଦୋଳନକୁ ସ୍ଥଗିତ କରି ଦେଇଥିଲେ । ଆନ୍ଦୋଳନର ତତ୍ ପରବର୍ତ୍ତୀ ପର୍ଯ୍ୟାୟ ନେତାମାନଙ୍କ ଚିନ୍ତାଧାରାକୁ ଗମ୍ଭୀର ଭାବରେ ଆନ୍ଦୋଳିତ କରିଥିଲା ଏବଂ ମତାନ୍ତର ଯୋଗୁଁ ସେମାନଙ୍କ ମଧ୍ୟରେ ବିଭେଦତା ସୃଷ୍ଟି ହୋଇଥିଲା ।

ମୋତିଲାଲଙ୍କ ସ୍ୱାସ୍ଥ୍ୟରେ ଖୁବ୍ ଦ୍ରୁତ ବେଗରେ ଅବନତି ହେଉଥିଲା କିନ୍ତୁ ତଥାପି ତାଙ୍କର କର୍ମପ୍ରବଣତା ପୂର୍ବବତ୍ ପ୍ରଖର ଥିଲା । ଯେତେବେଳେ 1920 ମସିହା ସେପ୍ଟେମ୍ବର ମାସରେ ଜବାହାରଲାଲ

ନେହେରୁ, ଗିରିଧାରୀଲାଲ ଏବଂ ସରଳାଦେବୀ ଚୌଧୁରାଙ୍କ ସହିତ ଗାନ୍ଧିଜୀ ତାହାଙ୍କୁ ସାକ୍ଷାତ କରିବାପାଇଁ ଯାଇଥିଲେ, ସେ ତାହାଙ୍କୁ କହିଥିଲେ;

"ମୁଁ ବିଗତ ପଚାଶ ବର୍ଷଧରି ଜଣେ ଅସହଯୋଗୀ ରୂପେ ରହି ଆସିଛି । ପରିଷଦଗୁଡ଼ିକ ବିଷୟ୍‌ନେଇ କୁହାଯାଇ ପାରେ ଯେ ମୁଁ ସବୁବେଳେ ସେଗୁଡ଼ିକୁ ଗୋଟିଏ ଗୋଟିଏ ପ୍ରହସନ ଏବଂ ପ୍ରତାରଣାମୂଳକ ଫାନ୍ଦ ରୂପେ ଗ୍ରହଣ କରି ଆସିଛି । ସେଗୁଡ଼ିକ ମଧ୍ୟରୁ କୌଣସିଟିରେ ପ୍ରବେଶ ଲାଗି ମୁଁ ମୋ ତରଫରୁ କୌଣସି କାଳେ ଇଚ୍ଛା କରିନାହିଁ ଏବଂ ମୁଁ ସବୁବେଳେ ସେଗୁଡ଼ିକୁ ପ୍ରଶ୍ରୟ ନ ଦେବାପାଇଁ ଆମ ଦେଶର ଜନସାଧାରଣଙ୍କୁ ପରାମର୍ଶ ଦେଇ ଆସିଛି ।"

ସେ ମଧ୍ୟ କହିଥିଲେ ଯେ ପ୍ରକୃତ ପ୍ରଶ୍ନ ଥିଲା କିଭଳି ଭାବରେ ଜନସାଧାରଣଙ୍କୁ ଜାଗ୍ରତ କରାଯାଇ ପାରିବ । ବିଗତ ଶତାବ୍ଦୀର ଷଷ୍ଠ ଦଶକରେ ନୀଳ ଆନ୍ଦୋଳନ ସମୟରେ ସମ୍ଭବ ହୋଇ ପାରିଥିବା ଭଳି ସଂଗ୍ରାମ ମନୋଭାବୀ ଚାଷୀକୁଳରେ ସଂଗଠନ କରାଯିବା ଆବଶ୍ୟକ ଥିଲା । ସେ ଗାନ୍ଧିଜୀଙ୍କୁ ଅନୁରୋଧ କରିଥିଲେ ଯେ "ଜମିର ସ୍ୱତ୍ୱ ଅଧିକାର ହାସଲ ଲାଗି ଏକତାବଦ୍ଧଭାବେ ଗୋଟିଏ ସଂଗ୍ରାମ କରିବା ପାଇଁ ଚାଷୀ କୂଳକୁ ସଂଗଠିତ କରନ୍ତୁ ଏବଂ ପୁଣି ଜନସାଧାରଣଙ୍କ ପାଇଁ ଗୋଟିଏ ସାଧାରଣ ଆହ୍ୱାନର ସ୍ୱର ବିଷୟରେ ଚିନ୍ତା କରନ୍ତୁ ଯାହା ସେମାନଙ୍କ ହୃଦୟକୁ ସିଧାସଳଖ ଭାବରେ ଆକର୍ଷିତ କରି ପାରିବ । ମୋର ଯାହା ମନେହୁଏ, ଜନଗଣ ତଥା ଶିକ୍ଷିତ ଗୋଷ୍ଠୀ ଉଭୟ ଦଳ ହୃଦୟ ଉପରେ ଦୁଇଟି ବିଷୟ ବିକଟାଳ ଦୁଃସ୍ୱପ୍ନ ଭଳି ସବାର ହୋଇ ମାଡି ବସିଛି । ସେଥିରୁ ଗୋଟିଏ ହେଉଛି ପୁଲିସ ଜୁଲମ ଏବଂ ଅନ୍ୟଟି ହେଉଛି ନିର୍ଦ୍ଦୟଭାବେ ଚାଲିଥିବା ଅବୈଧ ଶାସନ । ଗୋଟିଏ ସାଧାରଣ ଆହ୍ୱାନ ଲାଗି ଏଗୁଡ଼ିକ କଣ ଯଥେଷ୍ଟ ନୁହେଁ ?"

ଯେତେବେଳେ 1921 ମସିହା ଜାନୁଆରୀ ମାସରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରାଯାଇଥିଲା, ସେଥିରେ ପ୍ରଦତ୍ତ ହୋଇଥିବା ଶିକ୍ଷା ଅନୁଷ୍ଠାନଗୁଡ଼ିକର ବର୍ଜନ ଆହ୍ୱାନର ଉତ୍ତର ପ୍ରତି ମୋତିଲାଲ ଲକ୍ଷ୍ୟ କରିଥିଲେ :

"ପରିସ୍ଥିତିର ଅନୁଧ୍ୟାନ କରି ଆମ୍ଭେମାନେ ଅବଗତ ହୋଇପାରୁଛୁ ଯେ ଏହି ଯୁବକମାନଙ୍କ ମଧ୍ୟରୁ ଅଧିକାଂଶ ଅନ୍ତତଃ ଅନୁଭବ କରିପାରିଛନ୍ତି ଯେ ବର୍ତ୍ତମାନର ଅସହଯୋଗ ଆନ୍ଦୋଳନର ସଫଳତା ପାଇଁ ଏବଂ ପୂର୍ଣ୍ଣ ସ୍ୱରାଜ୍ୟ ଅଥବା ଦାୟିତ୍ୱମୂଳକ ସରକାର ଭାରତ ଲାଭ କରିବା ପାଇଁ ବର୍ତ୍ତମାନହିଁ ଯଥାର୍ଥ ସମୟ । ବର୍ତ୍ତମାନ ସରକାରଙ୍କ ନିକଟରେ ତଥା ବୃହତ୍ତର ଭାବରେ ସମଗ୍ର ପୃଥିବୀରେ ପ୍ରମାଣିତ କରାଇ ଦେବାକୁ ହେବ ଯେ ଭାରତର ନୂତନ ବଂଶଧରଗଣ ଗୋଟିଏ ରକ୍ତହୀନ ସଂଗ୍ରାମ ଲାଗି, ବ୍ୟକ୍ତିଗତ ପରିଣାମଗୁଡ଼ିକୁ ସଂପୂର୍ଣ୍ଣ ତୁଚ୍ଛ ମନେକରି, ଆପଣାକୁ ସମର୍ପଣ କରିଦେବା ଲାଗି ଦୃଢ଼ ପରିକର ।"

ଗାନ୍ଧିଜୀଙ୍କ ଆଇନ ଅମାନ୍ୟ ଆନ୍ଦୋଳନ ଯୋଜନା ପ୍ରତି ତାହାଙ୍କର ସମର୍ଥନ ଥିଲା ସୁସ୍ପଷ୍ଟ ।

1921 ମସିହା ଅଗଷ୍ଟ ସତର ତାରଖ ଦିନ ମହମ୍ମଦ ଅଲ୍ଲୀଙ୍କ ସହିତ ଆସାମ ଯିବା ରାସ୍ତାରେ ଗାନ୍ଧିଜୀ ପୁଣିଥରେ ମୋତିଲାଲଙ୍କ ସହିତ ସାକ୍ଷାତ କରିଥିଲେ । ସେତେବେଳକୁ ମୋତିଲାଲଙ୍କ ସ୍ୱାସ୍ଥ୍ୟରେ ଆହୁରି ଅଧିକ ଅବନତି ଘଟିଥିଲା ଏବଂ ବାମ ହାତ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ପଡିଥିଲା । ସେ ଗୋଟିଏ ବାଡି ଉପରେ ଭରାଦେଇ କେବଳ ଘର ଭିତରେ ହିଁ ଚଲାବୁଲା କରିପାରୁଥିଲେ । ଗାନ୍ଧିଜୀଙ୍କ ସାକ୍ଷାତ କେବଳ ସୌଜନ୍ୟମୂଳକ ସାକ୍ଷାତ ଥିଲା । ସେହି ବୃଦ୍ଧ ବ୍ୟକ୍ତି ଜଣକ ଯୁବକ ଦୁଇ-ଜଣଙ୍କୁ ଆଶୀର୍ବାଦ ଦେଇଥିଲେ ଏବଂ ସେମାନଙ୍କ ବିରାଟ ଉଦ୍ୟମରେ ସଫଳତା ହାସଲ କରିବାଲାଗି କାମନା କରିଥିଲେ । ସେ କେବଳ ଏଇଥିପାଇଁ ଦୁଃଖିତ ହୋଇ ଥିଲେ ଯେ ହୁଏତ ସ୍ୱରାଜ୍ୟ ମିଳିବା ପୂର୍ବରୁ ସେ ମୃତ୍ୟୁବରଣ କରିପାରନ୍ତି । ତେବେ ତାଙ୍କର ମୃତ୍ୟୁ ଯୋଗୁଁ ନିକଟ ଭବିଷ୍ୟତରେ କୌଣସି କ୍ଷତି ହେବାର ନାହିଁ । କିନ୍ତୁ ଏହା ଦେଶପାଇଁ ଅତ୍ୟନ୍ତ ଜରୁରି ଯେ ଗାନ୍ଧୀ ଏବଂ ମହମ୍ମଦ ଅଲ୍ଲୀ ସେହି ବିରାଟ ଦାୟିତ୍ୱ ଗ୍ରହଣ କରିବାପାଇଁ ଦୀର୍ଘକାଳ ବଞ୍ଚି ରହିବା ଆବଶ୍ୟକ । ତେବେ ସେ ସେମାନଙ୍କୁ ସତର୍କ କରାଇ ଦେଇଥିଲେ ଯେ ସେମାନଙ୍କ ମଧ୍ୟରେ ଯେପରି ମତଭେଦ ପ୍ରବେଶ ନ କରେ । କାରଣ କେତେକ ନେତାଙ୍କର ସ୍ୱେଚ୍ଛାଚାର ବ୍ୟବହାର ଯୋଗୁଁ ସେଇ ବିଷୟ ନେଇ ତୁଚ୍ଛ ପ୍ରଚାର ବିଷୟରେ କଂଗ୍ରେସ ଶିବିରରୁ ହିଁ ସମ୍ବାଦ ପାଇଥିଲେ । ଦଳ ମଧ୍ୟରେ ଅନାଦରଣୀୟ ମନୋଭାବକୁ ପରିହାର କରିବା ପାଇଁ ସବୁ ପ୍ରକାର ପ୍ରଭାବ ବିସ୍ତାର କରାଇବା ଦିଗରେ ଯତ୍ନବାନ ହେବାପାଇଁ ସେ ଗାନ୍ଧିଜୀଙ୍କୁ ପ୍ରବର୍ତ୍ତନା ଦେଇଥିଲେ ।

ଗାନ୍ଧୀ ଏବଂ ମୋତିଲାଲଙ୍କ ମଧ୍ୟରେ ସେପ୍ଟେମ୍ବର ଏଗାର ତାରିଖ ଦିନ ଅନ୍ୟ ଏକ ସାକ୍ଷାତ ହୋଇଥିଲା ସେ ଆସାମ ଗସ୍ତରୁ ଫେରିବାପରେ । ସେଇ ପ୍ରସ୍ତାବିତ ପରିଦର୍ଶନର ସମ୍ବାଦ ପୂର୍ବରୁ ପ୍ରକାଶ ପାଇ ଯାଇଥିଲା । ତେଣୁ ଗାନ୍ଧୀ ଏବଂ ଜିନ୍ନା ଗୋଟିଏ କାରରେ ଅପରାହ୍ଣର ପ୍ରାକ୍ କାଳରେ ସେଠାରେ ଉପସ୍ଥିତ ହେବା ପୂର୍ବରୁ 'ପତ୍ରିକା' କାର୍ଯ୍ୟାଳୟ ନିକଟରେ ଜଣେ ଚଳଚ୍ଚିତ୍ର କ୍ୟାମେରାଧାରୀଙ୍କ ସମେତ ବହୁଲୋକ ଗୁଣ୍ଡ ହୋଇଥିଲେ । ସେହି ସାକ୍ଷାତକାର ସମୟରେ ମୋତିଲାଲଙ୍କ ନିକଟରେ ଉପସ୍ଥିତ ଥିବା ପରମାନନ୍ଦ ଦତ୍ତଙ୍କ ଦ୍ୱାରା ସଂରକ୍ଷିତ ରେକର୍ଡରୁ ଜଣାପଡେ ଯେ ଅସହଯୋଗ ଓ ଆଇନ ଅମାନ୍ୟ ଆନ୍ଦୋଳନର ଆବଶ୍ୟକତା ନେଇ ମୋତିଲାଲଙ୍କ ହୃଦ୍‌ବୋଧ କରାଇବା ଏବଂ ସେହି ଯୋଜନାଗୁଡିକୁ ସମର୍ଥନ କରିବାଲାଗି ପ୍ରବର୍ତ୍ତନା ଦେବା ଉଦ୍ଦେଶ୍ୟରେ ମହାତ୍ମା ସେଠାକୁ ଆସିଥିଲେ । ତାହାଙ୍କର ସାଧାରଣ କର୍ମଯୋଜନା ସଂପର୍କରେ ଗାନ୍ଧିଜୀ ତାହାଙ୍କୁ ସୂଚନା ଦେଇଥିଲେ । ମୋତିଲାଲ ସ୍ୱୀକାର କରିଥିଲେ ଯେ ତାଙ୍କ ସହିତ ଗାନ୍ଧିଜୀଙ୍କର କେତେକ ମତ ପାର୍ଥକ୍ୟ ରହିଥିଲା । ତେବେ ଦୂରଦୃଷ୍ଟିରୁ ଦେଖିଲେ ଗାନ୍ଧିଜୀହିଁ ଠିକ୍ ବୋଲି ସେ ଆପଣାର ଅନୁଭବ ପ୍ରକାଶ କରିଥିଲେ । ଗାନ୍ଧିଜୀ କହିଥିଲେ, ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ସୁଦ୍ଧା ସ୍ୱରାଜ୍ୟ ଲାଭ କରାଯାଇ ପାରିବ କି ନାହିଁ ତାହା ଅନିଶ୍ଚିତ କିନ୍ତୁ ଏହା ନିଶ୍ଚିତ ଯେ ସେମାନଙ୍କ କାର୍ଯ୍ୟକଳାପର ପରିସମାପ୍ତି ଘଟିବ ନାହିଁ ଏବଂ ଆନ୍ଦୋଳନ ଚାଲୁ ରହିବ । କଂଗ୍ରେସ ଦ୍ୱାରା ପରିଚାଳିତ ହୋଇ ଗ୍ରହଣ କରାଯାଉଥିବା ଆନ୍ଦୋଳନ ସଂପର୍କୀୟ କାର୍ଯ୍ୟକଳାପଗୁଡିକର ଯଥାର୍ଥତା ଉପରେ ନୈତିକତା ଦୃଷ୍ଟିରୁ ତାହାଙ୍କର କୌଣସି ସନ୍ଦେହ ନଥିଲା । କାରଣ, ତାଙ୍କର

ଯୁକ୍ତି ଥିଲା, ତାହା ହୋଇନଥିଲେ ସେମାନେ ଲାଭ କରିଥିବା ସଫଳତା ପାଇ ପାରିନଥାନ୍ତେ । ତାହାଙ୍କର ଚରଖା ଯୋଜନାକୁ ସମର୍ଥନ କରିବା ପାଇଁ ମୋତିଲାଲଙ୍କୁ ସେ ଅନୁରୋଧ ଜଣାଇଥିଲେ । ତାଙ୍କ ମତ ଥିଲା ସ୍ୱରାଜ୍ୟ ଲାଭ ପାଇଁ ତାହା ଅତ୍ୟନ୍ତ ଆବଶ୍ୟକ । ସେହି ବିଷୟରେ ସେ କହିଥିଲେ "ମୁଁ ଚାହେଁ ଆପଣ ଆପଣଙ୍କ ପତ୍ରିକା ମାଧ୍ୟମରେ ଏପରି ଏକ ତୀକ୍ଷ୍ଣ ଏବଂ ବଜ୍ର ଆହ୍ୱାନ ଦିଅନ୍ତୁ ଯାହା ଲୋକଙ୍କ ହୃଦୟର ଗଭୀରତମ ପ୍ରଦେଶରେ ପ୍ରବେଶ କରି ପାରିବ ।"

ମୋତିଲାଲଙ୍କ ଉତ୍ତର ବିଷୟରେ କୌଣସି ବିବରଣୀ ରଖାଯାଇ ନାହିଁ । ତେବେ ଯେହେତୁ ସେ ପୂର୍ବରୁ ସର୍ବତୋଭାବେ ଅସହଯୋଗୀ ହୋଇ ସାରିଥିଲେ, ଏହା ମନେହୁଏ ଯେ ବଙ୍ଗଳା ପତ୍ରପତ୍ରିକା-ଗୁଡ଼ିକରେ ସେହି ଦିଗ ପ୍ରତି ସ୍ପଷ୍ଟ ସମର୍ଥନ ଲାଭ କରିବା ପାଇଁ ତାଙ୍କୁ ଗାନ୍ଧିଜୀ ଅନୁରୋଧ କରିଥିଲେ । କାରଣ ସେଠିକାର ଜନସାଧାରଣଙ୍କ ମଧ୍ୟ କେତେକାଂଶ ଚରଖାକୁ ସମସ୍ତ କାର୍ଯ୍ୟକ୍ରମରେ ମୁଖ୍ୟ ଅଂଶ ଦିଆଯାଉଥିବା, ଶିକ୍ଷା ଅନୁଷ୍ଠାନଗୁଡ଼ିକୁ ବର୍ଜନ କରାଯିବା ଏବଂ ପୁରାପୁରି ଭାବେ ଆଧୁନିକ ସଭ୍ୟତାକୁ ପରିହାର ଭଳି କାର୍ଯ୍ୟକ୍ରମଗୁଡ଼ିକୁ ସମାଲୋଚନା କରୁଥିଲେ, ଯଦିଚ ସେମାନେ ତାଙ୍କ ସହିତ ଏକମତ ପ୍ରକାଶ କରୁଥିଲେ ।

ଅହମଦାବାଦ କଂଗ୍ରେସ ଅଧିବେଶନରେ 1921 ମସିହା ଡିସେମ୍ବର 29 ତାରିଖ ଦିନ ବଙ୍ଗଳାର ପ୍ରତିନିଧିମାନଙ୍କୁ ଗାନ୍ଧୀ ଦେଇଥିବା ଭାଷଣରୁ ଜାଣିହୁଏ ଯେ ଓକିଲମାନେ କୋର୍ଟ କଚେରୀ ବର୍ଜନ କରିବା ଆବଶ୍ୟକତା ଥିବା ବିଷୟ ମଧ୍ୟ ସେ ପୂର୍ବରୁ ମୋତିଲାଲଙ୍କୁ କହିଥିଲେ ଏବଂ କଥାବାର୍ତ୍ତା ମଧ୍ୟ ହୋଇଥିଲେ । ସେମାନେ ସମ୍ପୂର୍ଣ୍ଣ ରୂପେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ନେଇ ମଧ୍ୟ କଥାବାର୍ତ୍ତା ହୋଇଥିଲା । ଅନ୍ୟାନ୍ୟ ସ୍ଥାନଗୁଡ଼ିକ ଭଳି ବଙ୍ଗଳାରେ ମଧ୍ୟ ଆଇନଜୀବୀମାନେ ଜାତୀୟବାଦୀ ଶିବିରରେ ସେନା ମୁଖ୍ୟ ଥିଲେ । 'ମୁଁ ଉତ୍କଣ୍ଠିତ" - ଗାନ୍ଧୀ କହିଥିଲେ, ଯେ "ସେମାନେ ପ୍ରଦାନ କରୁଥିବା ନେତୃତ୍ୱମୂଳକ କାର୍ଯ୍ୟକଳାପରୁ ଅଥବା ସମ୍ପୂର୍ଣ୍ଣ ରୂପେ ପରିଚାଳିତ କରୁଥିବା ନେତୃତ୍ୱରୁ ଅବ୍ୟାହତି ନେବାକୁ ହେବ । କିନ୍ତୁ ତା' ଫଳରେ ସେମାନଙ୍କୁ ସାଧାରଣ ସେବା କ୍ଷେତ୍ରରୁ ଅବ୍ୟାହତି ଦିଆଯିବା ଉଚିତ ବୋଲି କହିବା କଦାଚିତ ଇଚ୍ଛା ନାହିଁ । ଅପରପକ୍ଷେ, ଏପରିକି କର୍ତ୍ତବ୍ୟରତ ଥିବା ଜଣେ ଓକିଲଙ୍କ ସମେତ ପ୍ରତ୍ୟେକ ଆଇନଜୀବୀ ଜାତୀୟ ସେବାମୂଳକ କାର୍ଯ୍ୟରେ ନିୟୋଜିତ ରହିବାଲାଗି ମୁଁ ଉଦ୍ୟମ କରିବି ।"

ଆଇନଜୀବୀମାନଙ୍କ ପ୍ରତି କଠୋର ମନୋଭାବାପନ୍ନ ନ ହେବା ଲାଗି ଗାନ୍ଧିଜୀଙ୍କୁ ମୋତିଲାଲ ପରାମର୍ଶ ଦେଇଥିଲେ ।

ତାହାହିଁ ଥିଲା ବିଧି ନିର୍ଦ୍ଧେଶିତଭାବେ ମୋତିଲାଲ ଏବଂ ଗାନ୍ଧିଜୀଙ୍କ ମଧ୍ୟରେ ଶେଷ ସାକ୍ଷାତ ।

ତେବେ ଅଳ୍ପ କେତେ ମାସ ମଧ୍ୟରେ ବଙ୍ଗଳାରେ କଂଗ୍ରେସକୁ ଏକ ଶକ୍ତିଶାଳୀ ଅନୁଷ୍ଠାନ ରୂପେ ଗଣନା କରାଯାଇଥିଲା । 'ପତ୍ରିକା' ବ୍ୟତୀତ ଶ୍ୟାମ ସୁନ୍ଦର ଚକ୍ରବର୍ତ୍ତିଙ୍କ ଦ୍ୱାରା ସମ୍ପାଦିତ ଇଂରାଜୀ

ଦୈନିକ 'ଦି ସରଭେଣ୍ଟ' ଏବଂ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ଆରମ୍ଭ ହୋଇଥିବା ବଙ୍ଗଳା ଦୈନିକ-'ବଙ୍ଗଳାର କଥା' ଅହିଂସା ଓ ଅସହଯୋଗର ବାର୍ତ୍ତା ପ୍ରଚାର କରୁଥିଲେ । ତତ୍‌ପରବର୍ତ୍ତୀ ବର୍ଷ ଘୋଷ ପରିବାରର ପ୍ରାଥମିକ ଦୁଃସାହସିକ ପଦକ୍ଷେପଗୁଡ଼ିକର ଏକ କ୍ଷୁଦ୍ର ପରିଣତି 'ଆନନ୍ଦ ବଜାର ପତ୍ରିକା'କୁ ସ୍ୱତନ୍ତ୍ର ଭାବରେ ସୁରେଶ ଚନ୍ଦ୍ର ମଜୁମ୍‌ଦାର ଏବଂ ପ୍ରଫୁଲ୍ଲ କୁମାର ସରକାରଙ୍କ ପରିଚାଳନାରେ ଏକ ବଙ୍ଗଳା ଦୈନିକ ରୂପେ ରୂପାନ୍ତରିତ କରାଯାଇଥିଲା । ରେଲ କର୍ମଚାରୀ ଏବଂ କଳକାରଖାନାର ଶ୍ରମିକମାନେ ଟ୍ରେଡ ୟୁନିୟନମାନ ଗଠନ କରିଥିଲେ । ସେଗୁଡ଼ିକ କ୍ରାନ୍ତିକାରୀ ରାଜନୈତିକ ଆନ୍ଦୋଳନଗୁଡ଼ିକ ଦ୍ୱାରା ସ୍ପଷ୍ଟଭାବେ ପ୍ରଭାବିତ ହେଉଥିଲା । 1921 ମସିହାରେ ସଂଗଠିତ ହୋଇଥିବା ଧର୍ମଘଟଗୁଡ଼ିକ ମଧ୍ୟରୁ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା ଆସାମରେ ହୋଇଥିବା ଚାହା ବଗିଚାର କୁଲିମାନଙ୍କ ଧର୍ମଘଟ । ସେମାନେ କଂଗ୍ରେସ କର୍ମୀମାନଙ୍କ ନେତୃତ୍ୱରେ ଇଉରୋପୀୟ ଚାଷୀମାନଙ୍କ ଦ୍ୱାରା ନଗଣ୍ୟ ଭାବରେ ସ୍ୱଳ୍ପ ଦରମା ପାଉଥିବା ଚାକିରୀ ପରିତ୍ୟାଗ କରି ଉତ୍ତର ପ୍ରଦେଶ ଏବଂ ବିହାରରେ ଥିବା ଆପଣା ଗୃହକୁ ଫେରିଯିବାଲାଗି ଉଦ୍ୟମ କରିଥିଲେ । କିନ୍ତୁ ଚାନ୍ଦପୁରଠାରେ ବାଷ୍ପୀୟ ପୋତରେ ନଦୀ ପାର ହେବା ସ୍ଥାନରେ ସେମାନଙ୍କୁ ଅଟକ ରଖା ଯାଇଥିଲା ଏବଂ ଚାଷୀମାନଙ୍କ ସହିତ ଯୋଗସୂତ୍ର ରଖିଥିବା ସରକାରୀ କର୍ମଚାରୀମାନଙ୍କ ଆଦେଶକ୍ରମେ ଗୋର୍ଖା ସଶସ୍ତ୍ର ପୁଲିସଙ୍କ ଦ୍ୱାରା ସେମାନଙ୍କ ଉପରକୁ ଗୁଳି ଚାଳନା କରାଯାଇଥିଲା । ଦେଶବନ୍ଧୁ ଦାସଙ୍କ ଜଣେ ପ୍ରଧାନ ସହକର୍ମୀ ଜେ.ଏମ.ସେନ୍‌ଗୁପ୍ତ ସଙ୍ଗେ ସଙ୍ଗେ ଆସାମ-ବଙ୍ଗଳା ରେଲବାଇ ତଥା ବାଷ୍ପୀୟ ପୋତ ଭଳି ସେବା ସଂସ୍ଥାଗୁଡ଼ିକରେ ଧର୍ମଘଟ ଲାଗି ଆହ୍ୱାନ ଦେଇଥିଲେ । ଅପ୍ରତିଦ୍ୱନ୍ଦ୍ୱୀ ଭାବରେ କଂଗ୍ରେସ ତା'ର ଶକ୍ତି ପ୍ରଦର୍ଶନ କରିଥିଲା । ସେହି ଘଟଣା ମଧ୍ୟ ସି. ଏଫ୍. ଏଣ୍ଡ୍ରୁଜଙ୍କ ପ୍ରଭାବକୁ ସାମାଜିକ ସେବା କ୍ଷେତ୍ରରେ ବେଶ୍ ଭଲ ଭାବରେ ଅନୁଭୂତ କରାଇ ଦେଇଥିଲା । ସେ ଗାନ୍ଧୀ ଏବଂ ରବୀନ୍ଦ୍ରନାଥ ଠାକୁରଙ୍କ ଜଣେ ଅନ୍ତରଙ୍ଗ ବନ୍ଧୁ ରୂପେ ରହି ପାରିଥିଲେ ।

ଏପରିକି ଅସହଯୋଗ ଆନ୍ଦୋଳନର ପ୍ରଥମ ବର୍ଷରେ ହିଁ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଚାରିତ ଅହିଂସା ନୀତି ଉପରେ ବିଶ୍ୱାସ ତଥା ତାଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ସମସ୍ତ ଗଠନମୂଳକ କାର୍ଯ୍ୟକ୍ରମକୁ ସମର୍ଥନ କରୁଥିବା ଏବଂ ପୁଣି ପ୍ରତିରୋଧର ଗୋଟିଏ ପନ୍ଥା ସ୍ୱରୂପ ବର୍ଜନ ଯୋଜନାକୁ ସୁସ୍ପଷ୍ଟ ରୂପେ ଗ୍ରହଣ କରୁଥିବା ନେତାମାନଙ୍କ ମଧ୍ୟରେ ମତଭେଦ ଉପୁଜି ଥିଲା । ଦେଶବନ୍ଧୁ ଦାସଙ୍କ ଅଧିନାୟକତ୍ୱରେ ସେମାନେ ବଙ୍ଗଳାରେ ବେଶ୍ ଶକ୍ତିଶାଳୀ ଥିଲେ । ସେମାନେ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକ ପର୍ଯ୍ୟନ୍ତ ସେହି ପ୍ରତିରୋଧ ଆନ୍ଦୋଳନକୁ ପ୍ରସାରିତ କରିବାପାଇଁ ଏକ ନିଷ୍ପତ୍ତି ଗ୍ରହଣ କରି ନେଇଥିଲେ । ବିଦେଶୀ ବସ୍ତ୍ର ବିକ୍ରୟ କରାଯାଉଥିବା ଦୋକାନ ତଥା ମଦ ଦୋକାନଗୁଡ଼ିକ ସାମନାରେ ଖୁବ୍ ଜୋରସୋରରେ ପିକେଟିଂ କରାଯାଉଥିଲା ଏବଂ ବହୁଳ ଭାବରେ ସାଧାରଣ ସ୍ଥାନଗୁଡ଼ିକରେ ବିଦେଶୀ ବସ୍ତ୍ରଗୁଡ଼ିକୁ ଦହନ କରାଯାଉଥିଲା । ଯୁବକ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଅଧିନାୟକତ୍ୱରେ ପ୍ରଥମ ଦଳ ସ୍ୱେଚ୍ଛାସେବକ ବାହିନୀ ପରିଚାଳିତ ହୋଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ବର୍ମାରେ ସେ ଭାରତୀୟ ଜାତୀୟ ସୈନ୍ୟ ବାହିନୀ ଗଠନକରି ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ସ୍ୱର୍ଣ୍ଣମୟ ଅଧ୍ୟାୟ ଯୋଗ କରିଥିଲେ । ଶ୍ରୀଦାସଙ୍କ ପତ୍ନୀ ବାସନ୍ତିଦେବୀଙ୍କ ନେତୃତ୍ୱରେ ମହିଳାମାନେ ଶାନ୍ତିପୂର୍ଣ୍ଣ

ବିକ୍ଷୋଭ ପ୍ରଦର୍ଶନ କରିବା ନିମନ୍ତେ ବାହାରୁ ଥିଲେ । ଏହି କାର୍ଯ୍ୟକ୍ରମଗୁଡ଼ିକ ଚରମ ସୀମାରେ ପହଞ୍ଚିଥିଲା ଯେତେବେଳେ 1921 ମସିହା ନଭେମ୍ବର ମାସରେ ୱେଲ୍‌ସର ଯୁବରାଜ (ପରେ ଅଷ୍ଟମ ଏଡ୍‌ୱାର୍ଡ) ଏକ ପରିଭ୍ରମଣରେ ଭାରତ ଆସିବା କଥା ଘୋଷଣା କରାଯାଇଥିଲା । କଂଗ୍ରେସ ଏବଂ ଖିଲାଫତ୍ କମିଟି ସେହି ପରିଭ୍ରମଣ ସମୟରେ କୌଣସି ପ୍ରକାର ସାହାଯ୍ୟ ନକରିବାପାଇଁ ସ୍ଥିର କରିଥିଲେ । ସେତିକି ବେଳେ ସାରା ଦେଶରେ ହରତାଳ ପାଳନ କରାଯିବା ପାଇଁ ମଧ୍ୟ ସ୍ଥିର କରାଯାଇଥିଲା ।

ସରକାରୀ କର୍ମଚାରୀମାନେ ଏବଂ ସରକାରଙ୍କ ପ୍ରତି ଆନୁଗତ୍ୟ ପୋଷଣ କରୁଥିବା ବ୍ୟକ୍ତିବୃନ୍ଦ ଯୁବରାଜଙ୍କୁ ସ୍ୱାଗତ କରିବାପାଇଁ ଗୋଟିଏ କମିଟି ଗଠନ କରିଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀସୁରେନ୍ଦ୍ରନାଥ ବାନାର୍ଜି ଥିଲେ ଜଣେ 'ନାଇଟ' ଉପାଧିଧାରୀ ଏବଂ ପୁଣି ସେତେବେଳେ ସେ ଥିଲେ ବଙ୍ଗଳାରେ ଜଣେ ମନ୍ତ୍ରୀ । 'ପତ୍ରିକା' ମନ୍ତବ୍ୟ ପ୍ରକାଶ କରିଥିଲା ଯେ ସେ ଜଣେ "ନେତୃତ୍ୱ ହରାଇଥିବା ବ୍ୟକ୍ତି– କିଛିଟା ଧନ ଲାଭ ଆଶାରେ ଏବଂ ଆପଣାର କୋଟ୍‌ରେ ରିବନ୍ ବାନ୍ଧିବା ପାଇଁ ସେ ଆତ୍ମ-ମାନଙ୍କୁ ଛାଡ଼ି ଦେଲେ ।" ମୋତିଲାଲଙ୍କ ଅଜ୍ଞାତସାରରେ ତଥା ତାଙ୍କର ବିନା ସ୍ୱୀକୃତିରେ ସେମାନେ ତାହାଙ୍କ ନାମ ସେହି କମିଟିର ଜଣେ ସଭ୍ୟ ଭାବରେ ପ୍ରକାଶ କରି ଦେଇଥିଲେ । ସେ ନେଇ 'ପତ୍ରିକା'ରେ ଗୋଟିଏ ଘୋଷଣାନାମା ସେହି ପରିସ୍ଥିତିକୁ ସ୍ପଷ୍ଟ କରାଇ ଦେଇଥିଲା :

"ୱେଲସର ଯୁବରାଜଙ୍କୁ ସ୍ୱାଗତ କରିବାଲାଗି ଗଠନ କରାଯାଇଥିବା କମିଟିରେ ବାବୁ ମୋତିଲାଲ ଘୋଷ ସାମିଲ ହୋଇଛନ୍ତି କି ବୋଲି ଅନୁସନ୍ଧାନମୂଳକ ଅନେକ ପତ୍ର ଆମେ ପାଇଛୁ । ତା'ର ଉତ୍ତରରେ ଆମେ ଜଣାଇ ଦେବାକୁ ଚାହୁଁଛୁ ଯେ ତାହାଙ୍କର ଅଜ୍ଞାତସାରରେ ଏବଂ ବିନା ସ୍ୱୀକୃତିରେ ସେହି କମିଟିରେ ତାହାଙ୍କୁ ଜଣେ ସଭ୍ୟ ଭାବରେ ମନୋନୀତ କରାଯାଇଛି । ସେଥିରେ ରହିପାରିବା ଲାଗି ନିଜର ଅସାମର୍ଥ୍ୟତା ପ୍ରକାଶ କରି ସେହି କମିଟିର ସମ୍ପାଦକମାନଙ୍କ ନିକଟକୁ ସେ ପତ୍ର ଲେଖିଛନ୍ତି ।"

ତାହାପରେ ସମ୍ଭବତଃ ସେହି ବିଷୟକ ବିବାଦର ପରିସମାପ୍ତି ଘଟିଯିବାର କଥା କିନ୍ତୁ ସେତିକିବେଳେ ସୁରେନ୍ଦ୍ରନାଥ, ତାଙ୍କର ପୁରାତନ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଉଚିତ ଜବାବ ଦେବେ ବୋଲି ଚାହିଁଥିଲେ । ମୋତିଲାଲଙ୍କ ବର୍ତ୍ତମାନର ମନୋଭାବ ସହିତ, 1906 ମସିହା ଜାନୁଆରୀ ମାସରେ ୱେଲ୍‌ସର ପୂର୍ବତନ ଯୁବରାଜ ଭାରତ ଭ୍ରମଣରେ ଆସିଥିବା ବେଳର ମନୋଭାବ ତୁଳନା କରିବା ପାଇଁ 'ଦି ବେଙ୍ଗଲି' ଆଗେଇ ଆସିଥିଲା । ସେଥିରେ ମନ୍ତବ୍ୟ ପ୍ରକାଶ ପାଇଥିଲା ଯେ ସେତେବେଳେ ସେ "ହାତେ ମାପି ଚାଖଣ୍ଡେ ଚାଲିଥିଲେ ।" ତେବେ ମୋତିଲାଲ ତା'ର ଯଥାର୍ଥ ଉତ୍ତର ଦେଇଥିଲେ । ପତ୍ରିକାର ପ୍ରତ୍ୟୁତ୍ତର ଥିଲା:

"- - - - ଯଦି ବାବୁ ମୋତିଲାଲ ଭାରତର ଭାବୀ ସମ୍ରାଟଙ୍କ ସାମନାରେ ଅର୍ଦ୍ଧନମିତ ହୋଇଥିଲେ ତାହାହେଲେ ସେ କଣ ସେହି କାର୍ଯ୍ୟ ଆପଣାର ସ୍ୱାର୍ଥ ସାଧନ ପାଇଁ କରିଥିଲେ ନା ଦେଶପାଇଁ ?

ନିଶ୍ଚିତରୂପେ ତାଙ୍କ ନିଜ ଲାଗି 'ନାଇଟ' ପଦବୀ ସଂଗ୍ରହ କରିବା ପାଇଁ ତାହା ଚେସ କରି ନଥିଲେ କିମ୍ବା ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ସାଧାରଣ ବ୍ୟକ୍ତିଙ୍କ ଭଳି ଜୀବନର ସମସ୍ତ ନୀତି ନିୟମକୁ କୁକୁର-ମାନଙ୍କ ସାମନାରେ ଜଳାଞ୍ଜଳି ଦେଇ ତଥା ଦେଶ୍ ପିଠିରେ ଅସ୍ତ୍ରାଘାତ କରି ବାର୍ଷିକ ଚଉଷଠି ହଜାର ଟଙ୍କା ବିନିମୟରେ ମନ୍ତ୍ରୀପଦବୀ ପାଇଁ ଲାଳାୟିତ ନଥିଲେ ।''

ନଭେମ୍ବର ସତର ତାରିଖ ଦିନ ୱେଲ୍ସର ଯୁବରାଜ ବମ୍ବେରେ ପଦାର୍ପଣ କରିଥିଲେ । ବଙ୍ଗଳାର ସମସ୍ତ ସହରରେ ସେଦିନ ହରତାଳ ପାଳନ କରାଯାଇଥିଲା । କଲିକତାରେ ତାହା ସଂପୂର୍ଣ୍ଣ ସଫଳ ହୋଇଥିଲା । ବଙ୍ଗ ସରକାର ସେଥିରେ ବିଶେଷ ଭାବେ ବିଚଳିତ ହୋଇ ପଡିଥିଲେ । କାରଣ ମାସକ ମଧ୍ୟରେ ଯୁବରାଜ କଲିକତା ଆସିବାର ଥିଲା ଏବଂ ସେଇ ଅବସରରେ ଯଦି ସେଭଳି ହରତାଳର ପୁନରାବୃତ୍ତି ହୁଏ ତାହା ସରକାରୀ କର୍ମକର୍ତ୍ତାଙ୍କ ପାଇଁ ସଂପୂର୍ଣ୍ଣ ନିନ୍ଦାଜନକ ହେବ । ସେହି କାରଣରୁ ସ୍ୱେଚ୍ଛାସେବକ ବାହିନୀଗୁଡ଼ିକୁ ରୋନାଲ୍ଡସେ ବେଆଇନ ଘୋଷଣା କରିଥିଲେ ଏବଂ ବାଛବିଚାରହୀନ ଭାବେ ସେମାନଙ୍କୁ ଗିରଫ କରାଯାଇ ଅଟକ ରଖା ଯାଇଥିଲା । ଏପରିକି ମହିଳାମାନଙ୍କୁ ମଧ୍ୟ ସେଥିରୁ ବାଦ ଦିଆଯାଇ ନଥିଲା । ଚିତ୍ତରଞ୍ଜନ ଦାସ ଏବଂ ତାଙ୍କର ପ୍ରଧାନ ସହଯୋଗୀମାନଙ୍କୁ ଗିରଫ କରାଯାଇଥିଲା । ତଥାପି ତାହା ବଙ୍ଗଳାରେ ତତ୍କାଳୀନ ପରିବେଶକୁ ପରିଦୃଷ୍ଟ ଭାବେ ପ୍ରଭାବିତ କରିପାରି ନଥିଲା । ତେବେ ଗାନ୍ଧୀ 1922 ମସିହା ଫେବୃଆରୀ ବାର ତାରିଖ ଦିନ ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରି ନିଆଯିବା ଲାଗି ଘୋଷଣା କରିଥିଲେ । ସରକାରଙ୍କ ହତବୁଦ୍ଧିସମ୍ପନ୍ନ ନୀତି, ଯାହା ଜେଲଯାତ୍ରାର ପ୍ରହସନ ସୃଷ୍ଟି କରୁଥିଲା ଏବଂ ସାଧାରଣ ଲୋକଙ୍କ ମନରେ ଅଯଥା ଜେଲଦଣ୍ଡ ଭୋଗିବାର ସମ୍ଭାବନା ନେଇ ଭୟ ସୃଷ୍ଟି କରାଉଥିଲା ସେଥିଯୋଗୁଁ ଏପରିକି ଉଦାରପନ୍ଥୀମାନେ ମଧ୍ୟ ସରକାରଙ୍କ ପ୍ରତି ବିତୃଷ୍ଣ ହୋଇ ଉଠିଥିଲେ । ଏକ ଆପୋଷ ମିଳାମିଶା ଲାଗି ଭାଇସରାୟଙ୍କ ନିମନ୍ତ୍ରଣ ପାଇ ସରକାର କେଉଁ କେଉଁ ସାମ୍ବିଧାନିକ ସୁବିଧା ସୁଯୋଗ ଦେବାଲାଗି ଇଚ୍ଛା କରୁଥିଲେ ସେ ନେଇ ଏକ ସ୍ପଷ୍ଟ ବିବୃତି ଦିଅନ୍ତୁ ବୋଲି ଗାନ୍ଧିଜୀ କହିଥିଲେ । ତତ୍ପୂର୍ବରୁ ସମସ୍ତ ସତ୍ୟାଗ୍ରହୀଙ୍କୁ ମୁକ୍ତି ଦେବାପାଇଁ ସେ ଦାବୀ କରିଥିଲେ । ସେହି ଦାବୀ ଗୃହୀତ ହୋଇ ନଥିଲା ଏବଂ 1922 ମସିହା ମାର୍ଚ୍ଚ ମାସରେ ଗାନ୍ଧିଜୀଙ୍କୁ ଗିରଫ କରାଯାଇ ଛଅବର୍ଷ ଜେଲଦଣ୍ଡ ଦିଆ ଯାଇଥିଲା ।

ଜାତୀୟବାଦୀମାନେ ସରକାର ଭିତରେ ରହି ସଂସ୍କାରଗୁଡ଼ିକର ବିରୋଧ କରିବା ଉଦ୍ଦେଶ୍ୟରେ ବିଧାନ ସଭାଗୁଡ଼ିକୁ ନିର୍ବାଚିତ ହୋଇ ଆସିବା ସପକ୍ଷରେ ବଙ୍ଗଳାରେ ସାଧାରଣ ଜନମତ ବୃଦ୍ଧି ପାଇଥିଲା । ଚିତ୍ତରଞ୍ଜନ ଦାସ ଜେଲରେ ଥାଇ ମଧ୍ୟ ବାହାରେ ଥିବା ଭଳି ବେଶ୍ ପ୍ରଭାବଶାଳୀ ହୋଇ ପାରିଥିଲେ । ସରକାରଙ୍କ ପଦକ୍ଷେପଗୁଡ଼ିକୁ ବିଧାନ ସଭାରେ ସଂଖ୍ୟାଧିକ ଭୋଟ ଦ୍ୱାରା ପରାଜିତ କରାଇବା ମାଧ୍ୟମରେ ବିରୋଧ କରାଯିବା ଚିନ୍ତାଧାରା ପୂର୍ବ ତୁଳନାରେ ଅଧିକ ମାତ୍ରାରେ ଲୋକପ୍ରିୟତା ହାସଲ କରିଥିଲା । ମୋତିଲାଲ ନେହେରୁ, ବିଠଲଭାଇ ପଟେଲ ଏବଂ ଟି. ପ୍ରକାଶମ୍ ପ୍ରତିରୋଧ କରାଯିବା ଉଦ୍ଦେଶ୍ୟରେ ବିଧାନସଭା ପ୍ରବେଶ ପ୍ରସ୍ତାବ ସପକ୍ଷରେ ବରାବର ଅନୁକୂଳ ମତ ପ୍ରକାଶ କରିଥିଲେ ।

ଯେତେବେଳେ ବିଠଲଭାଇ ଏବଂ ପ୍ରକାଶମ୍ 1922 ମସିହା ଏପ୍ରିଲ ତେଇଶି ତାରିଖ ଦିନ ମୋତିଲାଲ ଘୋଷଙ୍କୁ ତାହାଙ୍କ ବାସଭବନରେ ସାକ୍ଷାତ କରିଥିଲେ, ସେତେବେଳେ ସେ ବିଶେଷ ଭାବରେ ଅସୁସ୍ଥ ଥିଲେ । ଆପାତତଃ ବିଗତ ଛଅ ମାସ ଧରି ସେ ଶଯ୍ୟାଶାୟୀ ଅବସ୍ଥାରେ ହିଁ ରହିଥିଲେ । ପ୍ରକାଶମ୍‌ଙ୍କ ଖବରକାଗଜ 'ଦି ସ୍ୱରାଜ୍ୟ'ରେ ପ୍ରକାଶ ପାଇଥିବା ସେହି ସାକ୍ଷାତକାରର ବିବରଣୀରୁ ମୋତିଲାଲ କହିଥିବା ଜଣାପଡେ ଯେ,

"କେବଳ ଗୋଟିଏ ବିଷୟରେ ଆଲୋଚନା କରିବାପାଇଁ ମୁଁ ଇଚ୍ଛାକରେ । ନବଗଠିତ ବିଧାନ ସଭାଗୁଡିକରେ ପ୍ରବେଶ ଲାଗି ମୁଁ ସବୁବେଳେ ବିରୋଧ କରି ଆସିଛି । ଯେତେବେଳେ ମହାତ୍ମା ଗାନ୍ଧୀ ଗତବର୍ଷ ମୋ ସହିତ ସାକ୍ଷାତ କରିଥିଲେ (ସେତେବେଳେ ମଧ୍ୟ ବିଠଲଭାଇ ଉପସ୍ଥିତ ଥିଲେ) ମୁଁ ତାହାଙ୍କୁ କହିଥିଲି ଯେ କୌଣସି ଲୋକ ବିଧାନ ସଭାରେ ପ୍ରବେଶ କଲେ ସେଠିକାର କପଟପୂର୍ଣ୍ଣ ପରିସ୍ଥିତି ଦ୍ୱାରା ପ୍ରଭାବିତ ହେବାର ସମ୍ଭାବନା ଅଛି । ଦୁର୍ଭାଗ୍ୟବଶତଃ ଆମ ସଂଗଠନ ଭିତରେ ସେଭଳି ପ୍ରବେଶକୁ ସମର୍ଥନ କରୁଥିବା କେତେଜଣ ବ୍ୟକ୍ତି ଅଛନ୍ତି । ତେବେ ସଂଗଠନ ଭିତରେ କୌଣସି ପ୍ରକାର ବିଭାଜନ ହେବା ଉଚିତ ନୁହେଁ ।"

ଶ୍ରୀଯୁକ୍ତ ପଟେଲ୍ ଉତ୍ତର ଦେଇଥିଲେ, "ଯେହେତୁ ଆମ୍ଭେମାନେ ମହିଳାମାନଙ୍କ ସମେତ ପଚିଶି ହଜାର ଦେଶପ୍ରେମୀଙ୍କୁ ବର୍ତ୍ତମାନ ସୁଦ୍ଧା ଜେଲ୍‌ହାଜତ ଭିତରକୁ ପଠାଇ ଦେଇ ସାରିଲେଣି ତେଣୁ ବର୍ତ୍ତମାନ ସେହି ବିଷୟରେ କଥାବାର୍ତ୍ତା ହେବା ନିରର୍ଥକ । ବିଭାଜନ ନହେବା ଦିଗରେ ଆମ୍ଭେମାନେ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଭାବେ କାର୍ଯ୍ୟ କରିବା ଉଚିତ । ଯଦି ସେହି ପ୍ରଶ୍ନ ଉଠେ ତେବେ ତାହା ଡିସେମ୍ବରରେ ହେବାକୁ ଥିବା ପରବର୍ତ୍ତୀ କଂଗ୍ରେସରେ ସ୍ଥିରୀକୃତ ହେବ ।"

ଯେତେବେଳେ ଦେଶପ୍ରେମୀ ତଥା ନେତୃବର୍ଗଙ୍କ ଉତ୍ସର୍ଗ ବିଷୟରେ ଉଲ୍ଲେଖ କରାଯାଇଥିଲା, ମୋତିବାବୁ ବିଶେଷ ଭାବେ ସ୍ପର୍ଶକାତର ହୋଇ ଉଠିଥିଲେ । ଲୁହ ଜକେଇ ଆସିଥିବା ଆଖିନେଇ ସେ ମୁହଁ ଉପରକୁ ଉଠାଇ କହିଥିଲେ "ଆମ ଦେଶରେ, ମୋ' ଜୀବନକାଳ ମଧ୍ୟରେ ଏପରି ଏକତା ତଥା ଉତ୍ସର୍ଗ ଦେଖି ପାରିବି ବୋଲି ମୁଁ ଚିନ୍ତା କରି ନଥିଲି । ମୁଁ ଅତ୍ୟନ୍ତ ଆନନ୍ଦିତ ଯେ, ତାହା ମୁଁ ଦେଖି ପାରିଛି ।"

- - - - - ସେହି ସାକ୍ଷାତକାରବେଳେ ଦେଶର ସେହି ବର୍ଷୀୟାନ୍ ନେତାଙ୍କୁ ସେହି ଦୁଇଜଣ ବାରମ୍ବାର ଅନୁରୋଧ କରିଥିଲେ ମଧ୍ୟ ସେ ଆଦୌ ଶୋଇ ନଥିଲେ । ସେହି ସଂପୂର୍ଣ୍ଣ ସମୟ ଶଯ୍ୟା ଉପରେ ସ୍ଥିର ଭାବରେ ବସିରହି ଧୀର ଏବଂ କ୍ଷୀଣ କଣ୍ଠରେ ଅଥଚ ପ୍ରେରଣାଦାୟକ ଭାବରେ ସେ କହି ଚାଲିଥିଲେ ।

ବିଧାନ ସଭାଗୁଡିକରେ ପ୍ରବେଶ ପ୍ରଶ୍ନ ନେଇ ମୋତିଲାଲଙ୍କ ବିରୋଧ ସଂପର୍କରେ ସେ ତାଙ୍କ ପୂର୍ବସ୍ଥିତି ସହିତ ସାମଞ୍ଜସ୍ୟ ରକ୍ଷା କରି ପାରିଥିଲେ । ତେବେ ଏହି ଆଶଙ୍କା ଦ୍ୱାରା ତାଙ୍କର ଧାରଣା

ଅନୁପ୍ରାଣିତ ହୋଇଥିଲା ଯେ ଏକ କ୍ଷମତାଶାଳୀ ହାତ ଦ୍ୱାରା ନୈତିକ ସ୍ଖଳନ ହେବାର ସମ୍ଭାବନା ବେଶୀ ଥିଲା । ଏପରିକି ସେହି ନିର୍ବାଚନଗୁଡ଼ିକ ମୁକ୍ତ ଏବଂ ସାଧାରଣ ହେବାର ସମ୍ଭାବନା ନଥିଲା । ଭୋଟ ଦେବା ଅଧିକାର ସୀମିତ ଲୋକଙ୍କୁ ଦିଆଯିବା ଢ଼ଙ୍ଗେ ସଙ୍ଗେ ସାମ୍ପ୍ରଦାୟିକତା ଏବଂ ସ୍ୱତନ୍ତ୍ର ଭାବେ ପ୍ରତିନିଧିତ୍ୱ କରିବାପାଇଁ ସୁଯୋଗ ଦିଆଯିବା ଭଳି ପ୍ରସ୍ତାବଗୁଡ଼ିକ ଯୋଗୁଁ ସେସବୁକୁ ବିରୋଧ କରାଯାଉଥିବା କଂଗ୍ରେସର ତୀକ୍ଷ୍ଣତା ହୁଏତ ସ୍ଥୂଳାଧାର ହୋଇପାରେ ବୋଲି ସେ ଉଦ୍‌ଘ୍ର କରୁଥିଲେ । ଅନ୍ୟପକ୍ଷରେ ତାହାଙ୍କର ଯୁକ୍ତିସମ୍ପନ୍ନ ପ୍ରକୃତରେ କାର୍ଯ୍ୟକ୍ଷମ ହୋଇପାରିବ ବୋଲି ସେ ମନେ କରୁ ନଥିଲେ । ସେ ଚାହୁଁଥିଲେ ହୁଏତ ଏକ ମୁକ୍ତ ପାର୍ଲାମେଣ୍ଟ କିମ୍ବା ଆଦୌ କୌଣସି ଅନୁଷ୍ଠାନ ନୁହେଁ ।

# ସତର: ଅନ୍ତିମ ସମୟ

ମୋତିଲାଲଙ୍କ ସ୍ୱାସ୍ଥ୍ୟ କସ୍ମିନ୍‌କାଳେ ବଳିଷ୍ଠ ନଥିଲା । ବାଲ୍ୟକାଳରୁ ସେ ବିଧିବଦ୍ଧ ଭାବେ ଖାଦ୍ୟନାଳୀଜନିତ ପୀଡାରେ ଆକ୍ରାନ୍ତ ଥିଲେ । ତେଣୁ ଖାଦ୍ୟ ପାନୀୟରେ ସଂଯମ ଆଚରଣ କରି ଏବଂ ସଠିକ୍ କାର୍ଯ୍ୟନିର୍ଘଣ୍ଟ ପାଳନକରି ଚାଲୁଥିବା ଯୋଗୁଁ ସେ ସେହିଭଳି କଠିନ ଦାୟିତ୍ୱ ସମ୍ପନ୍ନ କରିବା ପାଇଁ ନିଜକୁ ସମର୍ଥ ରଖି ପାରିଥିଲେ । ସାଧାରଣ ଜୀବନରେ ଜଣେ ରାଜନୀତିଜ୍ଞ ତଥା ସାମ୍ବାଦିକ ହିସାବରେ ସେ ଥିଲେ ଜଣେ ଅଧ୍ୟବସାୟୀ, ସ୍ପଷ୍ଟବାଦୀ ତଥା ଜଣେ ବିବଦମାନ ବ୍ୟକ୍ତି । କିନ୍ତୁ ବ୍ୟକ୍ତିଗତ ଭାବରେ ସେ ଗୋଟିଏ ଯୌଥ ପରିବାରର ସ୍ନେହଶୀଳ କର୍ତ୍ତା ଥିଲେ ଏବଂ ତାଙ୍କର ଚଳଣି ଥିଲା ଅତି ମାତ୍ରାରେ ସରଳ । ସେ କେବେ ମଦ୍ୟପାନ କରିନଥିଲେ କିମ୍ବା ସିଗାରେଟ୍ ପିଇ ନଥିଲେ । ତାଙ୍କର ଖାଦ୍ୟ-ପାନୀୟ ଅତିଶୟ ସରଳ ଥିଲା । ପ୍ରାୟତଃ ଖଣ୍ଡିଏ ଛୋଟିଆ ଧୋତି ଏବଂ ସାର୍ଟ ଥିଲା ତାଙ୍କର ପରିଧାନ ଏବଂ ଏପରିକି ସମ୍ରାଟ ତଥା ତାଙ୍କର ଉଚ୍ଚତମ ପ୍ରତିନିଧିମାନଙ୍କ ସହିତ ସାକ୍ଷାତ କରିବାକୁ ଗଲାବେଳେ ମଧ୍ୟ ଗ୍ରାମାଞ୍ଚଳର ଜଣେ ଉତ୍ତମ ଚାଷୀଙ୍କ ଭଳି ସେ ପୋଷାକ ପରିଚ୍ଛଦରେ ଯାଉଥିଲେ । ଯେତେ ଦାରୁଣ ହେଲେବି ତାହାଙ୍କର ସମାଲୋଚନାଗୁଡିକ ମାର୍ଜିତ ଥିଲା । ସମସ୍ତ ପ୍ରକାର ତୀବ୍ର ଉତ୍ତେଜନାଗୁଡିକର ଜଘନ୍ୟ ଆକ୍ରମଣ ସତ୍ତ୍ୱେ ସେ ତାଙ୍କର କୌଣସି ବିରୋଧୀ ବ୍ୟକ୍ତିଙ୍କ ପଛରୁ ଛୁରିକାଘାତ କରି ନଥିଲେ । ବ୍ୟକ୍ତିଗତ ସମ୍ପର୍କ ରକ୍ଷା ଦୃଷ୍ଟିରୁ ସେ ଥିଲେ ମାର୍ଜିତ ତଥା ସମ୍ବେଦନଶୀଳ । ତାହାଙ୍କର ନିଷ୍ଠାପରତା ଏବଂ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ଯୋଗୁଁ ରାଜନୈତିକ ବିରୋଧୀ ଏବଂ ବ୍ରିଟିଶ ସରକାରୀ କର୍ମଚାରୀମାନଙ୍କ ମଧ୍ୟରୁ ଅନେକଙ୍କୁ ସେ ବନ୍ଧୁ ରୂପେ ଲାଭ କରିପାରିଥିଲେ, ଯେଉଁମାନେ ଯଥାର୍ଥଭାବେ ଅନୁଭବ କରି ପାରିଥିଲେ ଯେ ସେମାନଙ୍କ ଶାସନଧାରା ପ୍ରତି ତାଙ୍କର ଥିବା ବୈର ମନୋଭାବର ସାଲିସ୍ କରାଯାଇ ପାରିବ ନାହିଁ । ବାସଗୃହ ହିଁ ଥିଲା ତାଙ୍କର କାର୍ଯ୍ୟାଳୟ ଏବଂ ଯେ କୌଣସି ସମୟରେ ଏପରିକି ସବୁଠାରୁ ଖାପଛଡା ସମୟଗୁଡିକରେ ମଧ୍ୟ ତାହା ଯେ କୌଣସି ଲୋକ ପାଇଁ ଉନ୍ମୁକ୍ତ ଥିଲା । ସମାଜର ସବୁ ଶ୍ରେଣୀର ଲୋକେ ଏବଂ ସବୁ ସ୍ତରର ଲୋକ ସେମାନଙ୍କ ଦୁଃଖ ଲାଘବ କରିବା ପାଇଁ ଦୃଢ ବିଶ୍ୱାସ ସ୍ଥାପନ କରି କିମ୍ବା ସେମାନଙ୍କର ଅସୁବିଧାଗୁଡିକୁ ଦୂର କରିବାପାଇଁ ତାହାଙ୍କୁ ସନିର୍ବନ୍ଧ ଅନୁରୋଧ ଜଣାଇବା ପାଇଁ ପୂର୍ବରୁ କୌଣସି ସୂଚନା ନଦେଇ ମଧ୍ୟ ଅଗତ୍ୟା ସେଠାରେ ଉପସ୍ଥିତ ହେଉଥିଲେ । 'ପତ୍ରିକା' ଏବଂ ଜାତୀୟବାଦୀ ରାଜନୀତି ଥିଲା ତାଙ୍କର ମୁଖ୍ୟ କାର୍ଯ୍ୟକଳାପ; ସଂଗତ ତଥା ବୈଷ୍ଣବୀୟ

ସାହିତ୍ୟ ଅଧ୍ୟୟନ ଥିଲା ତାଙ୍କର ଅବସର ସମୟର ମୁଖ୍ୟ କାର୍ଯ୍ୟ । ତାଙ୍କର ସମସାମୟିକମାନଙ୍କ ଭଳି ସେ ଭାରତୀୟ ଜାତୀୟତାବାଦର ଜଣେ ତାତ୍ତ୍ୱିକ ପ୍ରବକ୍ତା ନଥିଲେ କିମ୍ବା ଅରବିନ୍ଦ, ବିପିନ୍ ଚନ୍ଦ୍ର ପାଲ୍, ଠାକୁର ତଥା ଗାନ୍ଧିଜୀଙ୍କ ଭଳି ସେ ସାଧାରଣ ଜନତାର ମଙ୍ଗଳ ପାଇଁ ସଚ୍ଚୋଟ ଭାବେ କାର୍ଯ୍ୟକରି ତଥା ଗ୍ରାମ୍ୟ ଜୀବନ ସହିତ ଘନିଷ୍ଠ ସମ୍ପର୍କ ସତ୍ତ୍ୱେ ସେହି ଦିଗରେ ସେମାନଙ୍କ ଭଳି ବିଶେଷ ଖ୍ୟାତ ହୋଇ ପାରି ନଥିଲେ ।

ସତୁରି ବର୍ଷ ବୟସ ପର୍ଯ୍ୟନ୍ତ ସମୟର ବୋଝ ମୋତିଲାଲଙ୍କ ଉପରେ ମୃଦୁ ପ୍ରଭାବ ପକାଇ ଥିଲା । 1917 ମସିହା ତାହାଙ୍କ ପାଇଁ ଥିଲା ଏକ ପ୍ରବଳ କାର୍ଯ୍ୟବହୁଳ ବର୍ଷ । ଡୁମେରାଓଁ ମକଦ୍ଦମାରେ ସାକ୍ଷ୍ୟ ପ୍ରମାଣ ଦେବାପାଇଁ ତାହାଙ୍କୁ ଡକରା ହୋଇଥିଲା । ସେଥିପାଇଁ ତାଙ୍କୁ ପ୍ରାୟ ମାସେକାଳ ଧରି ବ୍ୟସ୍ତ ରହିବାକୁ ପଡିଥିଲା । ତିରିଶି ଲକ୍ଷ ଟଙ୍କା ମୂଲ୍ୟର ଏକ ବାସ୍ତବ ଭୂସମ୍ପତ୍ତି ସହିତ ଜଡିତ ତାହା ଥିଲା ଗୋଟିଏ ଦେୱାନୀ ମକଦ୍ଦମା । ସେହି ବର୍ଷ ଦାୟିତ୍ୱସମ୍ପନ୍ନ ସାଧାରଣ କାର୍ଯ୍ୟ ତାଲିକାରେ ତାହା ଥିଲା ମୋତିଲାଲଙ୍କ ସର୍ବପ୍ରଥମ କାର୍ଯ୍ୟ । ବୟସ ଯୋଗୁଁ ଭାରାକ୍ରାନ୍ତ ତାଙ୍କର ଶରୀର ପାଇଁ ସେହି ସମ୍ମିଳିତ ଖଟଣି ଅତ୍ୟଧିକ ଥିଲା । ତେଣୁ ଅକ୍ଟୋବର ମାସରେ ବିହାରର ସୋନେ ନଦୀକୂଳସ୍ଥ କୋଇଲୱାର ନାମକ ଏକ ନିରୋଳା ସ୍ଥାନକୁ ଚାଲି ଯାଇଥିଲେ କିଛି ସମୟ ଶାନ୍ତିରେ ବିତାଇବା ପାଇଁ । ନିଜ ସହିତ ଧର୍ମ ସମ୍ବନ୍ଧୀୟ ତଥା ଆଧ୍ୟାତ୍ମିକ ଜିଜ୍ଞାସାମୂଳକ ଅନେକ ଗ୍ରନ୍ଥ ସେ ନେଇ ଯାଇଥିଲେ । ସେଠାରେ ରହି ମଧ୍ୟ ସେ ତାଙ୍କ ଖବରକାଗଜ ସହିତ ସମ୍ପର୍କ ରଖିଥିଲେ । ସେଥି ନିମନ୍ତେ ଲେଖା ପଠାଉଥିଲେ ଏବଂ ବିଭିନ୍ନ ଉପଦେଶ ମଧ୍ୟ ପ୍ରେରଣା କରୁଥିଲେ । ସେହି ଗ୍ରାମର ଶାନ୍ତ ପରିବେଶ ତାହାଙ୍କୁ ଏପରି ଭାବରେ ଅତିଶୀଘ୍ର ଅତିଷ୍ଠ କରାଇ ଦେଇଥିଲା ଯେ ସେ 1918 ମସିହାର ପ୍ରାରମ୍ଭରେ ସେଠାରୁ ବାରାଣସୀ ଚାଲି ଯାଇଥିଲେ । ସେଠାରେ ତାଙ୍କର ବାମ ହାତ ଯନ୍ତ୍ରଣାଦାୟକ ଭାବେ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ଯାଇଥିଲା ଏବଂ ତାହା କ୍ରମଶଃ ଶରୀରର ବାମ ଅଙ୍ଗକୁ ସମ୍ପୂର୍ଣ୍ଣ ରୂପେ ବ୍ୟାପି ଯାଇଥିଲା । ତାହା ମୃତ୍ୟୁ ପର୍ଯ୍ୟନ୍ତ ସେହିଭଳି ରହିଥିଲା ।

1918 ମସିହାର ମଧ୍ୟଭାଗ ବେଳକୁ ମୋତିଲାଲ କଲିକତା ଫେରି ଆସିଥିଲେ । ପୁଣି ସେଠାରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଥିଲା । ପରିଣାମତଃ ସେ ସେଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନରେ ଯୋଗ ଦେଇ ପାରି ନ ଥିଲେ । ସେଇଠି ଗାନ୍ଧିଜୀଙ୍କ ଅହିଂସ ଅସହଯୋଗ ପ୍ରସ୍ତାବ ଯୋଜନା ଗୃହୀତ ହୋଇଥିଲା । ତାଙ୍କର ମାଂସପେଶୀସବୁ ଦୁର୍ବଳ ହୋଇ ଯାଇଥିଲା କିନ୍ତୁ ଶକ୍ତି ଆକାଶରେ ଉଡି ପାରିବା ଭଳି ବେଶ ସବଳ ଥିଲା । ସେହି କାରଣରୁ 1919 ମାର୍ଚ୍ଚ ମାସରେ ତାଙ୍କର ଏକମାତ୍ର ଜାମାତା ନୃତ୍ୟଗୋପାଳ ଦତ୍ତଙ୍କ ମୃତ୍ୟୁଜନିତ ଯନ୍ତ୍ରଣା ସହ୍ୟ କରିପାରି ଥିଲେ । ତାଙ୍କ ପରିବାରର ସଦସ୍ୟମାନେ ଯେତେବେଳେ ଦୁଃଖରେ ଅଧୀର ହୋଇ ପଡୁଥିଲେ ସେ ସେମାନଙ୍କୁ ସାନ୍ତ୍ୱନା ଦେଇ କହୁଥିଲେ, 'ତମେମାନେ କାନ୍ଦିକାଟି ଅଧୀର ନହୋଇ ବରଂ ଆନନ୍ଦ ପ୍ରକାଶ କର । କାରଣ ସେ ଏକ ଚିର ଶାନ୍ତିପ୍ରଦ ସ୍ଥାନକୁ ଗମନ କରିଅଛନ୍ତି ।'

1921 ମସିହା ମଧ୍ୟଭାଗ ବେଳକୁ ଜନସାଧାରଣଙ୍କ ପାଇଁ ମୋତିଲାଲଙ୍କ ସ୍ୱାସ୍ଥ୍ୟ ଉଦ୍‌ବେଗଜନକ ହୋଇପଡିଥିଲା । ମଝିମଝିରେ ଖବରକାଗଜଗୁଡ଼ିକରେ ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥା ସଂପର୍କରେ ସମ୍ବାଦ ପ୍ରକାଶ ପାଉଥିଲା । ଜୁଲାଇ ମାସର କୌଣସି ଏକ ଦିନ "ଦି ଷ୍ଟେଟସ୍‌ମ୍ୟାନ୍" ଟିପ୍ପଣୀ ଦେଇଥିଲା :

"ଅମୃତ ବଜାର ପତ୍ରିକାର ପ୍ରଶଂସକମାନେ ଯେଉଁମାନଙ୍କ ମଧ୍ୟରେ ଅନେକ ଇଉରୋପୀୟ ମଧ୍ୟ ଅଛନ୍ତି, ଶୁଣି ଅତ୍ୟନ୍ତ ଆନନ୍ଦିତ ହେବେ ଯେ ବାବୁ ମୋତିଲାଲ ଘୋଷଙ୍କ ସ୍ୱାସ୍ଥ୍ୟ ଅବସ୍ଥା କ୍ରମଶଃ ଉନ୍ନତି ହେବାରେ ଲାଗିଛି । ଯଦିଚ ଏହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ପାରିବନାହିଁ ଯେ ନିକଟ ଅତୀତରେ ଆକ୍ରାନ୍ତ ହୋଇଥିବା ପକ୍ଷାଘାତ ରୋଗରୁ ସେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରି ସାରିଲେଣି । ବର୍ତ୍ତମାନ ମୋତିବାବୁ ଜଣେ ପ୍ରାୟ 75 ବର୍ଷ ବୟସ୍କ ବୃଦ୍ଧ ।"

ତଥାପି ତାହାଙ୍କ କଲମ ସକ୍ରିୟ ଥିଲା । ସକାଳୁ ଗୋଟିଏ ଘୋଡା ଗାଡିରେ ତାଙ୍କ ଗୃହ ନିକଟସ୍ଥ ଏକ ନଦୀକୂଳକୁ ମୁକ୍ତବାୟୁ ସେବନ ଉଦ୍ଦେଶ୍ୟରେ କିଛି ସମୟ ପାଇଁ ଚାଲି ଯାଉଥିଲେ । ସେଠାରେ ଗୋଟିଏ ଆରାମ ଚୌକିରେ ବସି ସକାଳୁ ଖବରକାଗଜସବୁ ପଢ଼ି ନେଉଥିଲେ କିମ୍ବା ବାଡିରେ ଭରାଦେଇ ଅଳ୍ପ ଅଳ୍ପ ଚଲାବୁଲା ମଧ୍ୟ କରୁଥିଲେ । ମଧ୍ୟାହ୍ନବେଳେ ସେ ଲେଖାଲେଖି କରୁଥିଲେ କିମ୍ବା ଆଇରିସ୍ ଅବସ୍ଥା ସଂପର୍କରେ ଜାଣିବା ଲାଗି ବ୍ରିଟେନ୍‌ରୁ ପ୍ରକାଶିତ ଖବରକାଗଜସବୁ ପଢାପଢି କରୁଥିଲେ ଅଥବା ଆଧ୍ୟାତ୍ମିକ ସାହିତ୍ୟ ଅଧ୍ୟୟନ କରୁଥିଲେ । ସତେ ଯେମିତି ସେ ମୃତ୍ୟୁ ସହିତ ସନ୍ଧି କରିନେଇଥିଲେ ଏବଂ ଧୈର୍ଯ୍ୟ ସହିତ ତାହାରି ଆଗମନକୁ ଅପେକ୍ଷା କରି ରହିଥିଲେ । ତାଙ୍କ ମତରେ ମୃତ୍ୟୁ ଥିଲା ଶାଶ୍ୱତ ଜୀବନରେ ଗତିପଥର ଏକ ଧାରା ଏବଂ ଏଇ ପୃଥିବୀରେ ମୃତ୍ୟୁ ପରେ, ମଣିଷ କେବଳ ଅନ୍ୟ ଏକ ଉତ୍ତମ ପୃଥିବୀରେ ପୁନର୍ଜନ୍ମ ଗ୍ରହଣ କରିଥାଏ । ଈଶ୍ୱରଙ୍କୁ ସେ ପ୍ରେମମୟ ତଥା ଅନ୍ତରଙ୍ଗ ବନ୍ଧୁ ରୂପେ ଗ୍ରହଣ କରି ନେଇଥିଲେ । ତାଙ୍କ ଦୃଷ୍ଟିରେ ସେ ଥିଲେ ଶ୍ରୀକୃଷ୍ଣ କିମ୍ବା ଶ୍ରୀଗୌରାଙ୍ଗଙ୍କ ଭଳି ରୂପଧାରୀ ଜଣେ ଅତିମାନବ; ମଣିଷଙ୍କ ଭିତରେ ଈଶ୍ୱର । ମଣିଷମାନଙ୍କ ଉପରେ ଦ୍ୱିଧାହୀନ ଭାବେ ତାଙ୍କର ବିଶ୍ୱାସ ଥିଲା ଯାହା ତାଙ୍କର କର୍ତ୍ତବ୍ୟମୟ ପଥକୁ ଆଲୋକିତ କରି ପକାଇଥିଲା । ସେଥିରୁ ହିଁ ତାଙ୍କର ବିଶ୍ୱାସ ଜନ୍ମ ନେଇଥିଲା ଯେ ଭାରତୀୟମାନେ ସେମାନଙ୍କ ଆପଣାର ଗୃହ ପରିଚାଳନା କରିବାର ଶକ୍ତିରେ ଶକ୍ତିମନ୍ତ ଏବଂ ମୁକ୍ତିର ବିଜୟ ଅଧିକାର ଲାଭ କରିବା ସେମାନଙ୍କ ଭାଗ୍ୟ ନିର୍ଦ୍ଦେଶିତ ।

ମୋତିଲାଲଙ୍କ ସ୍ୱାସ୍ଥ୍ୟ ପୁଣିଥରେ ଭଗ୍ନ ହୋଇଥିଲେ ମଧ୍ୟ ସେ ଯଥାଚଥ ଆରୋଗ୍ୟ ଲାଭକରି 1922 ଜୁଲାଇ ମଧ୍ୟଭାଗରେ ଖବରକାଗଜଗୁଡ଼ିକୁ ଜଣାଇବା ଲାଗି ସମର୍ଥ ହୋଇଥିଲେ ଯେ, ସେ ଆପାତତଃ ମୃତ୍ୟୁ ଯନ୍ତ୍ରଣାର ପୂର୍ବସ୍ୱାଦ ଅନୁଭବ କରି ସାରିଥିଲେ । "ସେଥିରୁ ସେ ରାଜକୁମାର ହୁଅନ୍ତୁ ବା ହୁଅନ୍ତୁ ଜଣେ ଭିକ୍ଷା, ଜଣେ ସନ୍ଥ ହୁଅନ୍ତୁ ବା ପାପୀ ହେଉ କୌଣସି ଲୋକ ମୁକ୍ତି ପାଇ ପାରିବ ନାହିଁ । ବାସ୍ତବିକ୍ ଏହା ଅତି ଦାରୁଣ ଥିଲା ଯେ ବାୟୁମୂର୍ଚ୍ଛା ରୋଗ ଯୋଗୁଁ ଶରୀରର ବିଭିନ୍ନ ଅଂଶ ଫୁଲି ଉଠିବା, ନିଃଶ୍ୱାସ-ପ୍ରଶ୍ୱାସରେ ବାଧା ଉପୁଜିବା, ଶରୀରର ପୃଷ୍ଠଦେଶ ତଥା ନିତମ୍ବରେ ଅସହ୍ୟ ଯନ୍ତ୍ରଣା ଜନିତ ରୋଗରେ ମର୍ମନ୍ତୁଦ ଭାବେ ପୀଡିତ ହୋଇ - - - - ମୁଁ ସ୍ୱପ୍ନ ସୁଦ୍ଧା ଦେଖି ପାରୁ ନଥିଲି ଯେ

ସେହି ଯନ୍ତ୍ରଣାକୁ ସହ୍ୟ କରିପାରିବା ମୋ ପାଇଁ ସମ୍ଭବପର ହେବ ଯାହା ମୁଁ ନବମଥର ପାଇଁ ମଧ୍ୟ ବରଦାସ୍ତ କରିପାରିଥିଲି ଏବଂ ତଥାପି ଯେକୌଣସିମତେ ସେହି କଠୋର ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇ ପାରିଥିଲି - - - - । ଏହା ବିଜ୍ଞାନସମ୍ମତ ଭାବେ ପ୍ରତିପାଦିତ ହୋଇ ଆସିଛି ଯେ ପ୍ରକୃତରେ ଯେତେବେଳେ ମୃତ୍ୟୁ ଘଟେ ସେତେବେଳେ ସାମାନ୍ୟତମ କଷ୍ଟ ହୁଏ ନାହିଁ ବରଂ ବାସ୍ତବ ଆନନ୍ଦ ପ୍ରାପ୍ତି ହୁଏ । ଅନ୍ୟ ଭାଷାରେ କହିବାକୁ ଗଲେ ଯେତେବେଳେ ଆତ୍ମା ପାର୍ଥିବ ଶରୀରରୁ ମୁକ୍ତ ହୁଏ ଏବଂ ଉର୍ଦ୍ଧ୍ୱକୁ ଗତିକରି ତାର ସ୍ଥାୟୀ ବାସସ୍ଥଳୀକୁ ଗମନ କରେ ସେତେବେଳେ ତାହା ସମ୍ଭବ ହୁଏ । ଅତି ନିକଟ ଭବିଷ୍ୟତରେ ସେହି ନୂତନ ଅନୁଭବ ମୋର ଅନୁଭୂତ ହେବ ବୋଲି ମୁଁ ଆଶା କରୁଛି । କିନ୍ତୁ ଏହା କିଭଳି ଏକ ଆଶ୍ଚର୍ଯ୍ୟ ଯେ ମାନବ ଜାତିର ଉପକାର ପାଇଁ ମୁଁ ତାହାକୁ ବର୍ଣ୍ଣନା କରିପାରିବା ସମ୍ଭବପର ହେବ ନାହିଁ ।"

ତା'ର ସ୍ୱଳ୍ପକାଳ ପରେ ପରେ ମୋତିଲାଲ ପୁଣିଥରେ ସେଭଳି ଅସୁସ୍ଥତା ଭୋଗ କରିଥିଲେ । ତେଣୁ ସେ ଅଧିକ ଦୁର୍ବଳ ହୋଇ ପଡିଥିଲେ ଏବଂ ବାୟୁଜନିତ ଦୋଷ ଅତି ଦୁରୂହ ହୋଇ ଯାଇଥିଲା । ଜଳୋଦରୀ ରୋଗରେ ଆକ୍ରାନ୍ତ ହେବା ସଙ୍ଗେ ସଙ୍ଗେ ତାହାଙ୍କୁ ନ୍ୟୁମୋନିଆ (ଫୁସଫୁସ ପ୍ରଦାହ ରୋଗ) ଆକ୍ରମଣ କରିଥିଲା । ତେବେ ସେଥିରୁ ଆରୋଗ୍ୟ ଲାଭ କରିବାର ଅଳ୍ପକାଳ ପରେପରେ ସେପ୍ଟେମ୍ବର ଚାରି ତାରିଖରେ ତାଙ୍କର ଅବସ୍ଥା ହଠାତ୍ ଉଦ୍‌ବେଗଜନକ ହୋଇ ଯାଇଥିଲା ଏବଂ 1922 ମସିହା ସେପ୍ଟେମ୍ବର ପାଞ୍ଚ ତାରିଖ ଦିନ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେତେବେଳକୁ ତାହାଙ୍କ ପରିବାରର ସଦସ୍ୟମାନେ ତାହାଙ୍କୁ ଘେରି ରହିଥିଲେ । ସେ ତାଙ୍କର ଶେଷ ସମୟରେ ହରିନାମ ଜପ କରିଥିଲେ ।

ମୃତ୍ୟୁର ସ୍ୱଳ୍ପକାଳ ପୂର୍ବରୁ ତାଙ୍କୁ ଦେଖିବାକୁ ଆସିଥିବା ଜଣେ ପାରିବାରିକ ବନ୍ଧୁଙ୍କୁ ସେ କହିଥିଲେ; "ମୁଁ କୌଣସି ବିଷୟରେ ଅସନ୍ତୋଷ ପ୍ରକାଶ କରିବାରି ନାହିଁ । ମୁଁ ଜାଣେ ମୁଁ ପ୍ରତିଦିନ କିଛି ନା କିଛି ମୃତ୍ୟୁବରଣ କରୁଛି । ତେବେ ମୁଁ ଦୀର୍ଘକାଳ ବଞ୍ଚି ରହି ସାରିଲିଣି । ଏଇ ପୃଥିବୀରେ ବଞ୍ଚି ରହିବାର ସ୍ୱାଦ ମୁଁ ସମ୍ପୂର୍ଣ୍ଣ ରୂପେ ଚାଖି ସାରିଲିଣି । ମୋ ଜ୍ଞାନସାରରେ ମୁଁ କୌଣସି ପାପ କରିନାହିଁ । ମୁଁ ବର୍ତ୍ତମାନ ଯେଉଁଠିକୁ ଯାଉଛି ସେଠାରେ ସମ୍ପୂର୍ଣ୍ଣ ଶାନ୍ତି ବିରାଜିତ । ତା'ହେଲେ ମୁଁ ଆନନ୍ଦିତ ହେବିନାହିଁ କାହିଁକି ?"

ତାହାଙ୍କର ମୃତ୍ୟୁପରେ ମୋତିଲାଲଙ୍କୁ ହଜାର ହଜାର ଶ୍ରଦ୍ଧାଞ୍ଜଳି ଦିଆ ଯାଇଥିଲା । ସେଥି ମଧ୍ୟରୁ ଭିନ୍ନମୁଖୀ ରାଜନୈତିକ ମତବାଦୀମାନଙ୍କୁ ପ୍ରତିନିଧିତ୍ୱ କରୁଥିବା ମାତ୍ର ତିନିଗୋଟି ଶ୍ରଦ୍ଧାଞ୍ଜଳି ଉଦ୍ଧାର କରାଗଲେ ଯଥାର୍ଥ ସଂଯୋଗ ରକ୍ଷାକରି ପାରୁଥିବା ଏକ ମହାନ୍ ଜୀବନ କାହାଣୀର ହୁଏତ ଯଥାର୍ଥ ଉପସଂହାର ହେବ । ଗାନ୍ଧିଜୀ ଜେଲ ଯାଇଥିବା କାରଣରୁ ଅନୁପସ୍ଥିତ ଥିବା ବେଳେ, ସି. ରାଜଗୋପାଳାଚାରୀ, ଜଇରାମ ଦାସ ଦଉଲତରାମ ଏବଂ ଜର୍ଜ ଜୋସେଫ୍ ସମ୍ପାଦନା କରୁଥିବା 'ୟଙ୍ଗ ଇଣ୍ଡିଆ'ରେ ପ୍ରକାଶ ପାଇଥିଲା:

"ଏକ ମହାନ୍ ଆତ୍ମା ତାର ଜୀର୍ଣ୍ଣ ସ୍ଥିତିକୁ ପରିତ୍ୟାଗ କରିଛି । ମୋତିବାବୁ ଆମ ରାଜନୈତିକ ଚେତନାରେ ସତ୍ୟବାଦୀତା, ସାହସ ଏବଂ ସ୍ନେହ ପରିପୂର୍ଣ୍ଣ କରି ଦେଇଛନ୍ତି ଏବଂ ଏହାକୁ ଗଣତାନ୍ତ୍ରିକ ମଧ୍ୟ କରାଇ ଦେଇଛନ୍ତି । ଭାରତୀୟ ସ୍ୱାଧୀନତାର ଇତିହାସରେ ସେ ଏକ ସମ୍ମାନିତ ଆସନର ଅଧିକାରୀ । ସେ ସେଭଳି ମହାନ୍ ବ୍ୟକ୍ତିବୃନ୍ଦଙ୍କ ମଧ୍ୟରେ ଜଣେ ଥିଲେ, ଯେଉଁମାନଙ୍କ ଆତ୍ମାର ସୌନ୍ଦର୍ଯ୍ୟ ସହିତ ସେ ସାମ୍ୟ ରକ୍ଷା କରି ପାରି ଥିଲେ ଏବଂ ଯିଏ କେବଳ ଶାସନର ଉତ୍ପୀଡ଼ନକୁ ବଳପୂର୍ବକ ପ୍ରକାଶ କରାଇ ଦେଉ ନଥିଲେ, ସେ ଜନଗଣଙ୍କ ସ୍ନେହ ସଦିଚ୍ଛା ମଧ୍ୟ ପ୍ରାପ୍ତ ହୋଇଥିଲେ । ଏହି କୃଷ୍ଣ ଚେତନାର ସ୍ପର୍ଶ ମହାତ୍ମାଜୀ ଏବଂ ମୋତିବାବୁଙ୍କୁ ଅନ୍ୟାନ୍ୟ ମହାନ୍ ବ୍ୟକ୍ତିବୃନ୍ଦଙ୍କ ନିକଟରୁ ସ୍ୱତନ୍ତ୍ର କରି ଦେଇଥାଏ ।"

ଦ୍ୱିତୀୟ ଶ୍ରଦ୍ଧାଞ୍ଜଳିଟି ହେଉଛି ଏସ୍. କେ ରାଟକ୍ଲିଫଙ୍କର । ସେ ଏକଦା "ଷ୍ଟେଟସମ୍ୟାନ" ର ସମ୍ପାଦକ ଥିଲେ । କିନ୍ତୁ ସେତେବେଳେ ଲଣ୍ଡନରୁ ପ୍ରକାଶ ପାଉଥିବା ସାମ୍ୟବାଦୀ ମତସମ୍ପନ୍ନ "ଦି ନ୍ୟୁ ଷ୍ଟେଟସମ୍ୟାନ"ର ସମ୍ପାଦକ ଥିଲେ ।

"ମୁଁ ଆଶ୍ଚର୍ଯ୍ୟାନ୍ୱିତ ଯେ ପୃଥିବୀରେ ଏହିଭଳି କେତେଜଣ ସୃଷ୍ଟିଶୀଳ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ସମ୍ପର୍କରେ କୁହାଯାଇ ପାରିବ ଯେ ସେମାନେ ସେମାନଙ୍କ ବ୍ୟକ୍ତିତ୍ୱ ତଥା ରଚନାବଳୀ ଦ୍ୱାରା ତାଙ୍କ ଦେଶର ସମସ୍ତ ଶିକ୍ଷିତ ବ୍ୟକ୍ତି ତଥା ଶିକ୍ଷା କ୍ଷେତ୍ରରୁ ଦୂରରେ ଥିବା ଲକ୍ଷଲକ୍ଷ ଲୋକଙ୍କ ଦ୍ୱାରା ପରିଚିତ ? ନିଶ୍ଚିତ ରୂପେ ଇଂଲଣ୍ଡରେ ଜଣେ ନୁହନ୍ତି (ନିକଟ ଅତୀତରେ ଜଣେ କୁଖ୍ୟାତ ସମ୍ପାଦକଙ୍କୁ ବିଦାୟ କରି ଦିଆଯିବା ପରଠାରୁ) ଏବଂ ସମ୍ଭବତଃ କୌଣସି ପାଶ୍ଚାତ୍ୟ ଦେଶରେ ମଧ୍ୟ ସେଭଳି ଜଣେ କେହି ନାହିଁ । କିନ୍ତୁ ଭାରତରେ ଏହି ଅଦ୍ଭୁତ ବ୍ୟାପାର ସମ୍ଭବପର ଅଟେ ଏବଂ ସମଗ୍ର ପୂର୍ବାଞ୍ଚଳ କିମ୍ବା ପଶ୍ଚିମାଞ୍ଚଳରେ କେବଳ ଜଣେ ମାତ୍ର ସମ୍ପାଦକଙ୍କ କ୍ଷେତ୍ରରେ ତାହା ଅନୁଭବ କରାଯାଇ ପାରୁଛି ଏବଂ ମୋର ସୌଭାଗ୍ୟକ୍ରମେ ମୁଁ ତାଙ୍କ ସହ ପରିଚିତ । ସେ ହେଉଛନ୍ତି କଲିକତାର 'ଅମୃତ ବଜାର ପତ୍ରିକା'ର ବାବୁ ମୋତିଲାଲ ଘୋଷ (ତାଙ୍କୁ କେହି କେବେହେଁ ମିଷ୍ଟର ବୋଲି ସମ୍ବୋଧନ କରି ନଥିଲେ) । ସତସ୍ତରୀ ବର୍ଷ ବୟସରେ ସେ ଦେହତ୍ୟାଗ କରିଥିବା ସମ୍ବାଦ ଗତ ସପ୍ତାହରେ ଡାକଯୋଗେ ଏଠାରେ ପହଞ୍ଚିଥିଲା । ତାଙ୍କ ମୃତ୍ୟୁ ସହିତ ଭାରତୀୟ ସାମ୍ବାଦିକତାର ଏକ ବିଶିଷ୍ଟ ଯୁଗର ପରିସମାପ୍ତି ଘଟିଛି । - - - - ସେ ତାଙ୍କ ଲାଗି ଏକ ବିଶିଷ୍ଟ ସ୍ଥାନ ନିରୂପଣ କରିଯାଇଛନ୍ତି - - - - ସମଗ୍ର ଭାରତ ତାଙ୍କ ନାମ ସହିତ ପରିଚିତ - - - - ସହରର ଦକ୍ଷିଣାଞ୍ଚଳରେ ଏକ ବିରାଟ ହିନ୍ଦୁ ପାରିବାରିକ ଗୃହରେ ତାହାଙ୍କର ସମ୍ପାଦକୀୟ କାର୍ଯ୍ୟାଳୟ ଥିଲା । ବାରବର୍ଷ ତଳେ ସେଠାରେ ମିଷ୍ଟର ରାମ୍‌ସେ ମେକଡୋନାଲ୍ଡ ତାହାଙ୍କ ସହ ସାକ୍ଷାତ କରିଥିଲେ ଯାହାଥିଲା "ଏଭଳି ଏକ ସ୍ଥାନ ଯାହା ହୁଏତ ଏକ ଇଟାଲୀୟ ରାଜବାଟୀ" ଭଳି ଥିଲା ଏବଂ ଯାହାର ପ୍ରତ୍ୟେକ ପଥରଖଣ୍ଡ କେବଳ ଅବକ୍ଷୟର ସନ୍ଦେଶ ହିଁ ପ୍ରଦାନ କରୁଥିଲା । କେବଳ ଯେଉଁ ବିଷୟରେ ମେକଡୋନାଲ୍ଡ ମନ୍ତବ୍ୟ ଦେଇନଥିଲେ, ତାହା ଥିଲା ତତ୍‌ସଂଲଗ୍ନ ଗୃହରେ କାର୍ଯ୍ୟରତ ଥିବା ଲିନୋ ମଡେଲର ଖବରକାଗଜ ଛାପାକଳ । ଏହି ଅଦ୍ଭୁତ ବଙ୍ଗାଳୀ ଜଣକ ତାହା ପ୍ରତିଷ୍ଠା କରିଥିଲେ । ତାହାଙ୍କର ସାମସମୟିକ

ଇଂରେଜ ବ୍ୟକ୍ତିମାନେ କଲିକତାରେ ସେଉଳି କଳ ବ୍ୟବହାର କରିବା ବହୁ ବର୍ଷ ପୂର୍ବରୁ ସେ ସେଥିରେ ନିଯୋଜିତ ଥିଲେ ।''

ଯେତେବେଳେ ଇଂରେଜମାନଙ୍କ ନ୍ୟସ୍ତସ୍ୱାର୍ଥ ସଂରକ୍ଷଣର ମୁଖ୍ୟ ପ୍ରବକ୍ତା ଥିବା 'ଦି ଇଙ୍ଗ୍ଲିସମ୍ୟାନ୍'ର ଶ୍ରଦ୍ଧାଞ୍ଜଳି ଥିଲା ଚମତ୍କାର;

" - - - - ଭାରତୀୟ ରାଜନୈତିକ କ୍ଷେତ୍ରରୁ ଏକ ଅନନ୍ୟ ବ୍ୟକ୍ତିତ୍ୱର ତିରୋଧାନ ହୋଇଯାଇଛି । - - - - ତାଙ୍କ ଜୀବନର ଅଧିକାଂଶ କାଳ ମିଃ ଘୋଷ ଇଉରୋପୀୟ ଗୋଷ୍ଠୀଙ୍କ ଦ୍ୱାରା ଜଣେ ଅତି ବିପଦପୂର୍ଣ୍ଣ ତଥା ଅଶୁଭ ବ୍ୟକ୍ତିରୂପେ ପରିଗଣିତ ହୋଇଥିଲେ । - - - - - ଯାହା ତାଙ୍କର ପରମ ଶତ୍ରୁ ମଧ୍ୟ ସ୍ୱୀକାର କରିବେ, ତାହା ହେଉଛି ସେ ଥିଲେ ଜଣେ ଅପୂର୍ବ ଦାନଯୁକ୍ତ ମିଣଷ । କେବଳ ସରକାରଙ୍କ ବିରୁଦ୍ଧରେ କ୍ଷତିକାରକ ଲେଖା ଲେଖି ସେ ଯେଉଁଭଳି ଭାବରେ ଅତ୍ୟଧିକ ସମ୍ମାନ ଅର୍ଜନ କରିପାରି ଥିଲେ ତାହା ଅନ୍ୟ କେହି ଜଣେ ଅର୍ଜନ କରିପାରିବା ସମ୍ଭବ ନୁହେଁ । - - - ମିଷ୍ଟର ଘୋଷଙ୍କ ଉତ୍ତୀର୍ଣ୍ଣ ହେବାର ଗୁପ୍ତ କାରଣ ସମ୍ଭବତଃ, ସେ ପ୍ରଦର୍ଶନ କରିଥିବା ସାହସିକତା ଭିତରୁ ହିଁ ଲକ୍ଷ୍ୟ କରାଯାଇପାରେ । ସାହସିକତାର ସହିତ ସେ କେବଳ ସରକାରଙ୍କ ବିରୋଧ କରି ନଥିଲେ, ସେ ଅନ୍ୟାନ୍ୟ ଭାରତୀୟ ନେତୃମଣ୍ଡଳୀଙ୍କ ବିରୋଧ ମଧ୍ୟ କରୁଥିଲେ ଯେତେବେଳେ ସେ ବିଶ୍ୱାସ କରୁଥିଲେ ଯେ ସେମାନେ କୁପଥଗାମୀ ହୋଇଛନ୍ତି । - - - ସେ ଏକ ବ୍ୟଙ୍ଗାତ୍ମକ ଶୈଳୀର ଅଧିକାରୀ ହୋଇ ପାରିଥିବା ଯୋଗୁଁ ତାଙ୍କର ସମାଲୋଚନାଗୁଡିକ ତାଙ୍କ ନିଜ ଦେଶବାସୀଙ୍କ ମନରେ ମଧ୍ୟ ବିଶେଷ ଭୟ ସଂଚାର କରୁଥିଲା । ଆମର ବିଶ୍ୱାସ, ମିଃ ଘୋଷଙ୍କ ବିଶେଷ କରି ସେହି ଦିଗରେ ନିଷ୍ଠାପରତା ଯୋଗୁଁ ତାଙ୍କ ଜୀବନର ଶେଷ ବର୍ଷଗୁଡିକରେ ସେ ଯେଉଁ ଇଉରୋପୀୟ ଗୋଷ୍ଠୀଙ୍କୁ ସବୁବେଳେ ଆକ୍ରମଣ କରୁଥିଲେ ଏବଂ ତୀବ୍ର ଆକ୍ଷେପ କରୁଥିଲେ, ସେହିମାନଙ୍କଠାରୁ ସମ୍ମାନ ମଧ୍ୟ ଲାଭ କରିପାରି ଥିଲେ ।''

ବିପଦପୂର୍ଣ୍ଣ ଜୀବନ ଯାପନକରି, ଜନଗଣଙ୍କ ସଦିଚ୍ଛା ବ୍ୟତୀତ ଅନ୍ୟ କୌଣସି ଅନୁଗ୍ରହର ପ୍ରାର୍ଥୀ ନହୋଇ ମୋତିଲାଲ ଘୋଷ ଜାତିପାଇଁ ଇଚ୍ଛାକୃତ ଭାବରେ ଆପଣାର ସମସ୍ତ ସ୍ୱତ୍ୱ ପ୍ରଦାନ କରିଦେଇ ଥିଲେ । ଇଂରେଜ କବି ଟେନିସନ୍‌ଙ୍କୁ ଉଦ୍ଧାର କଲେ –

"ଏକ ବୀର ହୃଦୟର ସମକକ୍ଷ ଯୌର୍ଯ୍ୟ
- - - - - - - - ଇଚ୍ଛା ଦୃଢ଼ତର
ସମସ୍ତ ପ୍ରତିଦ୍ୱନ୍ଦ୍ୱିତା ପାଇଁ -
ଅନେକ ଅନେକ ଅନୁସନ୍ଧାନ ପାଇଁ,
ଏବଂ କିଛି ଆବିଷ୍କାର ପାଇଁ ।
ଅଥଚ,
ଅସମ୍ଭବ ପରାଭବ ମାନିନେବା ପାଇଁ ।''

मुद्रक : शाहजहानाबाद **सिटी प्रिन्ट** नई दिल्ली



ସ୍ୱାଧୀନ ଭାରତ ଜନ୍ମ ନେବା ପାଇଁ ପଥପ୍ରଦର୍ଶନକାରୀ ସମୟର ଭାରତୀୟ ଇତିହାସରେ ମୋତିଲାଲ ଘୋଷ ଥିଲେ ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱ । ଜାତୀୟବାଦୀ ତଥା ମୁକ୍ତ ସାମ୍ବାଦିକତା କ୍ଷେତ୍ରରେ ସେ ଥିଲେ ଜଣେ ପଥପ୍ରଦର୍ଶକ । ତାଙ୍କର ଯନ୍ତ୍ରଣାମୟ ଜୀବନ ଏବଂ କଠୋର ସଂଗ୍ରାମ ଜାତୀୟ ମୁକ୍ତି ଆନ୍ଦୋଳନଜନିତ ସଂଗ୍ରାମ ସହିତ ସମାନ୍ତରରେ ଗତି କରିଥିଲା । ଗୋଟିଏ ସ୍ୱାଧୀନ ସମ୍ବାଦପତ୍ର ପ୍ରତିଷ୍ଠା କରିବାପାଇଁ ସେ ଯେଉଁ କାର୍ଯ୍ୟକରି ଯାଇଥିଲେ, ବାସ୍ତବିକ ତାହା ସ୍ୱାଧୀନ ଭାରତୀୟ ସମ୍ବାଦପତ୍ରର ଭିତ୍ତି ସ୍ଥାପନ କରିଥିଲା ।

ଏହି ପୁସ୍ତକର ଲେଖକ ସଚ୍ଚିଦ୍ରଲାଲ ଘୋଷ କର୍ମଜୀବୀ ହିସାବରେ ଜଣେ ସାମ୍ବାଦିକ । ସେ ଦିଲ୍ଲୀର 'ଲିବରଟି', 'ଆଡଭାନସ,' 'ଦି ଅମୃତ ବଜାର ପତ୍ରିକା' ଏବଂ 'ଦି ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ'ରେ କାର୍ଯ୍ୟ କରିଅଛନ୍ତି । ନୂଆ ଦିଲ୍ଲୀରେ 1962 ରୁ 1972 ପର୍ଯ୍ୟନ୍ତ ଇଣ୍ଡିଆନ୍ କାଉନ୍‌ସିଲ୍ ଅଫ୍ କଲଚରାଲ ରିଲେସନ୍‌ସ (ICCR)ର ସଂପାଦକ ଥିଲେ । ତାଙ୍କର ପ୍ରକାଶନଗୁଡିକ ମଧ୍ୟରେ ଅଛି : ପୁରାତନ ଭାରତରେ ନୈତିକତା (Morals in Ancient India), ପୂର୍ବାଞ୍ଚଳ ସୋଭିଏତ୍ (The Soviet East), ପୂର୍ଣ୍ଣାହୁତି (Holo Caurt) ଏବଂ ରାଜା ରାମମୋହନ ରାୟ (Raja Rammohan Roy) ।

ଟ 30.00

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ